# ଇତିହାସର ହଜିଲା ଝିଅ

ସଂଘମିତ୍ରା ମିଶ୍ର



ଜ୍ଞାନଯୁଗ ପବ୍ଲିକେଶନ
ଭୁବନେଶ୍ୱର

Email : contact@gyanajuga.com Website : www gyanajuga.com

ଇତିହାସର ହଜିଲାଖିଅ

ସଂଘମିତ୍ରା ମିଶ୍ର

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ
ମୋବାଇଲ୍ : ୯୯୩୭୬୯୪୭୮୧

ପ୍ରକାଶକ
ଜ୍ଞାନଯୁଗ ପବ୍ଲିକେଶନ
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

ଅକ୍ଷର ବିନ୍ୟାସ
ବି. ଏନ. ଗ୍ରାଫିକ୍ସ
ଏନ୍-୫/୨୩୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ : ୨୫୫୪୭୧୧

ମୁଦ୍ରକ
କ୍ରିଏଟିଭ୍ ଅଫସେଟ୍
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

ପ୍ରଥମ ପ୍ରକାଶ— ୨୦୦୫
ଦ୍ୱିତୀୟ ପ୍ରକାଶ— ୨୦୧୩

ମୂଲ୍ୟ : ଟ.୧୨୦/-

ITIHASARA HAJILA KHIA

Sanghamitra Mishra

**Publisher's Adviser**
Sri Binod Bihari Bisoi
Mob. : 9937694781

**Publisher**
Gyanajuga Publication
N-6/428, I.R.C. Village
Nayapalli, Bhubaneswar-15
Phone : 2552091

**Type Setting**
B. N. Graphics
N-5/238, I.R.C. Village
Nayapalli, Bhibaneswar-15
Phone : 2554711

**Printer**
Creative Offset
N-6/428, I.R.C. Village
Nayapalli, Bhubaneswar-15
Phone : 2552091

1st Edition—2005
2nd Edition—2013

Rs. 120/-

---

Published by Smt. Susama Bisoi on behalf of Gyanajuga Publication
N-6/428, IRC Village, Nayapalli, Bhubaneswar-751015, Odisha
Ph. : (0674) 2552091

# ଋଣ ସ୍ୱୀକାର

ପରମ ପୂଜନୀୟ ନନା,

ମୋର ଭକ୍ତିପୂତ ପ୍ରଣାମ ଗ୍ରହଣ କରିବେ । ୧୯୮୮ ମସିହା ଅକ୍ଟୋବର ମାସ ଆଠ ତାରିଖରେ ଆପଣ ସଂସାର ଛାଡ଼ିଲେ । ସେହି ଦିନଠାରୁ ସମୟ ନଈରେ କେତେ ପାଣି ବୋହିଗଲାଣି । କେତେ କିଏ ସଂସାରରୁ ବିଦାୟ ନେଲେଣି । ସେମାନଙ୍କ ସ୍ଥାନ ଖାଲି ପଡ଼ିନାହିଁ । କିନ୍ତୁ  ମୋ ପାଇଁ ଆପଣଙ୍କ ସ୍ଥାନ ଚିରଦିନ ଅପୂରଣୀୟ ରହିଛି । ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଆପଣ ମୋ ଭିତରେ ବଞ୍ଚି ରହିଥିବେ ମାତ୍ର ବୟସ ବଢ଼ିବା ସହିତ ଅଶପଣଙ୍କ ସ୍ୱରୂପ ଭିନ୍ନ ଭିନ୍ନ ଦିଶୁଥିବ ଆଉ ମୁଁ ଆପଣଙ୍କୁ ପ୍ରତି ମୁହୂର୍ତ୍ତରେ ନୂଆକରି ଅନୁଭବ କରୁଥିବି ।

ନନା, ଆଜି ସ୍ୱୀକାର କରିବାରେ ଦ୍ୱିଧା ନାହିଁ ଯେ ମୁଁ ଆପଣଙ୍କୁ ବୁଝିପାରି ନାହିଁ । ବୁଝିବାକୁ ଚେଷ୍ଟା ବି କରିନାହିଁ । ବେଳେ ବେଳେ ବୋଉର କଷ୍ଟ କଥା ଭାବି ଆପଣଙ୍କୁ ଭୁଲ ମଧ ବୁଝିଛି । ଆପଣ ବି ମୋତେ କୋଉ ସମୟ ଦେଇଛନ୍ତି କି ? ସତର ବର୍ଷ ବୟସରୁ ମୋତେ ବାହା କରିଦେଇ ଦାୟିତ୍ୱମୁକ୍ତ ହୋଇଛନ୍ତି । ମୁଁ ମୋ ଜଞ୍ଜାଳରେ ଘାଣ୍ଟି ହୋଇ ହୋଇ କେଉଁଦିନ ବୟସ୍କା ପାଲଟି ଯାଇଛି । ୧୯୮୪ରୁ ଆପଣ ବି ମୋର ଅଝଟ ସନ୍ତାନ ପାଲଟିଛନ୍ତି । ପାରୁପର୍ଯ୍ୟନ୍ତ ଚେଷ୍ଟା କରିଛି ଆପଣଙ୍କ ବାର୍ଦ୍ଧକ୍ୟକୁ ପରିପୂର୍ଣ୍ଣ କରିବାକୁ । ଆଉ ଅଧିକ ହୁଏତ ମୋଦ୍ୱାରା ସମ୍ଭବ ହୋଇ ନଥା'ନ୍ତା ।

ନନା, ଆପଣ ଯେ ଇତିହାସର ହଜିଯାଇଥିବା ଖିଅଟିଏ ଏ କଥା କ'ଣ ମୁଁ ବୁଝିଥିଲି ? ନନା କହିଲେ ମୋତେ ଦିଶୁଥିଲେ ଚଣ୍ଡୀପାଠ ସାରି ମଠା ପିନ୍ଧି ଖୋଲା ଦେହରେ ଠାକୁରଘରୁ ବାହାରି ଆସୁଥିବା ବୟସ୍କ ମଣିଷଟିଏ । ସିଲଟ ଉପରେ ପେଟେଇ ପଡ଼ି ଗଣିତ କଷୁଥିବା ସ୍ଥିତପ୍ରଜ୍ଞ ସନ୍ୟାସୀଟିଏ । ଶ୍ରୀରାମକୃଷ୍ଣଙ୍କ ଭଜନ ଗାଇ ତନ୍ମୟ ହୋଇପଡୁଥିବା ଭକ୍ତଟିଏ । ବେଳେବେଳେ ଛୋଟ ଛୋଟ କଥାରେ କ୍ରୋଧରେ ଅଜ୍ଞାନ ହୋଇଯାଉଥିବା ଆପଣଙ୍କର ଦୁର୍ବାସା ରୂପ ଦେଖି ମୁଁ ଭୀତ ମଧ ହୋଇଛି, ହେଲେ ପାଖକୁ ଯିବାକୁ ସାହସ ଜୁଟାଇ ପାରିନାହିଁ । ସେଥିପାଇଁ ମୋର ସମୟ ଓ ସାମର୍ଥ୍ୟ ସବୁ ଅକୁଲାଣ ହୋଇଛି । ଆପଣ ମୋର ଭୁବନେଶ୍ୱର ଘରକୁ ଆସିବା ବେଳକୁ ଆଉ କିଛି ମନେ ରଖିବାର ଅବସ୍ଥାରେ ନଥିଲେ । ତଥାପି ଯାହାକିଛି ଆପଣଙ୍କୁ ପଚାରି ଲେଖି ରଖିଥିଲି ତାହା ମୋର ବୋକାମିରୁ ହସ୍ତାନ୍ତରିତ ହୋଇଗଲା । ତଥାପି ଯେତିକି ପାଇଛି କରିଛି । ବହୁତ ଆଗ୍ରହୀ ବ୍ୟକ୍ତି ମୋତେ ସହଯୋଗ କରିଛନ୍ତି । ସେମାନଙ୍କୁ ଯେତେ କୃତଜ୍ଞତା ଜଣାଇଲେ ବି କମ୍ ହେବ ।

ଯେଉଁ ଚବିଶ ବର୍ଷ ଆପଣ ଲଣ୍ଡନରେ ଥିଲେ ସେକଥା ଜାଣିବା ପାଇଁ ଅନେକ ଚେଷ୍ଟା କରିଛି । କିନ୍ତୁ ବିଶେଷ କିଛି ପାଇନାହିଁ । ତେଣିକି ଏ ପୁସ୍ତକରେ ଯାହାକିଛି ଶ୍ରେୟ ତାହା ଆପଣଙ୍କର, ଯାହା ତ୍ରୁଟି ତାହା ମୋର, ମୋ ଅପାରଗତାର ।

ଆପଣଙ୍କର ରହସ୍ୟମୟ ଜୀବନ ସମ୍ପର୍କରେ ବହିଟିଏ ଲେଖିବେ ବୋଲି ପୂଜନୀୟ ଦୁଆରୀ କକେଇ (ଶ୍ରୀନିବାସ ମିଶ୍ର) କେତେ ଚେଷ୍ଟା କରିଥିଲେ । ମୋତେ ପାଖରେ ବସାଇ ଆପଣଙ୍କ ସମ୍ପର୍କରେ କେତେ ତଥ୍ୟ ପ୍ରଦାନ କରିଥିଲେ । ସେ ଆଜି ସ୍ୱର୍ଗଧାମରେ । ସେଇମିତି ପୂଜ୍ୟ ସୁରେନ୍ଦ୍ର କକେଇ (ସୁରେନ୍ଦ୍ରନାଥ ଦ୍ୱିବେଦୀ) ବାରମ୍ବାର ମୋତେ ଡକାଇ ଯଥାଶୀଘ୍ର ଏ ପୁସ୍ତକ ପୂର୍ଣ୍ଣାଙ୍ଗ କରିବାକୁ ତାଗିଦା କରୁଥିଲେ । ନିଜେ ମୁଖବନ୍ଧ ଲେଖିବେ ବୋଲି କହିଥିଲେ । ସେ ବି ଚାଲିଗଲେଣି । ଏ ପୁସ୍ତକ ସେମାନଙ୍କର ଆଗ୍ରହ କେତେ ପୂରଣ କରିପାରିବ ମୁଁ ଜାଣେନା । କାରଣ ମୋର ସାମର୍ଥ୍ୟ ଅଳ୍ପ । ଆପଣଙ୍କ ପରି ପ୍ରଚଣ୍ଡ ବ୍ୟକ୍ତିତ୍ୱ ସମ୍ପର୍କରେ କିଛି ଲେଖିଲା ବେଳେ ମୋ ଭିତରେ ଦୁର୍ବଳତା ବାଟ ଓଗାଳୁଛି । ନନା, ମତେ ଆଉ ଟିକିଏ ଦୃଢ଼ମନା କଲେନି ?

ଆପଣ ପ୍ରାର୍ଥନା ଶିଖାଇଲେ—

"ଜିନି ମହାରାଜା ବିଶ୍ୱ ଯାର ପ୍ରଜା
ଜାନିନାରେ ମନ୍ ଆମି ପୁତ୍ର ତାର
ସାମାନ୍ୟ ତନୟ ରାଜପୁତ୍ର ହୟ
ପିତାର ଧନେ ଆମାର ପୂର୍ଣ୍ଣ ଅଧିକାର ।"

ସେଇ ଭାଷାରେ କହୁଛି, ଆପଣଙ୍କ ସନ୍ତାନ ହେବା ମୋ ପାଇଁ ଗୌରବ । ବହୁତ ଦେଇଛନ୍ତି ନନା । କାହା ଖୁସିରେ ଆନନ୍ଦ ହେବା ଆଉ ଦୁଃଖରେ କାନ୍ଦିବା ପାଇଁ ମନଟିଏ ଦେଇଛନ୍ତି । ଆଉ ମୋର କ'ଣ ଲୋଡ଼ା ? ଆପଣ କହିଥିଲେ ନାଁ "ଏମିତି ଧନରେ ଧନୀ ହେବୁ, ଯେଉଁଠି ଶାଢ଼ି, ଗହଣା, ଟଙ୍କା, ସୁନା ସବୁ ଫିକା ପଡ଼ିଯିବ ।" ଚେଷ୍ଟା କରୁଛି ନନା, ପାରୁଛି କି ନାହିଁ ଆପଣ କହିବେ । ଆପଣ ଯେ ବାୟୁମଣ୍ଡଳ ଭଳି ମୋତେ ଘେରି ରହିଛନ୍ତି, ଆକାଶ ପରି ଆପଣଙ୍କ ହସ୍ତ ପ୍ରସାରିତ ରହିଛି ମୋ ମଥା ଉପରେ, ପାଦ ତଳର ମାଟି ଭଳି ନିଃସର୍ତ୍ତରେ ମୋତେ ଠିଆ ହେବାକୁ ଦମ୍ଭ ଦେଇଛନ୍ତି, ଏଇତକ ମୋ ପାଇଁ ଯଥେଷ୍ଟ ।

ଏ ପୁସ୍ତକ ମୋର ଋଣ ପରିଶୋଧ ନୁହେଁ, ଋଣ ସ୍ୱୀକାର ମାତ୍ର । ଲୁଣ ଦାନାଟିଏ ମୁଁ, ସମୁଦ୍ରକୁ କଳନା କରିବା ପାଇଁ ଆଶା ବାନ୍ଧିଛି । ମୋ ଦୋଷ ଘେନିବେ ନାହିଁ ।

ସ୍ନେହାଧୀନା

ମିତୁ

# ମୁଁ ଯେଉଁମାନଙ୍କ ନିକଟରେ କୃତଜ୍ଞ

ଶ୍ରୀଯୁକ୍ତ ଗୁରୁଚରଣ ପଟ୍ଟନାୟକ, ଶ୍ରୀଯୁକ୍ତ ଗିରିଜାଭୂଷଣ ପଟ୍ଟନାୟକ, ଶ୍ରୀଯୁକ୍ତ ପର୍ଶୁରାମ ଦ୍ୱିବେଦୀ, ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମିଶ୍ର, ଶ୍ରୀଯୁକ୍ତ ଉମାନାଥ ମହନ୍ତ, ଶ୍ରୀଯୁକ୍ତ ଅବନୀ କୁମାର ବରାଳ, ଶ୍ରୀଯୁକ୍ତ ଉତ୍ସବ ସାମନ୍ତରାୟ, ଶ୍ରୀମତୀ ପ୍ରବୀଣା ମହାନ୍ତି, ଆଡ୍‌ଭୋକେଟ୍ ଗଙ୍ଗାଧର ରଥ, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ପଣ୍ଡିତ ପ୍ରବୋଧ କୁମାର ମିଶ୍ର, ଡଃ ଗୌରାଙ୍ଗିନୀ ମିଶ୍ର, ସେକ୍ ମତଲୁବ ଅଲ୍ଲି, ଡଃ ନିତ୍ୟାନନ୍ଦ ନାୟକ, ଇଂ ଅକ୍ଷୟ ମିଶ୍ର, ଡଃ ବସନ୍ତ କୁମାର ସାହୁ, ଡଃ ବିଜୟ କୁମାର ଶତପଥୀ, ସାମ୍ବାଦିକ ରାମହରି ମିଶ୍ର, ସାମ୍ବାଦିକ ଜୟାଶିଷ ରାୟ, ଶ୍ରୀ ଲଲାଟେନ୍ଦୁ ଦାସ ମହାପାତ୍ର, ଡଃ ଲକ୍ଷ୍ମଣ କୁମାର ଦାଶ, ଡଃ ନାରାୟଣ ସାହୁ, ଡଃ ଗୋବିନ୍ଦ ଚନ୍ଦ୍ର ଚାନ୍ଦ, ଶ୍ରୀ ଶତ୍ରୁଜିତ୍, ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର, ଶ୍ରୀ ଜ୍ୟୋତିର୍ମୟ ପଣ୍ଡା । ଡଃ ବିରାଜ ମୋହନ ଦାସ, କୁମାରୀ ସୁସ୍ମିତା ଦାସ, ଶ୍ରୀ ରଘୁନାଥ ସାହୁ, ଶ୍ରୀମତୀ ପ୍ରଣତି ପଟ୍ଟନାୟକ, ଷ୍ଟୁଡିଓ ପ୍ରୀତମ୍, ଶହୀଦ ନଗର ।

୰ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ୰ ମନମୋହନ ମିଶ୍ର, ୰ ଶ୍ରୀମତୀ ଦେବୀ, ୰ ଶ୍ରୀନିବାସ ମିଶ୍ର, ୰ ପ୍ରିୟନାଥ ମିଶ୍ର, ୰ ସିଦ୍ଧେଶ୍ୱର ଦାଶ, ୰ କୃଷ୍ଣବଲ୍ଲଭୀ ରଥ, ୰ କାଶୀନାଥ ମହାପାତ୍ର, ୰ ଦୁଲାଜୀ ଦେବୀ ।

ଡଃ ଜଗନ୍ନାଥ ମହାପାତ୍ର, ଡଃ ଅବିନାଶ ମହାପାତ୍ର, ଡଃ ରଚନା ରଥ ମହାପାତ୍ର, ଶ୍ରୀମତୀ ଅପରାଜିତା ଦାଶ ମହାପାତ୍ର, ଶ୍ରୀଯୁକ୍ତ ବିଭୁଦତ୍ତ ଦାଶ, କୌସ୍ତୁଭ ଓ କୈବଲ୍ୟ, ଶ୍ରୀମତୀ ମମତା ମହାପାତ୍ର, ଶ୍ରୀମତୀ କବିତା ମହାପାତ୍ର, ମିନିଲତା ପ୍ରଦୀପ୍ତ ଦାଶ ।

ବିଭିନ୍ନ ସମୟରେ ବଂଶୀଧର ମିଶ୍ରଙ୍କ ସମ୍ପର୍କରେ ଛୋଟ ବଡ଼ ସମ୍ବାଦ ସାକ୍ଷାତ୍‌କାର ଇତ୍ୟାଦି ପ୍ରକାଶ କରିଥିବା ଦୈନିକ ସମାଜ, ପ୍ରଜାତନ୍ତ୍ର, ପ୍ରଗତିବାଦୀ ଓ ଉତ୍କଳିକାର ସମ୍ପାଦକ ଓ ଅନ୍ୟାନ୍ୟ କର୍ମକର୍ତ୍ତା ବୃନ୍ଦଙ୍କୁ ମୋର ଶୁଭକାମନା—ବାଲେଶ୍ୱରର 'ବାର୍ତ୍ତାଉର୍ମି' ପତ୍ରିକାକୁ ମଧ୍ୟ ଅଜସ୍ର ଶୁଭେଚ୍ଛା । ଏହି ପୁସ୍ତକକୁ ଆଲୋକକୁ ଆଣିବା ପାଇଁ ଆଗ୍ରହ ପ୍ରକାଶ କରିଥିବା ଜ୍ଞାନଯୁଗ ପବ୍ଲିକେଶନ୍, ଭୁବନେଶ୍ୱରର ଉପଦେଷ୍ଟା ଶ୍ରୀଯୁକ୍ତ ବିନୋଦ ବିହାରି ବିଶୋୟୀଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ।



# ଏଥିରେ ଅଛି





## ନୂଆ ନକ୍ଷତ୍ରର ଜନ୍ମ

ଇତିହାସ ବଡ଼ ନିଷ୍ଠୁର । ସେ କାହାକୁ ଶ୍ରଦ୍ଧା କରେ ନାହିଁ ବରଂ ତର୍ଜନୀ ନିର୍ଦ୍ଦେଶ କରେ । ସମୁଦ୍ର ଯେମିତି କିଛି ରଖେନି ସବୁ ଫେରାଇ ଦିଏ, ଇତିହାସ ସେଇମିତି ସବୁ ଫିଙ୍ଗିଦିଏ ନିର୍ବିକାର ଭାବରେ । ଇତିହାସ ବର୍ଷ, ମାସ, ଦିନ ମନେରଖେ । ମନେରଖେ ଶାସକର ଯୁଦ୍ଧଜୟ ସନ୍ଧିବିଗ୍ରହ ଓ ରାଜ୍ୟ ଶାସନ ବିବରଣୀ । କିନ୍ତୁ ଭୁଲିଯାଏ ସେ ରାଜ୍ୟରେ ବାସକରୁଥିବା ଅଗଣିତ ନାମହୀନ ଜନତାଙ୍କ ହୃଦୟର କଥା । ଲିପିବଦ୍ଧ କରେନି ସେମାନଙ୍କର ଆଶା ଓ ଆକାଙ୍କ୍ଷାର କାହାଣୀ । ସେଇମିତି ନିଷ୍ଠୁର ଇତିହାସର ଜଣେ ନେପଥ୍ୟ ନାୟକ କଥା ଏଠାରେ କୁହାଯିବ । ଏଇମିତି ଅଗଣିତ ନେପଥ୍ୟ ନାୟକ ଇତିହାସର ଇମାରତ ଗଢ଼ନ୍ତି ନିଜର ସାମର୍ଥ୍ୟ ଦେଇ । ଅଥଚ ଇତିହାସ ସେମାନଙ୍କୁ ଭୁଲିଯାଏ । କେହି ମନେ ରଖନ୍ତିନି ସେମାନଙ୍କ ତ୍ୟାଗର କଥା ଅଥଚ ସେମାନଙ୍କ ତ୍ୟାଗର ଫଳ ଭୋଗ କରନ୍ତି ।

କିନ୍ତୁ ଇତିହାସ କଡ଼ ଲେଉଟାଏ । କୌଣସି ଦିନ କେହି ଆଗ୍ରହୀ ମଣିଷ ଭାବନ୍ତି ଜଣେ ଆମ ଭିତରେ ଥିଲା କିନ୍ତୁ ଥିଲା ଆମଠୁଁ ନିଆରା । ଆମେ ଯେଉଁ ପବନରେ ନିଶ୍ୱାସ ମାରୁଛୁ ସେ ସେଇ ପବନରେ ନିଶ୍ୱାସ ମାରୁଥିଲା ଅଥଚ ଚିନ୍ତା କରୁଥିଲା ସ୍ୱତନ୍ତ୍ର ଭାବରେ । ସେ ମଣିଷଟି ସୌଭାଗ୍ୟ ବା ଦୁର୍ଭାଗ୍ୟ ଯୋଗୁଁ କାହାର ବାପା, ସ୍ୱାମୀ, ଭାଇ ବା ପୁଅ ହୋଇଥାଏ । ତା' ପରିବାର ତା' ତ୍ୟାଗ ପ୍ରଦୀପର ଉତ୍ତପ୍ତ ତୈଳର କ୍ଳେଶ ସହନ୍ତି ଦାନ୍ତଚିପି—ସେଇମିତି ଏକ ସ୍ୱର୍ଦ୍ଧିତ ବ୍ୟକ୍ତିତ୍ୱର କଥା ଏଠାରେ ଉପସ୍ଥାପିତ କରାଯାଇଛି, ଯିଏ ଥିଲା ଇତିହାସର ଏକ ହଜିଲା ଖିଅ । ସେ ଖିଅ ଆଉ ମିଳିଲାନି । ମିଳିଥିଲେ ହୁଏତ ଇତିହାସ ମୋଡ଼ ବଦଳିଯାଇଥାନ୍ତା ବା ଇତିହାସରେ ଆଉ ଦୁଇ ନୂଆପୃଷ୍ଠା ଯୋଡ଼ି ହୋଇଯାଇଥାଆନ୍ତା । ସଜାଡ଼ି ହୋଇଯାଇଥାଆନ୍ତା ଅନେକ ଅଡୁଆ ସୂତାର ଗଣ୍ଠି । କିନ୍ତୁ ନା', ମହାକାଳ ତାହା କରିବା ପାଇଁ ସମୟ ଦେଲାନାହିଁ । ତଥାପି ତାଙ୍କର ଯାହାକିଛି ଅନୁଭୂତିର ଖୁଚୁରା ଏଠି ସେଠି ବୁଣିହୋଇଥିଲା ସବୁ ସଜାଡ଼ିବାର ଉଦ୍ୟମ ହୋଇଛି । କେବେ ଅଯାଚିତ ସ୍ନେହ ସହାନୁଭୂତିରେ ଧନ୍ୟ ହୋଇଛି ଖୁଚୁରା ଗୋଟାଉଥିବା ମଣିଷ । କେବେ ସ୍ତୁତି ବା ବାଦ ସାଧିଛି । ତଥାପି ସେଇ ଖିଅକୁ ଯୋଡ଼ି ଗଅଣ୍ଠେଇ କୌଣସିମତେ ରୂପ ପାଇଛି 'ଇତିହାସର ହଜିଲା ଖିଅ' ।

ବିଂଶ ଶତାବ୍ଦୀର ପ୍ରଥମ ବର୍ଷ ଅର୍ଥାତ୍ ୧୯୦୧ ମସିହା ସେପ୍ଟେମ୍ବର ମାସରେ ସେ ଜନ୍ମ ହୋଇଥିଲେ । ବାପାଙ୍କ ନାଁ ଥିଲା ଲକ୍ଷ୍ମୀଧର ମିଶ୍ର ଓ ମାଆଙ୍କ ନାଁ ପାର୍ବତୀ

ଦେବୀ । ସେ ଥିଲେ ପରିବାରର ଦ୍ୱିତୀୟ ପୁତ୍ର ସନ୍ତାନ । ପ୍ରଥମ ସନ୍ତାନଙ୍କ ନାମ ସୋମନାଥ । ତୃତୀୟ ଥିଲେ ସୀତାନାଥ ଓ ଚତୁର୍ଥ ଶ୍ରୀନିବାସ । ଦୁଇଟି ଭଉଣୀ ଥିଲେ ମାଗି ଓ ଫକିରୀ । ଶୁଣିଛୁ ପୁଅମାନଙ୍କ ନାମ ଏତେ ସୁନ୍ଦର ଆଉ ଝିଅମାନଙ୍କ ନାମ ଏତେ ଅସୁନ୍ଦର ଥିବାରୁ ଭଉଣୀମାନେ ବାରମ୍ବାର ଭାରି ଦୁଃଖ ପ୍ରକାଶ କରୁଥିଲେ । ତେବେ ଦ୍ୱିତୀୟ ସନ୍ତାନଙ୍କ ନାମ କ'ଣ ? ଯେଉଁ ସନ୍ତାନଙ୍କ କୃତିତ୍ୱ ଆଜିଯାଏ ଲୋକଲୋଚନକୁ ଆସିପାରିଲା ନାହିଁ । ଯେ ଭଗୀରଥ ଭଳି ସ୍ୱାଧୀନତାର ଗଙ୍ଗା ଆଣିବା ପାଇଁ ସମଗ୍ର ଜୀବନ ଅସରା ତପସ୍ୟାରେ ପରିଣତ କରିଦେଲେ ତାଙ୍କ ନାମ ବଂଶୀଧର । ଶ୍ରଦ୍ଧାରେ ନନା (ବାପା) ଡାକୁଥିଲେ ବଇଁଶୀ ।

ସେପ୍ଟେମ୍ବର ମାସର ତାରିଖ କେତେ ତାଙ୍କର ମନେ ନଥିଲା । କାରଣ ସେ ନିଜ ହାତରେ ନିଜ ମାଟ୍ରିକ୍ ସାର୍ଟିଫିକେଟ୍ ଜଳାଇ ଦେଇଥିଲେ ।.ମୁକ୍ତିକାମୀ ନବ-ଯୁବକଟିଏ ଦିନେ ସରକରୀ ଚାକିରୀ ପାଇଁ ଆବଶ୍ୟକ ହେଉଥିବା ଏହି ପ୍ରମାଣପତ୍ରଟି ଜଳାଇ ଦେଇ ଶାନ୍ତିରେ ନିଶ୍ୱାସ ମାରିଥିଲା । ରେଭେନ୍ସା କଲେଜରେ ବି.ଏସ୍‌ସି. ପଢୁଥିବା ସମୟରେ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସହିତ ମିଶି ସମାଜ ସେବା କାର୍ଯ୍ୟରେ ଜଡ଼ିତ ହୋଇ ପାଠର ଡୋରି ବାନ୍ଧିଦେଲେ ସିଏ । ଗୋପବନ୍ଧୁ କାଳେ ତାଙ୍କୁ ବାରମ୍ବାର ବି.ଏସ୍‌ସି. ପରୀକ୍ଷାଟା ଦେଇଦେବାକୁ ଉପଦେଶ ଦେଇଥିଲେ । କିନ୍ତୁ ନାଁ, ସେ ଦୃଢ଼ ପ୍ରତିଜ୍ଞ ବ୍ୟକ୍ତିତ୍ୱ ସେଦିନ ଗୋପବନ୍ଧୁଙ୍କ ଆଗ୍ରହକୁ ମଧ ଏଡ଼ାଇ ଦେଇଥିଲେ, ସେ ବିଦେଶୀ ପାଠ ପଢିବେ ନାହିଁ । ସେ ପାଠ କେବଳ ଗୋଲାମୀ ହିଁ ଶିଖାଏ । ତାଙ୍କର ଅଧ୍ୟାପକଙ୍କ ମତ ଥିଲା; "ବଂଶୀଧର ! ତୁମେ ଭଲ ପଢୁଛ । ତୁମର ସ୍ୱର୍ଣ୍ଣାଭ ଭବିଷ୍ୟତ ଅଛି । ତୁମେ ତାକୁ ପାଦରେ ଦଳିଦେଇ ଯିବ ?"

**ପିଲାଦିନ :**

ସେ କହନ୍ତି ଯେ ସେ ଦ୍ୱିତୀୟା ଓଷା ବାସି ଘାଣ୍ଟ ତରକାରୀ ଖାଇବା ଦିନ ଜନ୍ମ ହୋଇଥିଲେ । ତାଙ୍କ ଜନନୀଙ୍କର ଘାଣ୍ଟ ତିଅଣ ଖାଇବାକୁ ମନ ଥିବ ବୋଧହୁଏ । ଆଉ ମୂଳାଷ୍ଟମୀ ଦିନଠାରୁ ଆରମ୍ଭ ହେଉଥିଲା ପାରମ୍ପରିକ ସଜବସା ଉତ୍ସବ ଯାହା ଶେଷ ହେଉଥିଲା ବିଜୟା ଦଶମୀ ଦିନ । ସଜ ବସିବା ପରଦିନ ହିଁ ସେ ଦେବୀ ଆଶୀର୍ବାଦ ସଦୃଶ ଜନ୍ମ ନେଇଥିଲେ ଅବିଭକ୍ତ କଟକ ଜିଲ୍ଲା, ସାଲେପୁର ଥାନା ଅନ୍ତର୍ଗତ ଖଣ୍ଡସାହୀ ଗ୍ରାମରେ । ସରକାରୀ କାଗଜପତ୍ରରେ ବାଲିଆପଦା ମୌଜା ନାମରେ ଖ୍ୟାତ ଏ ଅଞ୍ଚଳ ବହୁ ଜ୍ଞାନୀ ଗୁଣୀ ବ୍ୟକ୍ତିଙ୍କ ଜନ୍ମସ୍ଥାନ । ଖଣ୍ଡସାହୀ ସେତେବେଳେ ବିଦ୍ୟାନଗରୀ ଭାବରେ ବିଖ୍ୟାତ ଥିଲା । ଏ ଅଞ୍ଚଳ ପ୍ରଥମେ ଜଗନ୍ନାଥ ମିଶ୍ରଙ୍କ ଗାଆଁ ଭାବରେ ଜଣାଶୁଣା ।

ଏଠାରେ ଆଉ ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଥିଲେ, ସେମାନେ ହେଲେ ଭକ୍ତମଧୁ ବିଦ୍ୟାପୀଠର ଶିକ୍ଷକ ତଥା 'ପଞ୍ଚାମୃତ' ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ଅଗଣି ଦାଶ ।

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ସ୍ୱର୍ଣ୍ଣପଦକଧାରୀ ନ୍ୟାୟାଚାର୍ଯ୍ୟ ଉପାଧି ପ୍ରାପ୍ତ ନାରାୟଣ ମିଶ୍ର ଓରଫ ଗାଲୁ ପଣ୍ଡିତ, ରେଭେନ୍ସା କଲେଜର ଡଃ ବ୍ରହ୍ମାନନ୍ଦ ମିଶ୍ର—ପଦାର୍ଥ ବିଜ୍ଞାନୀ ଓରଫ ମାଲୁ ପଣ୍ଡିତ, ପଣ୍ଡିତ ଆକୁଳି ମିଶ୍ର, ଡାଃ କୁଳମଣି ମିଶ୍ର ଓ ସିଟି ବୁକ୍ ଷ୍ଟୋର ମାଲିକ ଉଦୟନାଥ ରଥ, ଡାକ୍ତର ସତ୍ୟବାଦୀ ମିଶ୍ର ଓରଫ ମିଛୁବାବୁ, ଇଂ ଗଣେଶ୍ୱର ନନ୍ଦ, ଡାକ୍ତର ବ୍ରଜନାଥ ମିଶ୍ର, ବ୍ରହ୍ମାନନ୍ଦ ଶତପଥୀ (ରାଇଶୁଙ୍ଗୁଡ଼ା) ଓ ଏ ସମସ୍ତଙ୍କର ବାଲ୍ୟଗୁରୁ ବଡ଼ ମାଷ୍ଟର ନାମଧାରୀ ଶ୍ରୀଯୁକ୍ତ ଜୟକୃଷ୍ଣ ରଥ । ଏତଦ୍‌ବ୍ୟତୀତ ଜଗନ୍ନାଥ ମିଶ୍ରଙ୍କ ଜ୍ୱାଇଁ ଚିନ୍ତାମଣି ଆଚାର୍ଯ୍ୟ (ଯେ କି ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି)ଙ୍କର ମଧ୍ୟ ଖଣ୍ଡସାହୀ ଗ୍ରାମରେ ଢେର ପ୍ରତିଷ୍ଠା ଥିଲା । ପରବର୍ତ୍ତୀ କାଳରେ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶ୍ରୀନିବାସ ମିଶ୍ର (କ) ଇଂ ବୈକୁଣ୍ଠ ନାଥ ଦାଶ, ଇଂ ହରିବନ୍ଧୁ ଦାଶ, ସ୍ୱାଧୀନତା ସଂଗ୍ରାମୀ କସ୍ତୁରୀ ଚରଣ ଦ୍ୱିବେଦୀ, ସ୍ୱାଧୀନତା ସଂଗ୍ରାମୀ ସଚ୍ଚିଦାନନ୍ଦ ମିଶ୍ର, ମଞ୍ଚଶିଳ୍ପୀ ପ୍ରିୟନାଥ ମିଶ୍ର, ଓଡ଼ିଶା ବୁକ୍ ଏମ୍ପୋରିୟମର ପ୍ରାଣନାଥ ମିଶ୍ର ପ୍ରଭୃତି ଏହି ଗ୍ରାମର ସମ୍ମାନକୁ ନିଜ ନିଜ ପ୍ରଚେଷ୍ଟାରେ ବହୁଗୁଣିତ କରିଛନ୍ତି ।

ବଂଶୀଧରଙ୍କର ପ୍ରତିଭା ପିଲାଦିନୁ ତୁଳସୀ ଦୁଇପତ୍ରରୁ ବାସିଲା ପରି ଜଣାପଡ଼ିଥିଲା । ତାଙ୍କରି ସମ୍ପାଦନାରେ ହାତଲେଖା 'ଚନ୍ଦ୍ରିକା' ପତ୍ରିକା ପ୍ରକାଶ ପାଉଥିଲା । ଲିପିକାର ଥିଲେ ଇନ୍ଦ୍ରମଣି ମିଶ୍ର । ଅନେକ ଦିନ ପ୍ରକାଶିତ ଏହି ପତ୍ରିକାକୁ ୰ ଗୋପବନ୍ଧୁ ମିଶ୍ର, ଅଗଣି ଦାଶ, କୁଳମଣି ମିଶ୍ର, ନୀଳମଣି ମିଶ୍ର, ହରେକୃଷ୍ଣ ପ୍ରଧାନ ଇତ୍ୟାଦି ନିୟମିତ ଲେଖାମାନ ଦେଉଥିଲେ । ଏମାନଙ୍କ ବ୍ୟତୀତ ଅନେକ ଲୋକ ସାମୟିକ ଲେଖା ମଧ୍ୟ ଦେଉଥିଲେ । ପ୍ରାଥମିକ ବିଦ୍ୟାଳୟ ସ୍ତରରୁ ଏ ଚେଷ୍ଟା ବିରଳ ଓ ଅବିସ୍ମରଣୀୟ । ଏହାର ପ୍ରଭାବରେ ପରବର୍ତ୍ତୀ କାଳରେ ଏହି ଗ୍ରାମରୁ ବହୁ କବି, ଲେଖକ, କଳାକାର ସୃଷ୍ଟି ହୋଇଛନ୍ତି ।

**ବଂଶଲତା :**

ଖଣ୍ଡସାହୀ କହିଲେ ବଡ଼ଥାକନ, ବୀରମଣିପୁର ବା ବେଣୀପୁର, ସରପଡ଼ା, ହନୁପୁର, କୁସୁନଦାସପୁର, ବୋଧଙ୍ଗ, ବଟକୁଣ୍ଡି ଇତ୍ୟାଦି ଖଣ୍ଡ ଖଣ୍ଡ ଅଂଶର ଏକତ୍ର ସମାବେଶ—ଏହା ସହିତ ଅସୁରେଶ୍ୱର ପ୍ରଗଣାର ବାଲିଆପଦା ମଧ୍ୟ ମିଶି ରହିଛି । ଅସୁରେଶ୍ୱର ପ୍ରଗଣାର ପୂରା ଆଠକୋଶ ମଧ୍ୟରେ ଉତ୍କୃଷ୍ଟ ବ୍ରାହ୍ମଣ ନଥିବାରୁ ରାମରାଙ୍ଗର ମାହାଲ ଗୁଜାରଦାରଙ୍କ ବଂଶଧର ସିଂହନନ୍ଦନ (ଅସୁରେଶ୍ୱରର ରାଜା) ପୁରୀ ଷୋହଳ

ଶାସନରୁ ପଣ୍ଡିତ ବ୍ରାହ୍ମଣମାନଙ୍କୁ ଆଣି ଘାଇମୁହଁ (ବର୍ତ୍ତମାନର ଖଣ୍ଡସାହୀ ଅନ୍ତର୍ଗତ ବାଲିଆପଦା ମୌଜା)ରେ ଅବସ୍ଥାପିତ କରାଇଥିଲେ । ତହିଁରୁ ପୁରୀ ଷୋହଳ ଶାସନରୁ ବୀର ରାମଚନ୍ଦ୍ରପୁର ନିବାସୀ ମହାଦେବ ମିଶ୍ରଙ୍କ ବଂଶ ପଟିଆରେ ଆସି ବସବାସ କରି ରହିଥିଲେ । ମହାଦେବ ମିଶ୍ରଙ୍କ ପୁତ୍ର ଥିଲେ ଅସାଧାରଣ ପଣ୍ଡିତ ରାମଚନ୍ଦ୍ର । ସେ ପ୍ରଥମେ ପଟିଆ ରାଜାଙ୍କର ରାଜପୁରୋହିତ ଓ ପରେ ରାଜାଙ୍କର ଉପଦେଷ୍ଟା ପାଲଟିଥିଲେ । ରାଜା ତାଙ୍କୁ ବ୍ରହ୍ମା ଉପାଧିରେ ଭୂଷିତ କରିଥିଲେ । ସେ ଥିଲେ ଶକ୍ତି ସାଧକ । ରାଜା ପରବର୍ତ୍ତୀ କାଳରେ ରାମଚନ୍ଦ୍ରଙ୍କ ଉପଦେଶ ନ ମାନି ସ୍ୱେଚ୍ଛାଚାରୀ ହୋଇଥିଲେ । ତେଣୁ ରାମଚନ୍ଦ୍ର ବ୍ରହ୍ମା ପଟିଆ ତ୍ୟାଗ କରି ବରପଦା ମୌଜାରେ ସୋମନାଥ ମହାଦେବଙ୍କ ନିକଟରେ ଆସି ବସବାସ କଲେ । ସେ ସ୍ଥାନ ତାଙ୍କର ଶୁଦ୍ଧପୂତ ଜୀବନଶୈଳୀ ପାଇଁ ଅନୁପଯୁକ୍ତ ହେବାରୁ ସେ ଆସି କୃପାସିନ୍ଧୁ ଚୌଧୁରୀ (ନଗସପୁର)ଙ୍କ ଖମାରଘର ଖଣ୍ଡସାହୀରେ ରାମଚନ୍ଦ୍ର ବ୍ରହ୍ମାଙ୍କୁ ରଖାଇଲେ । ରାମଚନ୍ଦ୍ର ବ୍ରହ୍ମାଙ୍କର ଚାରି ପୁଅ ହେଲେ, ମୃତ୍ୟୁଞ୍ଜୟ ବ୍ରହ୍ମା, କୃତ୍ତିବାସ ଖାଡ଼ଙ୍ଗା, ପୁରୁଷୋତ୍ତମ ରାଜଗୁରୁ ଓ ଦିବାକର ମିଶ୍ର । ମୃତ୍ୟୁଞ୍ଜୟ ବ୍ରହ୍ମାଙ୍କର ଦୁଇ ପୁଅ ହେଲେ ଭଗବାନ ଓ ବାଇଧର । ଭଗବାନ ମିଶ୍ରଙ୍କର ଗୋବିନ୍ଦ ଚନ୍ଦ୍ର, ଅନାଦି ଓ ତ୍ରିଲୋଚନ ନାମରେ ତିନୋଟି ପୁତ୍ରସନ୍ତାନ ଥିଲେ । ଏହି ତ୍ରିଲୋଚନଙ୍କ ପୁତ୍ର ନରହରି ଚାରିଟି ପୁତ୍ରସନ୍ତାନଙ୍କ ଜନକ ହୋଇଥିଲେ । ଗଙ୍ଗାଧର, ଗଦାଧର, ଲକ୍ଷ୍ମୀଧର ଓ ଚକ୍ରଧର । ଗଙ୍ଗାଧର ଅପୁତ୍ରିକ ଥିଲେ । ତେଣୁ ସାନଭାଇ ଲକ୍ଷ୍ମୀଧରଙ୍କର ଚାରିପୁଅ ସୋମନାଥ, ବଂଶୀଧର, ସୀତାନାଥ ଓ ଶ୍ରୀନିବାସଙ୍କ ମଧ୍ୟରୁ ଦ୍ୱିତୀୟ ପୁତ୍ର ବଂଶୀଧରଙ୍କୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିଥିଲେ ।

ବଂଶୀଧର ଲକ୍ଷ୍ମୀଧର ମିଶ୍ରଙ୍କ ଔରସ ଜାତ ସନ୍ତାନ ହୋଇଥିଲେ ହେଁ ଦଦେଇ ଅର୍ଥାତ୍ ଗଙ୍ଗାଧର ମିଶ୍ରଙ୍କ ଘରକୁ ପୁଅହୋଇ ଆସିଲେ । ଅପୁତ୍ରିକ ଗଙ୍ଗାଧର ବଂଶୀଧରଙ୍କୁ ଶ୍ରଦ୍ଧାରେ ପାଳନ କଲେ । ଏଠାରେ ଗଙ୍ଗାଧରଙ୍କ କଥା ଯାହା ବଂଶୀଧର ଓ ତାଙ୍କ ପତ୍ନୀଙ୍କ ମୁଖରୁ ଶୁଣିବାକୁ ମିଳେ ତାହା ଏହିଭଳି । ଗଙ୍ଗାଧର ଓରଫ ଗଙ୍ଗୁବାବୁ ଥିଲେ ଜମିଦାର । ସେ ସମୟରେ ଜମିଦାରମାନେ ବେଶ୍ ପ୍ରତିପତ୍ତିଶାଳୀ ଥିଲେ । ତାଙ୍କ ଇଲାକାର ମଣିଷମାନଙ୍କୁ, ତାଙ୍କ ପାଖରେ ଚାକିରୀ କରୁଥିବା ମଣିଷମାନଙ୍କୁ ସେମାନେ ଭାରି ଖରାପ ବ୍ୟବହାର କରୁଥିଲେ । ଏପରିକି ଚାକରବାକରଙ୍କୁ ଗଛରେ ବାନ୍ଧି ମାଡ଼ଦେବା କଥା ମଧ୍ୟ ବେଶ୍ ସାଧାରଣ ଥିଲା । କିନ୍ତୁ ଗଙ୍ଗାଧର ଥିଲେ ଭିନ୍ନ ମଣିଷ । ସେ ଚାକର ମୂଲିଆଙ୍କୁ ସ୍ନେହ କରୁଥିଲେ । ପାଖରେ ବସାଇ ଖୁଆଉଥିଲେ । ସାଙ୍ଗରେ ନେଇ ଗାଁ ରାସ୍ତାରେ ଗଛ ଲଗାଉଥିଲେ । ଖଣ୍ଡସାହୀ ଗ୍ରାମର ରାସ୍ତା କଡ଼ର ଅଧିକାଂଶ ଆମ୍ବଗଛ ଗଙ୍ଗାଧର ମିଶ୍ରେ

ଲଗାଇଥିଲେ । ଲୋକେ କହୁଥିଲେ ତାଙ୍କ ହାତ ବାଜିଲେ ମଲା ଗଛ ଜୀଇଁ ଉଠୁଥିଲା । ତାଙ୍କର କଥା ସବୁ ଥିଲା ହାସ୍ୟରସରେ ସିକ୍ତ । ଯେଉଁଥିପାଇଁ ସେ ଗ୍ରାମର ଆବାଳ ବୃଦ୍ଧବନିତାଙ୍କ ଦ୍ୱାରା ଆଦୃତ ହୋଇଥିଲେ । ପିଲାଦିନରୁ ବଂଶୀଧର ନନାଙ୍କର ଏହି ଲୋକସମ୍ପର୍କ ଓ ଜନହିତକର କାର୍ଯ୍ୟ ଦ୍ୱାରା ବହୁ ଭାବରେ ଅନୁପ୍ରାଣିତ ହୋଇଥିଲେ ।

ଗଙ୍ଗାଧରଙ୍କର ପ୍ରଥମା ଓ ଦ୍ୱିତୀୟା ପତ୍ନୀଙ୍କର ଅକାଳ ବିୟୋଗ ଘଟିଥିଲା । ପରମ୍ପରା ଅନୁଯାୟୀ ସେ ସାହାଡ଼ା ଗଛକୁ ବିବାହ କରିବା ପରେ ଚତୁର୍ଥ ପତ୍ନୀ ଭାବରେ ଦ୍ୱିତୀୟା ଦେବୀଙ୍କୁ ବିବାହ କରିଥିଲେ । ଏହି ଦ୍ୱିତୀୟା ଦେବୀଙ୍କ ହାତରେ ବଂଶୀଧର ମଣିଷ ହେଲେ । ପାଠ ପଢ଼ିଲେ ।

ଏ ମଣିଷଟି ଯେଉଁ ଗ୍ରାମରେ ଜନ୍ମ ହୋଇଥିଲେ, ସେ ଗ୍ରାମ କଥା ଅବଶ୍ୟ ଏଠାରେ ସୂଚନା ଦିଆଯିବ ।

କଟକ ଚାନ୍ଦବାଲି ରାସ୍ତାରେ ବସ୍‌ରେ ଗଲେ ପ୍ରାୟ ୫୦ କିଲୋମିଟର ପରେ ପଡ଼ିବ ନିଶ୍ଚିତକୋଇଲି ବସ୍‌ଷ୍ଟାଣ୍ଡ । ସେଠାରୁ ଓହ୍ଲାଇ ପାଦରେ ଚାଲି ଚାଲି ଦକ୍ଷିଣପୂର୍ବ ଦିଗକୁ ଗଲେ ଦୁଇ ମାଇଲ ରାସ୍ତା । କେନ୍ଦ୍ରାପଡ଼ା କେନାଲ ଓ ଲୁଣାନଦୀ ତୀରରେ ଅବସ୍ଥିତ ଖଣ୍ଡସାହୀ ଗ୍ରାମ । ଏହି କେନ୍ଦ୍ରାପଡ଼ା କେନାଲ ନଅଙ୍କ ଦୁର୍ଭିକ୍ଷ ବେଳେ ଖୋଲା ହୋଇଥିଲା ବୋଲି ଲୋକେ କହନ୍ତି । କେନାଲରେ ପ୍ରାୟ ବର୍ଷର ସବୁଦିନେ ପାଣି ଥାଏ । ତେଣୁ ଖଣ୍ଡସାହୀରେ ଜମି କେବେ ପଡ଼ିଆ ପଡ଼େ ନାହିଁ । କେନାଲ କୂଳରେ ରାମେଶ୍ୱର ମହାଦେବ (ପୂର୍ବପୁରୁଷ ରାମଚନ୍ଦ୍ର ବ୍ରହ୍ମାଙ୍କ ନାମାନୁସାରେ)ଙ୍କ ମନ୍ଦିର ଓ ଗ୍ରାମଦେବତୀ ରାମେଶ୍ୱରୀ ଦେବୀଙ୍କ ମନ୍ଦିର । ସେହି ମନ୍ଦିର ପାଖରେ ଖଣ୍ଡସାହୀ ଜଗନ୍ନାଥ ମି.ଇ. ସ୍କୁଲ । ନାଳବନ୍ଧରୁ ପଶ୍ଚିମକୁ ଗଲେ ପ୍ରାୟ ଦୁଇମାଇଲ ଦୂରରେ ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠ ଅର୍ଥାତ୍ ହାଇସ୍କୁଲ । ସେହି ଗ୍ରାମର ସମସ୍ତେ ପ୍ରାୟ ସ୍ୱଚ୍ଛଳ । ପ୍ରତ୍ୟେକ ଲୋକଙ୍କର କୂଅ, ପୋଖରୀ, ଆମ୍ବ, ନଡ଼ିଆ, ପଣସ, ଗୁଆ ଗଛ ଭର୍ତ୍ତି । କୁହାଯାଏ ଯେ ଖଣ୍ଡସାହୀ ଗାଁର ବ୍ରାହ୍ମଣସାହିରେ ଭାତ ତରକାରୀ ଅଭାବ ହେବ ନାହିଁ । ପ୍ରତ୍ୟେକ ଘରୁ ଏକାଧିକ ଶିକ୍ଷିତ ବ୍ୟକ୍ତି ଗାଁ ଛାଡ଼ି ଉପାର୍ଜନ ପାଇଁ କଟକ, ଭୁବନେଶ୍ୱର, ରଉରକେଲା, ପାରାଦ୍ୱୀପରେ ଅବସ୍ଥାପିତ । କେହି ବିଦେଶରେ ମଧ୍ୟ ବେଶ୍ ନାମ କରିଛନ୍ତି । ଏ ଗାଁର ଏତେ ସଂଖ୍ୟକ ପୁଅ ଝିଅ ପାଠ ପଢୁଥିଲେ ଯେ ତାହା ସେ ସମୟରେ ଉଦାହରଣ ଦିଆଯାଉଥିଲା । ଲକ୍ଷ୍ମୀ ସରସ୍ୱତୀଙ୍କର ଏକତ୍ର ସହାବସ୍ଥାନ ଥିଲା ଖଣ୍ଡସାହୀ ଗ୍ରାମ । ଶାସ୍ତ୍ର ଚର୍ଚ୍ଚାଠାରୁ ଆରମ୍ଭ କରି ଲକ୍ଷ୍ମୀ ଆରାଧନା ସବୁଥିରେ ଖଣ୍ଡସାହୀର ନାମ ଥିଲା ।

ବିଶିଷ୍ଟ ଜମିଦାର ଜଗନ୍ନାଥ ମିଶ୍ରଙ୍କ ପରିବାର ସାରା ଓଡ଼ିଶାରେ ବିଖ୍ୟାତ । କେତେ ଜ୍ଞାନୀ ଗୁଣୀ ପଣ୍ଡିତଙ୍କୁ ସେ ସ୍ୱୀକୃତି ଦେଇଥିଲା ତା'ର ସୀମା ନାହିଁ । ଜଗନ୍ନାଥ ମିଶ୍ରଙ୍କ କୁଟୁମ୍ବ ଏମାନେ । ତାଙ୍କ ପୁଅ ଗୋପବନ୍ଧୁ ମିଶ୍ର ଥିଲେ ବେଶ୍ ପ୍ରତିପତ୍ତିଶାଳୀ ରାୟ ସାହେବ ଉପାଧିଧାରୀ । ଖଣ୍ଡସାହୀରେ ବାବୁଘର କହିଲେ ତାଙ୍କ ଘରକୁ ହିଁ ବୁଝାଉଥିଲା । ଗ୍ରାମର ଇଷ୍ଟ ଦେବତା ରାମେଶ୍ୱର ମହାଦେବ ଓ ରାମେଶ୍ୱରୀ ଦେବୀଙ୍କ ମନ୍ଦିର ନିକଟରେ ସେ ସ୍ଥାପନ କରିଥିଲେ ବୃନ୍ଦାବନରୁ ଆଣିଥିବା ବୃନ୍ଦାବନଚନ୍ଦ୍ରଙ୍କ ମନ୍ଦିର । ସେ ଖଣ୍ଡସାହୀର ସାଂସ୍କୃତିକ ଜୀବନକୁ ଚଳଚଞ୍ଚଳ କରି ରଖିଥିଲେ । ବିଭିନ୍ନ ପର୍ବପର୍ବାଣୀ ଓ ଯାନିଯାତ୍ରା ପାଳନ ଅବସରରେ, କେବେ ବୈଷ୍ଣବ ପାଣିଙ୍କ ଯାତ୍ରାଦଳକୁ ଆଣି ସେ ଅଭିନୟ କରାଉଥିଲେ ତ କେବେ ପାଲା, ଦାସକାଠିଆ ପ୍ରଭୃତି କରାଇ ଲୋକମାନଙ୍କ ଜୀବନକୁ ପ୍ରଭାବିତ କରାଉଥିଲେ । ଯାତ୍ରାଦଳଙ୍କୁ ଆତିଥ୍ୟ ଦେବାରେ ସେ ଥିଲେ ଅଗ୍ରଣୀ । ଗଣକବି ବୈଷ୍ଣବ ପାଣି ତାଙ୍କର ଆତ୍ମଜୀବନୀ ଗ୍ରନ୍ଥରେ ଏହି ଗୋପବନ୍ଧୁ ମିଶ୍ରଙ୍କ ନାମ ଉଲ୍ଲେଖ କରିଛନ୍ତି । ଦୋଳ ବେଳେ ଖଣ୍ଡସାହୀ ଗାଁରେ ସ୍ୱର୍ଗର ଅବତରଣ ହୁଏ । ପାଞ୍ଚ ଦିନରେ ପାଞ୍ଚୋଟି ପାଖ ଗାଁରେ ମେଲଣ ଓ ରାତିରେ ବଛାବଛା ଯାତ୍ରାଦଳଙ୍କ ଯାତ୍ରା । ଦଶହରାରେ ସପ୍ତମୀଠାରୁ ଦଶହରାଯାଏ ବାବୁସାହୀ କମ୍ପିଯାଏ । ଏହି ମହୋତ୍ସବରେ ଗାଁରେ ବନ୍ଧୁବାନ୍ଧବଙ୍କ ଭିଡ଼ ଜମିଯାଏ ।

**ଶିକ୍ଷା :**

ଏହିଭଳି ଅବସ୍ଥା ସମ୍ପନ୍ନ ଜମିଦାର ପରିବାରରେ ବଂଶୀଧର ଜନ୍ମଗ୍ରହଣ କରିଥିଲେ । ପିଲାଦିନର ଚାଟଶାଳୀ ପାଠ ସାରି ବଂଶୀଧର ରାଇଗୁଣ୍ଡ଼ାରୁ ମାଇନର ପାସ୍ କରି ଅଧିକ ପଢ଼ିବା ପାଇଁ କଟକ ଗଲେ । ସେ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବୃତ୍ତି ପାଉଥିଲେ । କଟକରେ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ତାଙ୍କର ଶିକ୍ଷା ଆରମ୍ଭ ହେଲା । ସେ ଗୋଟିଏ ମେସ୍‌ରେ ରହୁଥିଲେ, ଯେଉଁଠି ତାଙ୍କୁ ମାସିକ ଅଢ଼େଇ ଟଙ୍କା ଦେବାକୁ ପଡୁଥିଲା । ସେ ଆଠଣା ମୂଲ୍ୟର ପିସ୍ତଲ ମାର୍କା ଧୋତି ପିନ୍ଧୁଥିଲେ । ଜମିଦାରୀ ବଡ଼ିମା ନ ଥିବା ଏହି ଛାତ୍ର ଭିତରେ ଶିକ୍ଷା ପାଇଁ ପ୍ରବଳ ଆଗ୍ରହ ଥିଲା । ପ୍ରାୟ ୧୯୧୬-୧୭ ବେଳକୁ ରେଭେନ୍‌ସା କଲିଜିଏଟ୍ ସ୍କୁଲର ହେଡ୍‌ମାଷ୍ଟର ଥିଲେ ଜଣେ ଇଂରେଜ । ତାଙ୍କର ଇଂରାଜୀ ଭାଷା ଉଚ୍ଚାରଣ ବଂଶୀଧର ବୁଝିପାରିଲେ ନାହିଁ ଓ ଶ୍ରେଣୀ ଗୃହରେ ତା'ର ପ୍ରତିବାଦ କଲେ । ଫଳରେ ତାଙ୍କୁ ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ରଷ୍ଟିକେଟ୍ କରାଗଲା । ପ୍ରତିପତ୍ତିଶାଳୀ ହେଡ୍‌ମାଷ୍ଟର ସାହେବଙ୍କ ଦସ୍ତଖତ ଦେଖିବା ପରେ କୌଣସି ସ୍କୁଲ କର୍ତ୍ତୃପକ୍ଷ ତାଙ୍କୁ ଛାତ୍ର ଭାବରେ ଗ୍ରହଣ କରିବାକୁ ରାଜି ହେଲେ ନାହିଁ । ମାତ୍ର କଟକର ରାମକୃଷ୍ଣ

ଆଶ୍ରମ ସ୍କୁଲ ତାଙ୍କୁ ଆଦରରେ ଗ୍ରହଣ କଲା । ରାମକୃଷ୍ଣ କୁଟୀର ପ୍ରଥମେ ବାଳକ ଭିକ୍ଷୁ ସମ୍ପ୍ରଦାୟ ନାମରେ ନାମିତ ଥିଲା । ରେଭେନ୍‌ସା କଲିଜିଏଟ୍ ସ୍କୁଲର ସ୍ୱନାମଧନ୍ୟ ପ୍ରଧାନ ଶିକ୍ଷକ କୃଷ୍ଣଚନ୍ଦ୍ର ସେନଗୁପ୍ତ ଏହି ପ୍ରାଚୀନ ଅନୁଷ୍ଠାନର ପୃଷ୍ଠପୋଷକ ଥିଲେ । ପରବର୍ତ୍ତୀ କାଳରେ ୧୯୦୬ ମସିହାରେ ଏହା ରାମକୃଷ୍ଣ କୁଟୀର ନାମରେ ନାମିତ ହେଲା । ଜନନାୟକ ସୁଭାଷଚନ୍ଦ୍ର ବୋଷଙ୍କ ପିତା ୰ ଜାନକୀନାଥ ବୋଷ ମହାଶୟ ଏହି କୁଟୀର ପରିଚାଳନା ସମିତିର ସଭାପତି ଥିଲେ । (ସମାଜ, ୧୦-୭-୨୦୦୨) ଏହି ସ୍କୁଲର ଛାତ୍ର ଭାବରେ ସେ ରାମକୃଷ୍ଣ କଟେଜର ଅନ୍ତେବାସୀ ହେଲେ । ଏହି ଶିକ୍ଷାନୁଷ୍ଠାନକୁ ରାମକୃଷ୍ଣ ମିଶନର ଅନେକ ସନ୍ୟାସୀ ବିଭିନ୍ନ ସମୟରେ ଆସୁଥିଲେ । ସେଠାରେ ଜନୈକ ରାମକୃଷ୍ଣ ଆଶ୍ରମର ସନ୍ୟାସୀଙ୍କୁ ଭେଟି, ତାଙ୍କ ଧର୍ମ-ଦର୍ଶନ ଓ ଜୀବନଚର୍ଯ୍ୟା ଦ୍ୱାରା ବଂଶୀଧର ବହୁଭାବରେ ପ୍ରଭାବିତ ହୋଇଥିଲେ । ନିଜ କାମ ନିଜେ କରିବା, ନିଜ ଜିନିଷପତ୍ର ଯେଉଁଠୁ ଆଣିବା, ସେଠାରେ ସାଇତି ରଖିବା ଭଳି କାର୍ଯ୍ୟ ସେ ଜୀବନର ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ନିର୍ବିବାଦରେ କରୁଥିଲେ । ରାମକୃଷ୍ଣ ଆଶ୍ରମ ସହିତ ତାଙ୍କର ସଂପୃକ୍ତି ମଧ୍ୟ ସମଗ୍ର ଜୀବନ ରହିଥିଲା । କଟକରେ ରାମକୃଷ୍ଣ ଆଶ୍ରମରେ ରହୁଥିବା ବେଳେ ତାଙ୍କର ପଣ୍ଡିତ ନୀଳକଣ୍ଠଙ୍କ ସହିତ ଯୋଗାଯୋଗ ହୋଇଥିଲା । ପ୍ରଚଣ୍ଡ ସ୍ୱାଭିମାନୀ ନୀଳକଣ୍ଠ ସେତେବେଳେ ପଇତା ଫିଙ୍ଗି, ନିଶ ରଖି ତତ୍କାଳୀନ ବ୍ରାହ୍ମଣ ସମାଜର ଚକ୍ଷୁଶୂଳ ପାଲଟିଥିଲେ । ସେ ଅସବର୍ଣ୍ଣମାନଙ୍କ ସାଙ୍ଗରେ ଏକାଠି ଭୋଜନ କରୁଥିଲେ । ବଂଶୀବାବୁ ତାଙ୍କୁ କଣ୍ଠିଆନ୍ନା ବୋଲି ଡାକୁଥିଲେ । ଏଇ ପଇତା ଫୋପାଡ଼ିବା ଘଟଣାରୁ ଉଭୟଙ୍କ ଭିତରେ ବେଶ୍ କଥା କଟାକଟି ହୋଇଥିଲା ବୋଲି ବଂଶୀବାବୁ କୁହନ୍ତି । ବଂଶୀବାବୁଙ୍କର ଯୁକ୍ତି ଥିଲା ଯେ, ଯଦି ଆମେ ଅବ୍ରାହ୍ମଣ ପିଲାଙ୍କୁ ଗାୟତ୍ରୀ ପଢ଼ାଇ, ପଇତା ପ୍ରଦାନ କରି ବ୍ରାହ୍ମଣତ୍ୱ ଦେଇ ପାରିବା ତାହା ଭଲ ହେବ । ପଇତା ଫିଙ୍ଗିବାଠାରୁ ଏଭଳି ଗଠନମୂଳକ ପଦକ୍ଷେପ ହୁଏତ ଅନେକଙ୍କୁ ଆକୃଷ୍ଟ କରିଥିବ । କିନ୍ତୁ ଏ କଥାଟି ଯୁକ୍ତି ସ୍ତରରେ ରହିଗଲା । ନୀଳକଣ୍ଠଙ୍କ ବ୍ୟକ୍ତିତ୍ୱ ବହୁ ଯୁବକଙ୍କୁ ତାଙ୍କ ଅନୁଗାମୀ କରାଇ ପାରିଥିଲା ।

ସେତେବେଳେ ସେ ରାଧାନାଥ ରାୟଙ୍କ ସଦ୍ୟ ପ୍ରକାଶିତ କାବ୍ୟମାନ କିଣୁଥିଲେ । ସେହି ସମୟରୁ ମଧୁସୂଦନ ଓ ଗଙ୍ଗାଧରଙ୍କ କବିତାର ପଙ୍‌କ୍ତିମାନ ସେ ସ୍ମୃତିରେ ରଖିଥିଲେ । ତାଙ୍କର ଅସାଧାରଣ ସ୍ମୃତିଶକ୍ତି ଥିଲା । ପରିଣତ ବୟସରେ ସେ ବିଦଗ୍ଧ ଚିନ୍ତାମଣି, ରସକଲ୍ଲୋଳ, ବୈଦେହୀଶ ବିଳାସର ଛାନ୍ଦମାନ ଅନର୍ଗଳ ଗାନ କରିପାରୁଥିଲେ ।

ବଂଶୀଧର ତାଙ୍କ ପିଲାଦିନେ କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କର 'ମୋ ବାଇଧନ' କବିତା ଦ୍ୱାରା ଗଭୀର ଭାବରେ ଅନୁପ୍ରାଣିତ ହୋଇଥିଲେ । ବିଭିନ୍ନ ପତ୍ରପତ୍ରିକାରୁ ପଢ଼ି ସେ

ରାମକୃଷ୍ଣ ପରମହଂସଙ୍କ ବାଣୀ ଓ ଦର୍ଶନ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ବିବେକାନନ୍ଦଙ୍କୁ ସେ ଭାରତୀୟ ଯୁବମାନସର ନିରୁତା ପ୍ରତିନିଧି ଜ୍ଞାନ କରୁଥିଲେ । ବିବେକାନନ୍ଦଙ୍କ ଦର୍ଶନ ହିଁ ତାଙ୍କ ଜୀବନକୁ ବହୁ ଭାବରେ ପ୍ରଭାବିତ କରିଛି । ସେ ସବୁବେଳେ ବିବେକାନନ୍ଦଙ୍କର ସେହି ବଜ୍ର ଗମ୍ଭୀର ବାଣୀ ଉଚ୍ଚାରଣ କରୁଥିଲେ । "ଭାରତ ମୋର ଶୈଶବର କ୍ରୀଡ଼ାଙ୍ଗନ, ଯୌବନର ଉପବନ ଓ ବାର୍ଦ୍ଧକ୍ୟର ବାରାଣସୀ" ହୁଏତ ସେହି ନ୍ୟାୟରେ ସେ ବାର୍ଦ୍ଧକ୍ୟରେ ତାଙ୍କ ବାରାଣସୀକୁ ଫେରିଲେ, ମାତ୍ର ଯୌବନର ଉପବନରେ ଇଂରେଜ ଶାସନ ଯୋଗୁଁ ତାଙ୍କୁ ମରୁଭୂମିର ଜ୍ୱଳନ ହିଁ ମିଳିଥିଲା । ସେ ତାକୁ ବଦଳାଇ ଭାରତୀୟ ଯୁବସମାଜ ପାଇଁ ଭାରତକୁ ବିବେକାନନ୍ଦଙ୍କ ବାଣୀ ଅନୁଯାୟୀ ସାଧାରଣ ଲୋକଙ୍କର ଯୌବନର ଉପବନ ଭାବେ ଗଢ଼ିବାକୁ ଆତ୍ମାହୁତି ଦେଇଥିଲେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ । ସେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲେ ଓ ରେଭେନ୍‌ସା କଲିଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ଏ ସମ୍ବାଦ ଦେବାକୁ ଯାଇ ତାଙ୍କ ଶୁଭେଚ୍ଛା ପାଇଥିଲେ । ତା' ପରେ ସେ ରେଭେନ୍‌ସା କଲେଜରେ ପାଠ ପଢ଼ିଲେ । ରେଭେନ୍‌ସା କଲେଜରେ ପଢ଼ିବା ସମୟରେ ତାଙ୍କର ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ସମ୍ପର୍କରେ ଆଗ୍ରହ ଆସିଥିଲା । ସେ ମଦ ଦୋକାନ ଆଗରେ ପିକେଟିଂ କରୁଥିଲେ ଓ ଗୋଟିଏ leaf let ବାହାର କରୁଥିଲେ । ବିଦେଶୀ ବସ୍ତ୍ର ବର୍ଜନ ନୀତି ପାଳନ କରି ଦାମୀ ପୋଷାକପତ୍ର ଏକାଠି କରି ସେଥିରେ ନିଆଁ ଲଗାଇ ଦେଉଥିଲେ ।

ସେ ସମୟରେ କଟକ କହିଲେ ୧୯୨୦ର କଟକ । ଖଣ୍ଡସାହୀରୁ କେନ୍ଦ୍ରାପଡ଼ା କେନାଲ ଜଳପଥ ଦେଇ ଆସି କଟକର ଯୋବ୍ରାରେ ଓହ୍ଲାଇବାକୁ ହୁଏ । ସେଠାରୁ ହାତଟଣା ରିକ୍ସା, ଘୋଡ଼ାଗାଡ଼ି ବା ବଳଦ ଗାଡ଼ିରେ ରେଭେନ୍‌ସା କଲେଜ ଯାଏଁ ଯାଆନ୍ତି ।

କଟକରେ ସେତେବେଳେ ବଂଶୀଧରଙ୍କ ବଡ଼ଭାଇ ସୋମନାଥ ମିଶ୍ର ଓରଫ ଉଦ୍ଧବ ବାବୁ ମୁକ୍ତାର ଥାଆନ୍ତି । ପ୍ରଥମେ ବଂଶୀଧର ସୋମନାଥଙ୍କ ସହିତ ଗୋଟିଏ ମେସ୍‌ରେ ରହିଲେ । ପରେ ସେଠାରେ ପହଞ୍ଚିଲେ ସାନଭାଇ ଶ୍ରୀନିବାସ ଓରଫ ଦୁଆରୀ । ଶ୍ରୀନିବାସ ମଧ୍ୟ ପ୍ରଥମେ କିଛିଦିନ ଟିଉସନ୍ କରି ମେସ୍ ଖର୍ଚ୍ଚ ତୁଲାଉଥିଲେ । ଏହିଭଳି ଜମିଦାର ପରିବାରର ତିନୋଟି ଯୁବକ କଟକ ସହରରେ ଭାଗ୍ୟ ପରୀକ୍ଷା କରିବାକୁ ଆସି ପ୍ରାଥମିକ ଅବସ୍ଥାରେ ଜୀବନ ସଂଗ୍ରାମ କରିଥିଲେ । ଏ ସଂଗ୍ରାମ କିନ୍ତୁ ସେମାନଙ୍କୁ ଅଭିଜ୍ଞ କରିଥିଲା । ଶ୍ରୀନିବାସ କଟକରେ ଓକିଲ ଭାବରେ ପ୍ରତିଷ୍ଠିତ ହେଲେ ଓ ପରେ ପ୍ରଜା ସୋସାଲିଷ୍ଟ ପାର୍ଟି ତରଫରୁ ପାର୍ଲାମେଣ୍ଟର ମେମ୍ବର ହେଲେ । ବଂଶୀଧରଙ୍କ ଭାଗ୍ୟ କିନ୍ତୁ ଏହି ଭାଇମାନଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ ଥିଲା ।

**କଟକରେ ଛାତ୍ର ଜୀବନ :**

କଟକରେ ଛାତ୍ରାବସ୍ଥାରେ ତାଙ୍କର ଅନେକ ଲୋକସମ୍ପର୍କ ଗଢ଼ି ଉଠିଥିଲା । ପଣ୍ଡିତ ଆକୁଳି ମିଶ୍ର ଥିଲେ ତତ୍କାଳୀନ ଛାତ୍ର (ଖଣ୍ଡସାହୀ ଓ ଆଖପାଖ ଅଞ୍ଚଳର)ଙ୍କର ଅଭିଭାବକ ସଦୃଶ । ତାଙ୍କ ଘରେ ବଂଶୀଧର ପ୍ରାୟ ଚେସ୍ ଖେଳୁଥିଲେ । ଅନ୍ୟଜଣେ ବୟସ୍କ ଲୋକ ଥିଲେ କୃଷ୍ଣଚନ୍ଦ୍ର ସେନଗୁପ୍ତ । ସେ ଶ୍ରୀ ରାମକୃଷ୍ଣ ଦର୍ଶନରେ ବିଶ୍ୱାସୀ ଥିଲେ । ପ୍ରତିବର୍ଷ ରାମକୃଷ୍ଣ ଆଶ୍ରମରେ କଳ୍ପତରୁ ଉତ୍ସବ (ଜାନୁୟାରୀ ପହିଲା)କୁ ସେ ରାମକୃଷ୍ଣଙ୍କ ଉଦ୍ଦେଶ୍ୟରେ ଭଜନ ଓ କୀର୍ତ୍ତନ ଲେଖୁଥିଲେ । ବଂଶୀଧର ସେ ସବୁ ଗାନ କରୁଥିଲେ । ରାମକୃଷ୍ଣ ପରମହଂସଙ୍କ ଭାଣିଜୀ ଲକ୍ଷ୍ମୀଦେବୀଙ୍କୁ ବଂଶୀଧର ଭକ୍ତି କରୁଥିଲେ । ସେ ପୁରୀ ଆସିବା ସମୟରେ ବଂଶୀଧର ପୁରୀ ଯାଇ ତାଙ୍କପାଇଁ ରୋଷେଇ କରି ଦେଉଥିଲେ । ସେହିଠାରେ ତାଙ୍କର ଗୋପବନ୍ଧୁଙ୍କ ସହିତ ରାଜନୀତିକ ମତବିନିମୟ ହୋଇଥିଲା । ପରେ ସେ ଶ୍ରୀ ଶ୍ରୀ ମା' ଲକ୍ଷ୍ମୀଦେବୀଙ୍କଠାରୁ ଗୁରୁମନ୍ତ୍ର ଗ୍ରହଣ କରି ରାମକୃଷ୍ଣଙ୍କର ଚରଣାଶ୍ରିତ ହୋଇଥିଲେ । କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ ମୃତ୍ୟୁ ପରେ ପ୍ରାୟ ୧୯୮୩ ପର୍ଯ୍ୟନ୍ତ ବଂଶୀଧର କଳ୍ପତରୁ ଉତ୍ସବ ପାଇଁ ସଂଗୀତ ଲେଖୁଥିଲେ ଓ ସେଗୁଡ଼ିକ ଛପାହୋଇ ରାମକୃଷ୍ଣ ଆଶ୍ରମରେ ସମବେତ ଭକ୍ତବୃନ୍ଦଙ୍କୁ ବିତରଣ କରାଯାଉଥିଲା । ଉମାଚରଣ ମହାନ୍ତି ଥିଲେ ତାଙ୍କର ଅନ୍ୟତମ ଶୁଭଚିନ୍ତକ । ସେ କଟକ ଟ୍ରେଡିଂ କମ୍ପାନୀରେ ଚାକିରୀ କରିଥିଲେ ଓ ପରେ କଟକ ପବ୍ଲିଶିଂ ହାଉସ୍ କଲେ । ତାଙ୍କର ଅନ୍ୟତମ ସହଯୋଗୀ ଥିଲେ ବିଶିଷ୍ଟ ଔପନ୍ୟାସିକ ରାମପ୍ରସାଦ ସିଂହ । ସେ 'ଯୁବକ'ର ସହଯୋଗୀ ସମ୍ପାଦକ ଥିଲେ ଓ ପରେ 'ସ୍ୱରାଜ୍ୟ'ର ସମ୍ପାଦକ ହୋଇଥିଲେ । ଏତଦ୍‌ବ୍ୟତୀତ The City Book Deportର ଉଦୟନାଥ ରଥ ଥିଲେ ବଂଶୀଧରଙ୍କର ସମ୍ପର୍କୀୟ । ତେଣୁ କଟକରେ ସେ ନିଜର ସମଧର୍ମୀ ବନ୍ଧୁ ଓ ଶୁଭଚିନ୍ତକମାନଙ୍କୁ ନେଇ ଏକ ସ୍ୱତନ୍ତ୍ର ପରିସର ସୃଷ୍ଟି କରିଥିଲେ, ଯେଉଁଠି ସେ ଉଚ୍ଚ ଚିନ୍ତା କରିପାରୁଥିଲେ ଓ ପରସ୍ପରର ଭାବଧାରା ଆଦାନ ପ୍ରଦାନ କରିପାରୁଥିଲେ ।

୧୯୨୧ ଅସହଯୋଗ ଆନ୍ଦୋଳନ ସମୟରେ ବଂଶୀଧର ପାଠ ଛାଡ଼ିଦେଲେ । ବି.ଏସ୍‌ସି. ପରୀକ୍ଷା ମୁଣ୍ଡ ଉପରେ ଥାଏ । ମାତ୍ର ଦେଶପାଇଁ ସେ ପ୍ରତି ମୁହୂର୍ତ୍ତରେ ଚିନ୍ତା କରୁଥିଲେ, ସାମାନ୍ୟ ଡିଗ୍ରୀ ଲୋଭ ତାଙ୍କୁ ଶ୍ରେଣୀ ଗୃହର ପରିସରରୁ ବୃହତ୍ତର ସାମାଜିକ ପରିସରକୁ ନେଇଆସିଥିଲା । ସେ ଜୀବିକା ନିର୍ବାହ ପାଇଁ ଚୌଧୁରୀ ବଜାରରେ 'ମିଶ୍ର ଷ୍ଟୋର୍' ନାମକ ଏକ ଦୋକାନ ଆରମ୍ଭ କରିଥିଲେ । ଭିଣୋଇ ବ୍ରଜବନ୍ଧୁ ମିଶ୍ର (ଏକମାତ୍ର ଭଉଣୀ ପଦ୍ମାବତୀଙ୍କ ସ୍ୱାମୀ)ଙ୍କ ସାହାଯ୍ୟରେ ଦୋକାନ ହେଲା ସତ; କିନ୍ତୁ ସେ ଦୋକାନ ପାଲଟିଗଲା ସତ୍ୟାଗ୍ରହୀମାନଙ୍କର ଆଶ୍ରୟ ସ୍ଥଳ । ଗିରିଜା ଶଙ୍କର ରାୟଙ୍କ ଘର ପାଖରେ ଏହି ମିଶ୍ର ଷ୍ଟୋର୍ ଅବସ୍ଥିତ ଥିଲା ।

ବଂଶୀଧରଙ୍କ ଏତାଦୃଶ କାର୍ଯ୍ୟକଳାପ ସମ୍ପର୍କରେ ଖଣ୍ଡସାହୀରେ ପିତାମାତା ଯେ ଅବଗତ ନଥିଲେ ତାହା ନୁହେଁ, ମାତ୍ର ସେମାନେ ପୁତ୍ରଙ୍କର ଏତାଦୃଶ ମନୋଭାବର ସମ୍ପୂର୍ଣ୍ଣ ପରିଚୟ ପାଇନଥିଲେ । ଖବରକାଗଜ ବା ଅନ୍ୟାନ୍ୟ ଗଣମାଧ୍ୟମ ଏତେ ପ୍ରଭାବଶାଳୀ ହୋଇପାରି ନଥିଲା । ତେଣୁ ଉଡ଼ାଖବର ଶୁଣି ମଧ୍ୟ ସେମାନେ ବେଶ୍ ବିବ୍ରତ ହୋଇ ପୁଅକୁ ବିବାହ ଦେବା ପାଇଁ ଯତ୍ନଶୀଳ ହୋଇଥିଲେ । ହୁଏତ ଦେଶପ୍ରେମର ପାଗଳାମି ବୋହୂ ମୁହଁକୁ ଚାହିଁଲେ ଦୂର ହୋଇଯାଇପାରେ । ଏହି ବିଶ୍ୱାସ ରଖି ସେମାନେ ବୋହୂ ଖୋଜା ଆରମ୍ଭ କରିଥିଲେ । ଯୁବକ ବଂଶୀଧରଙ୍କର ଜିଦ୍ ଯେ ଦେଶ ସ୍ୱାଧୀନ ହେବାପରେ ସେ ବିବାହ କରିବେ । ଶେଷରେ ବୋଉଙ୍କର କାନ୍ଦ ଓ ନନାଙ୍କର ଜିଦ୍ ଆଗରେ ତାଙ୍କୁ ମୁଣ୍ଡ ନୋଇଁବାକୁ ହେଲା । ୧୯୨୪ରେ ସେ ଜଗତସିଂହପୁର ନିକଟସ୍ଥ କଲରାବାଙ୍କ ଗ୍ରାମର ଯଦୁମଣି ମହାପାତ୍ରଙ୍କ କନ୍ୟା ଶ୍ରୀମତୀ ଦେବୀ ଓରଫ ଶଙ୍ଖାଙ୍କୁ ବିବାହ କଲେ ।

ପୂର୍ବୋକ୍ତ ମିଶ୍ର ଷ୍ଟୋର୍ ଦୋକାନ କରିବା ପାଇଁ ସେ ବହୁଗ୍ରାମର ବନ୍ଧୁ ଅନିଲ ଘୋଷଙ୍କ ବାପାଙ୍କଠାରୁ କିଛି ଟଙ୍କା କରଜ ଆଣିଥିଲେ । କରଜ ଶୁଝିବାର କୌଣସି ଲକ୍ଷଣ ନ ଦେଖି ଅନିଲ ଘୋଷ ତାଙ୍କ ନାମରେ କୋର୍ଟରେ ନାଲିସ୍ କଲେ । ସେହି ଦୋକାନରେ ଡେକ୍‌ଚି ବାସନ ଇତ୍ୟାଦି ବିକ୍ରି କରାହେଉଥିଲା । ଦୋକାନଲବ୍ଧ ଅର୍ଥରେ ବଂଶୀଧର 'ଯୁବକ' ନାମକ ଲିଥୋ ପତ୍ରିକା ବାହାର କରୁଥିଲେ, ଯାହାର ପ୍ରତିଟି ସଂଖ୍ୟା ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ କରି ଦିଆଯାଉଥିଲା । 'ଯୁବକ'ର ଚାରିଟି ସଂଖ୍ୟା ବାହାର କରିବା ଭିତରେ ବଂଶୀଧର ସର୍ବସ୍ୱାନ୍ତ ହୋଇଯାଇଥିଲେ । 'ଯୁବକ' ଖବରକାଗଜର ସମ୍ପାଦକୀୟ ଏତେ ଶକ୍ତଶାଳୀ ଥିଲା ଯେ ତାହା ଯେ କୌଣସି ବ୍ୟକ୍ତିର ରକ୍ତ ତତାଇ ଦେବା ପାଇଁ ସମର୍ଥ ଥିଲା ବୋଲି ବଂଶୀଧର ମିଶ୍ରଙ୍କ ସାନଭାଇ ବିଶିଷ୍ଟ ଆଇନଜୀବୀ ଶ୍ରୀନିବାସ ମିଶ୍ର କହନ୍ତି । ଦୁଃଖର କଥା, ପୁରାତନ ପତ୍ରିକା 'ଯୁବକ'ର ନକଲ ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଅନିଲ ଘୋଷ ନାଲିସ୍ କରି ଦୋକାନ ଜିନିଷ ଉପରେ ଅଧିକାର ସାବ୍ୟସ୍ତ କଲେ । କିଛିଦିନ ବହୁଗ୍ରାମର ଯୋଗେନ୍ଦ୍ର ଆଚାର୍ଯ୍ୟଙ୍କ ଭାଇ ଆସି ସେ ଦୋକାନ ଚଳାଇଲେ । କିନ୍ତୁ ବଂଶୀଧରଙ୍କର ବ୍ୟବସାୟୀ ବୁଦ୍ଧି ନଥିଲା । ତେଣୁ ଦୋକାନ ଭାଙ୍ଗିଗଲା ।

ଶିକ୍ଷାଦାନ ଥିଲା ତାଙ୍କ ଜୀବନର ଏକ ପବିତ୍ର କର୍ତ୍ତବ୍ୟ । କେବେ ଭବିଷ୍ୟତରେ ଶିକ୍ଷକ ଜୀବନ ଅତିବାହିତ କରିବେ ବୋଲି ଏହା ସତେ ଯେପରି ପୂର୍ବ ସୂଚନା ଦେଇଥିଲା । ସେ ବିଶିଷ୍ଟ ଜନନାୟକ ଗୋପବନ୍ଧୁ ଚୌଧୁରୀଙ୍କ କିଶୋର ପୁତ୍ର ମନମୋହନ

ଚୌଧୁରୀଙ୍କର ଗୃହ ଶିକ୍ଷକ ଭାବରେ କିଛିଦିନ କାର୍ଯ୍ୟ କରିଥିଲେ ।[୧] ମନମୋହନ ଚୌଧୁରୀ ଓରଫ ବୁଲୁ ସ୍କୁଲର ପାଠ୍ୟକ୍ରମ ଅନୁସାରେ ପାଠ ପଢୁନଥିଲେ । ତାଙ୍କର ବାପା ଯେଉଁ ପୁସ୍ତକ ପଢ଼ିବା ଦରକାର ତାହା ନିର୍ଣ୍ଣୟ କରୁଥିଲେ ଓ ତାଙ୍କ ପାଇଁ ଗୃହ ଶିକ୍ଷକ ବନ୍ଦୋବସ୍ତ କରିଥିଲେ । ବଂଶୀବାବୁ ତାଙ୍କୁ ଇଂରାଜୀ ପଢ଼ାଉଥିଲେ । ବୟୋଜ୍ୟେଷ୍ଠା ନାରୀନେତ୍ରୀ ଅନ୍ନପୂର୍ଣ୍ଣା ମହାରଣା ସ୍ମୃତି ଚାରଣ କରି କହନ୍ତି, "ଯେତେବେଳେ ମୋତେ ୯/୧୦ ବର୍ଷ ବୟସ । ମୋତେ ଭାଇଙ୍କ ପାଖରେ ବୋଉ ବସାଇ ଦିଏ । ଭାଇ ପାଠ ପଢ଼ନ୍ତି । ମୋର ଯାହା ମନେ ପଡୁଛି ୧୯୨୬ ବା ୨୭ ହେବ । ତାଙ୍କ ଚେହେରା ମନେ ଅଛି । ଗୋରା, ଭଲ ସ୍ୱାସ୍ଥ୍ୟ, ମଧ୍ୟମ ଉଚ୍ଚତାର ମଣିଷ । ହଠାତ୍ ଆମେ ଶୁଣିଲୁ ସିଏ କୁଆଡ଼େ ଚାଲିଗଲେ । ଏକଥା ଢେର୍ ଦିନ କଟକରେ ଆଲୋଚିତ ମଧ୍ୟ ହେଲା ।" ପୁଣି ୧୯୫୨-୫୩ ବେଳକୁ ଅନ୍ନପୂର୍ଣ୍ଣା ମହାରଣା ଖଣ୍ଡସାହୀ ଯାଇଥିଲେ । ବଂଶୀବାବୁ ଫେରି ଆସିଛନ୍ତି ବୋଲି ସେ ଶୁଣିଥିଲେ ମାତ୍ର ବଂଶୀବାବୁ ଆଉ ତତ୍କାଳୀନ ସାମାଜିକ ବ୍ୟବସ୍ଥା ପ୍ରତି ଆଗ୍ରହୀ ଥିବା ଭଳି ତାଙ୍କୁ ଦେଖାଗଲା ନାହିଁ । ସେ ପ୍ରଚାରଠାରୁ ନିଜକୁ ଯଥାସମ୍ଭବ ଦୂରରେ ରଖୁଥିଲେ । ପରେ ଅନ୍ନପୂର୍ଣ୍ଣାଙ୍କର ବଂଶୀବାବୁଙ୍କ ବଡ଼ ଝିଅ କୃଷ୍ଣବଲ୍ଲଭୀଙ୍କ ସହିତ ସମ୍ପର୍କ ଗଢ଼ିଉଠିଥିଲା । ଅନ୍ନପୂର୍ଣ୍ଣା ଆବେଗ ପ୍ରବଣ ହୋଇ କହିଲେ, "ଭାଇ ଥିଲେ ଅନେକ ତଥ୍ୟ ଦେଇଥାଆନ୍ତେ", ତାହାତ ଆଉ ସମ୍ଭବ ନୁହେଁ ।

**ବୈବାହିକ ଜୀବନ :**

ଯଦୁମଣି ମହାପାତ୍ର ସେ ସମୟରେ ଜଙ୍ଗଲ ବିଭାଗର ମୁଷ୍ଟିମେୟ ହାକିମଙ୍କ ମଧ୍ୟରୁ ଅନ୍ୟତମ ଥିଲେ । ତାଙ୍କ ବିବାହର ଚାରିବର୍ଷ ପରେ ଶ୍ରୀମତୀ ଦେବୀଙ୍କ ଜନ୍ମ ହୋଇଥିଲା । ତେଣୁ ବାଲ୍ୟକାଳରୁ ଶ୍ରୀମତୀ ଦେବୀ ବେଶ୍ ଆଦର ଯତ୍ନରେ ବଢ଼ିଥିଲେ । ବଂଶୀଧର ୨୩ ବର୍ଷ ବୟସରେ ୧୨ ବର୍ଷୀୟା କିଶୋରୀ ଶ୍ରୀମତୀଙ୍କ ପାଣିଗ୍ରହଣ କଲେ । "ଯୌତୁକ ଯଦି ନ ଆଣିବ ତେବେ ମୁଁ ବେଦୀରେ ବସିବି", ଏହା ଥିଲା ସେତେବେଳର ଯୁବକଙ୍କ ଦୃଢ଼ ଉକ୍ତି । ଯଦୁମଣି କିନ୍ତୁ ୧୦ ଟଙ୍କା ଲୁଚାଇ କରି ସମୁଦୀ ଗଙ୍ଗାଧର ମିଶ୍ରଙ୍କୁ ଯୌତୁକ ବାବଦରେ ଅର୍ପଣ କରିଥିଲେ । ଯାହା ଜାଣି ପରବର୍ତ୍ତୀ କାଳରେ ବଂଶୀଧର ବାରମ୍ବାର କ୍ଷୋଭରେ ଜନନୀଙ୍କୁ କହୁଥିଲେ—"ତୋର କ'ଣ ଅଭାବ ଥିଲା ଯେ ମୋତେ ୧୦ ଟଙ୍କାରେ ବିକ୍ରି କରିଦେଲୁ ।" ଶ୍ରୀମତୀ ଦେବୀଙ୍କ ଉକ୍ତି ଅନୁସାରେ ବଂଶୀଧର ହାତକଟା ସୂତାରେ ପଇତା ପିନ୍ଧୁଥିଲେ । ଜମିଦାର ଘର ହେଲେ ମଧ୍ୟ ସମୁଦାୟ ଛଅଟି

୧ । କସ୍ତୁରୀ ମୃଗସମ—ମନମୋହନ ଚୌଧୁରୀ, ପୃଷ୍ଠା-୩୮ ।

ସୁନା କଣ୍ଠି ଗୋଟିଏ କଳା ସୂତାରେ ଗୁନ୍ଥି ବୋହୂପାଇଁ ନେଇଥିଲେ । ଶ୍ରୀମତୀ ଦେବୀ ମଧ୍ୟ ନିଜର ଏକମାତ୍ର ନଣନ୍ଦ ପଦ୍ମାବତୀ (ମୁକ୍ତାର ବ୍ରଜବନ୍ଧୁ ମିଶ୍ରଙ୍କର ପତ୍ନୀ)ଙ୍କ ପାଇଁ ରୂପାର ବଡ଼ ମୁଦିଟିଏ ଆଣିଥିଲେ । ସେହି ମୁଦିଟିକୁ ପଦ୍ମାବତୀ ବଡ଼ ଆନନ୍ଦରେ "ଭାଉଜ ଏତେ ଭଲ ମୁଦି ଆଣିଛି" ବୋଲି ସମସ୍ତଙ୍କୁ ଦେଖାଉଥିଲେ । (ଉକ୍ତ ଯୌତୁକ ବ୍ୟାଧି ଯେ ଖୁବ୍ ବେଶିଦିନର ନୁହେଁ, ଏହା ଏହି ଘଟଣାରୁ ସୂଚିତ ହୋଇଥାଏ) ।

ଘରଯୋଗ୍ୟା ହୋଇ ଶ୍ରମତୀ ଶ୍ୱଶୁରାଳୟକୁ ଆସିବା ପୂର୍ବରୁ ପିତା ଯଦୁମଣିଙ୍କ ଦେହାନ୍ତ ହୋଇଥିଲା । ତେଣୁ ଶ୍ରୀମତୀଙ୍କ ମାମୁ ତାଙ୍କର ଭାର ସଜ କରିଥିଲେ । କିନ୍ତୁ ସଂଗ୍ରାମୀ ବଂଶୀଧରଙ୍କ ସହିତ ଯାହାର ଜୀବନ ଯୁକ୍ତ ହୋଇଛି, ସେ ଭାରଥୋର ତା'ର ଦରକାରରେ ଆସିଥାନ୍ତା ଅବା । ବଂଶୀଧରଙ୍କ ମୁଣ୍ଡରେ ବିଦେଶୀ ବସ୍ତ୍ର ବର୍ଜନର ଯେଉଁ ଚିନ୍ତା ପଶିଥିଲା, ସେଥିପାଇଁ ସେ ନିଜ ପରିବାରରେ ମଧ୍ୟ ତା'ର ପ୍ରୟୋଗ କରିଥିଲେ । ଅନ୍ୟମାନଙ୍କର ବିଦେଶୀ ବସ୍ତ୍ର ମାଗିଆଣି ରାସ୍ତା ମଝିରେ ଏକାଠି କରି ନିଆଁ ଲଗାଇବା ହୁଏତ ସହଜ; ମାତ୍ର ନବବିବାହିତା ପତ୍ନୀର ପାଟ ଶାଢ଼ିଗୁଡ଼ିକ ଏକାଠି କାରି ନିଆଁ ଲଗାଇଦେବା କଥାଟି ଆଜି ଚିନ୍ତା କରାଯାଇ ପାରିବ ନାହିଁ । ବଂଶୀଧର ନିଜ ଜନନୀ ଓ ପତ୍ନୀଙ୍କର ସବୁ ଶାଢ଼ି ଏକାଠି କରି ନିଆଁ ଲଗାଇ ଦେଇଥିଲେ । ତା'ପରେ ଦୁଇଖଣ୍ଡି ଖଦୀଲୁଗା ଆଣି ଶ୍ରୀମତୀଙ୍କୁ ପିନ୍ଧିବାକୁ ଦେଇଥିଲେ । ହାତରେ ବୁଣାହୋଇଥିବା ସେ ଶାଢ଼ି ଛୋଟ ଥିଲା, ଯାହା ତାଙ୍କ କାନ୍ଧକୁ ମଧ୍ୟ ପାଉନଥିଲା । ଏତେ ମୋଟା ଯେ ବର୍ଷାଦିନେ ଶୁଖିବା କଷ୍ଟକର ହେଉଥିଲା । ଅନେକ ଦିନ ଯାଏ ଶ୍ରୀମତୀ ଅଧା ଶାଢ଼ି ପିନ୍ଧି ବାକି ଅଧା ଶାଢ଼ି ଢିଙ୍କିଶାଳରେ ବାନ୍ଧି ଶୁଖାଉଥିଲେ । ବୋଉଙ୍କର ବହୁତ ନିବେଦନ ସତ୍ତ୍ୱେ ସେ ସ୍ତ୍ରୀଙ୍କ ପାଇଁ ଆଉ ଖଣ୍ଡିଏ ଶାଢ଼ି କିଣିଦେଇ ନଥିଲେ । "ଯାହାର ଦୁଇଖଣ୍ଡ ଶାଢ଼ି ମଧ୍ୟ ନାହିଁ ସେମିତି ଲୋକଙ୍କ ସଂଖ୍ୟା ଏ ଦେଶରେ ଅଧିକ, ଏହା ତୋ ବୋହୂକୁ ବୁଝାଇ ଦେବୁ ।" ଏହା ଥିଲା ସେ ସମୟର ଦେଶସେବୀ ବଂଶୀଧରଙ୍କର ନବବିବାହିତା ପତ୍ନୀଙ୍କ ପ୍ରତି ପ୍ରେମ ସମ୍ଭାଷଣ ।

ଶ୍ରୀମତୀ କିନ୍ତୁ ପ୍ରତିବାଦ କରିନଥିଲେ । ଦେଶପାଇଁ ପରିବାରକୁ ଭୁଲିଯାଇଥିବା ସେହି ବୈରାଗୀତୁଲ୍ୟ ମଣିଷଟିକୁ ନିଜ ପାଖରେ ପାଇବା ପାଇଁ ସେ ଅଗ୍ନି ପରୀକ୍ଷା ଦେଇଥିଲେ ଯୁଗ୍ମ ଜୀବନର ପ୍ରାଥମିକ ପର୍ଯ୍ୟାୟରେ । ସତେ ଯେପରି ଭୂମିକନ୍ୟା ସୀତା ସମଗ୍ର ଜୀବନ ନିଷ୍ପାପର ଭାବରେ କଟାଇ ପରିଣତ ବୟସରେ ଅଗ୍ନି ପରୀକ୍ଷା ଦେବାପଇଁ ମାନସିକ ପ୍ରସ୍ତୁତି କରୁଥିଲେ । ଶ୍ରୀମତୀଙ୍କର ଗୋଟିଏ ସାନଭାଇ ତାଙ୍କଠାରୁ ପ୍ରାୟ ୬/୭ ବର୍ଷ ସାନ ଥିଲେ । ତାଙ୍କ ନାମ ଥିଲା ଦେବ ମହାପାତ୍ର । ଶ୍ରୀମତୀଙ୍କ ବିବାହ ପରେ

ଯଦୁମଣିଙ୍କର ଆଉ ଗୋଟିଏ ସନ୍ତାନ ଭୂମିଷ୍ଠ ହୋଇଥିଲା କିନ୍ତୁ ଅଳ୍ପଦିନ ପରେ ତା'ର ମୃତ୍ୟୁ ହୋଇଥିଲା। ଶ୍ରୀମତୀଙ୍କ ମାମୁ ଜମିଦାର ଘରକୁ ଝିଅ ଦେଇଛନ୍ତି ବୋଲି ଭାର ଜିନିଷ ସବୁ ବେଶ୍ ସନ୍ତର୍ପଣରେ ସଜାଡ଼ିଥିଲେ। ଜମିଦାରୀର ବିଲୟ କାଳରେ ମଧ ଖଣ୍ଡସାହୀର ଗଙ୍ଗାଧର ମିଶ୍ରଙ୍କ ଘରୁ ଜମିଦାରୀ ଢଙ୍ଗ ଲୋପ ପାଇ ନଥିଲା। ସୁନିଆଁରେ ରଇତମାନେ ଭେଟି ଆଣୁଥିଲେ ଓ ପ୍ରାୟ ପାଞ୍ଚଶହ ଲୋକ ସେଦିନ ତାଙ୍କ ଘରେ ଖାଇଥିଲେ। ବୋହୂ ଭାବରେ ଶ୍ରୀମତୀ ମିଶ୍ରଘରେ ଗୃହୀତ ହୋଇଗଲେ ଓ ଏକାନ୍ନବର୍ତ୍ତୀ ପରିବାରରେ ଚଳିବା ପାଇଁ ମାନସିକ ପ୍ରସ୍ତୁତି କଲେ।

୧୯୨୭ରେ ଶ୍ରୀମତୀ ଦେବୀ ବୋହୂ ହୋଇ ଆସିଲେ। ୧୯୨୮ରେ ତାଙ୍କର ପ୍ରଥମ କନ୍ୟା ସନ୍ତାନ ଜନ୍ମ ହେଲା। ତା'ର ନାମ ଦିଆଗଲା କୃଷ୍ଣବଲ୍ଲଭୀ। ସେହି ୧୯୨୮ ଭାରତ ଇତିହାସରେ କେତେ ସ୍ୱତନ୍ତ୍ର ତାହା ତ ଗବେଷଣାର ବିଷୟ; କିନ୍ତୁ ୧୯୨୮ରେ ବଦଳିଗଲା ଗଙ୍ଗାଧର ମିଶ୍ରଙ୍କ ପରିବାରର ଇତିହାସ। ତାଙ୍କ ଘରର ସବୁ ଆନନ୍ଦ ଲୁଟି ହୋଇଗଲା। ସେତେବେଳକୁ ବଂଶୀଧରଙ୍କ ନାମରେ ଏକାଧିକ ୱାରେଣ୍ଟ ବୁଲୁଥାଏ। ଦେଶଦ୍ରୋହର ଅପରାଧ ତାଙ୍କର। ସେ କଟକ କଲେକ୍ଟରେଟ୍ ଉପରେ ଉଡୁଥିବା ୟୁନିୟନ ଜ୍ୟାକ୍ ପତାକା ଆଣି ପୋଡ଼ି ଦେଇଥିଲେ। ତେଣୁ ପୋଲିସ୍ ବାରମ୍ବାର ତାଙ୍କ ରହିବା ଜାଗା ଅନୁସନ୍ଧାନ କରୁଥିଲେ। ଏହି ସମୟରେ ଏହିଭଳି ଏକାଧିକ ହିଂସାତ୍ମକ ଘଟଣା ଘଟିଥିଲା। ୧୯୨୧ ଏପ୍ରିଲ ୮ ତାରିଖରେ କଟକ ଏଜୁକେସନାଲ୍ ଇନ୍ସପେକ୍ଟରର ଅଫିସ୍ ଏବଂ ଏପ୍ରିଲ ୧୪ ତାରିଖରେ ରେଭେନ୍ସା କଲେଜ ପ୍ରିନ୍ସପାଲଙ୍କ ଅଫିସ୍ ପୋଡ଼ିବାର ଉଦ୍ୟମ ହୋଇଥିଲା। ପୂର୍ବରୁ ୧୯-୦୨-୨୬ ତାରିଖରେ ଢେଙ୍କାନାଳର ଏକ ଛାତ୍ର ମେସ୍ ବିକ୍ଷୁବ୍ଧ ଛାତ୍ରମାନେ ପୋଡ଼ି ଦେଇଥିଲେ। ୧୯୨୧ ମାର୍ଚ୍ଚ ୨୦ ତାରିଖରେ ଆଠଗଡ଼ ଛାତ୍ରାବାସ ଓ ଢେଙ୍କାନାଳ ଶିକ୍ଷକ ହଷ୍ଟେଲରେ ଅଗ୍ନି ସଂଯୋଗ କରାଯାଇଥିଲା। ଖୋର୍ଦ୍ଧାର ହିନ୍ଦୁ କ୍ଲବ୍ ହଷ୍ଟେଲ୍ ଓ ମହମ୍ମଡିଆନ୍ ହଷ୍ଟେଲ୍କୁ ମଧ ପୋଡ଼ି ଦିଆଯାଇଥିଲା। ବିଦେଶୀ ପାଠ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିବା ଛାତ୍ରମାନେ ବ୍ରିଟିଶ ପକ୍ଷପାତୀ ଶିକ୍ଷକମାନଙ୍କ ବାସଗୃହରେ ମଧ ନିଆଁ ଲଗାଇ ଦେଇଥିଲେ। (ସ୍ୱାଧୀନତା ସଂଗ୍ରାମର ଇତିହାସ, ପୃଷ୍ଠା-୭୯) ବଂଶୀଧର ହୁଏତ ଏହିଭଳି ଏକାଧିକ ଘଟଣାରେ ସଂପୃକ୍ତ ଥିଲେ। ତେଣୁ ତାଙ୍କ ନାମରେ ୱାରେଣ୍ଟ ଥିଲା। ସମସ୍ତଙ୍କ ସତର୍କ ଦୃଷ୍ଟି ଏଡ଼ାଇ ବଂଶୀଧର ଘର ଛାଡ଼ିଲେ। ପଛରେ ଛାଡ଼ିଗଲେ ପ୍ରାୟ ଚାରିମାସର ଶିଶୁକନ୍ୟା ଓ ଷୋଡ଼ଶୀ ସୁନ୍ଦରୀ ପତ୍ନୀ ଶ୍ରୀମତୀ ଦେବୀଙ୍କୁ।

**ନିର୍ଭୟ ନିଳୟ :**

୧୯୨୫ରୁ ୨୭ ସମୟ ଭିତରେ ରାଇଶୁଙ୍ଗୁଡ଼ାରେ ଏକ ଆଶ୍ରମ ସ୍ଥାପିତ ହୋଇଥିଲା, ତାହାର ନାମ ଥିଲା 'ନିର୍ଭୟ ନିଳୟ' । ଏହି 'ନିର୍ଭୟ ନିଳୟ'ର ନାମକରଣ କରିଥିଲେ ବଂଶୀଧର । ତାଙ୍କର ଅନ୍ୟାନ୍ୟ ସହଯୋଗୀ ଥିଲେ ଅନିଲ ଘୋଷ, ଯୋଗେନ୍ଦ୍ର ଆଚାର୍ଯ୍ୟ, ରାମପ୍ରସାଦ ସିଂହ, ବ୍ରହ୍ମାନନ୍ଦ ଶତପଥୀ, ଉମାକାନ୍ତ ମହାନ୍ତି, ଶରତ ପଟ୍ଟନାୟକ ପ୍ରଭୃତି । ସେଠାରେ ଯୁବକମାନେ ଦେଶପ୍ରେମର ପାଠ ଶିଖୁଥିଲେ । ସୂତାକଟା, ଲୁଗାବୁଣା ସହିତ ରାମଧୁନ, ଧର୍ମୀୟ ଉଦାରତା ତଥା ସାମ୍ପ୍ରଦାୟିକ ସଦ୍ଭାବର ପାଠ ପଢୁଥିଲେ । ବଂଶୀଧର ସେମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ । ତେଣେ ପରିବାରର ଦାୟିତ୍ୱ, ନବପରିଣୀତା ବଧୂ ପାଇଁ ଭାବପ୍ରବଣତା ତାଙ୍କୁ ବାନ୍ଧି ରଖିପାରୁ ନ ଥିଲା । ସେ ନିଜ ସ୍ୱପ୍ନର ଭାରତ ସନ୍ଧାନ କରିବା ପାଇଁ 'ନିର୍ଭୟ ନିଳୟ'ର ପରିସରକୁ ସେ ଛୁଟି ଯାଉଥିଲେ । ସେ ଅଞ୍ଚଳରେ 'ନିର୍ଭୟ ନିଳୟ' ଓ ତା'ର ଅନ୍ତେବାସୀମାନଙ୍କ ପାଇଁ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ଭ୍ରମ ଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ରାଇସୁଙ୍ଗୁଡ଼ାର ସେ ସ୍ଥାନ 'ଆଶ୍ରମ ବାଡ଼ି' ବା 'ଆଶ୍ରମ ପଡ଼ିଆ' ଭାବରେ ଲୋକମୁଖରେ କଥିତ ହେଉଛି । ବ୍ରହ୍ମାନନ୍ଦ ଶତପଥୀଙ୍କ ବଂଶଧରମାନେ ସେଠାରେ ଏଭଳି ଏକ ଆଶ୍ରମ ଥିଲା ବୋଲି କହନ୍ତି; ମାତ୍ର ତା'ର ନାମ 'ନିର୍ଭୟ ନିଳୟ' ଥିଲା ବୋଲି ଜାଣିପାରୁ ନାହାନ୍ତି । ବ୍ରହ୍ମାନନ୍ଦ ଶତପଥୀଙ୍କ ପୁତୁରା ସୋମନାଥ ଶତପଥୀ ଉଭୟ ଥିଲେ ପ୍ରାୟ ସମବୟସ୍କ । ବ୍ରହ୍ମାନନ୍ଦ ରେଭେନ୍‌ସା କଲେଜରେ ଆଇ.ଏସ୍‌ସି. ପଢୁଥିବା ବେଳେ ସୋମନାଥ ଓରଫ ସୁନାବାବୁ ୮ମ ଶ୍ରେଣୀରେ ପଢୁଥିଲେ । ପ୍ରାୟ ୧୯୨୩ରୁ ୧୯୨୮ ଭିତରେ କୁସୁମୀ ନିକଟରେ ଏକ ଆଶ୍ରମ ଗଢ଼ିଉଠିଥିଲା । 'ନିର୍ଭୟ ନିଳୟ' ଆଶ୍ରମ ସହିତ ଅସ୍ପୃଶ୍ୟ ହରିଜନ ପିଲାଙ୍କୁ ଶିକ୍ଷା ଦେବାପାଇଁ ସେ ଗଢ଼ିଥିଲେ 'ଗଣପତି ବିଦ୍ୟାଳୟ' । ସେଠାରେ ପ୍ରତିଦିନ ସକାଳୁ ପିଲାଙ୍କୁ ମୁଢ଼ି ଖାଇବାକୁ ଦିଆଯାଉଥିଲା । ଅକ୍ଷର ଶିକ୍ଷା ସହିତ ହିସାବପତ୍ର ରଖିବା ଭଳି ଗଣିତ (ଯାହା ଦୈନନ୍ଦିନ ଜୀବନ ପାଇଁ ନିହାତି ଆବଶ୍ୟକ) ମଧ୍ୟ ସେମାନଙ୍କୁ ଶିକ୍ଷା ଦିଆଯାଉଥିଲା । ଏଥିସହିତ ସେମାନଙ୍କ ସ୍ୱାସ୍ଥ୍ୟର ଯତ୍ନ ନେବାକୁ ବଂଶୀଧର ହୋମିଓପାଥିକ ବହି ପଢ଼ି ପ୍ରତିଦିନ ସଂଧ୍ୟାରେ ହୋମିଓପ୍ୟାଥିକ ବାକ୍ସ ଧରି ବୁଲୁଥିଲେ । ୧୯୨୬/୨୭ ମସିହାରେ ବୈତରଣୀରେ ପ୍ରବଳ ବନ୍ୟା ହୋଇଥିଲା । ଏହି ସମୟରେ କୌଣସି କାମରେ ବଂଶୀଧର ଖଣ୍ଡସାହୀ ଆସିଥିବା ବେଳେ ଗୋପବନ୍ଧୁ ଓ ଆଣ୍ଟୁଜ ସାହେବ ତାଙ୍କୁ ନିର୍ଭୟ ନିଳୟରେ ଖୋଜି ନ ପାଇ ତାଙ୍କ ଗାଁକୁ ଆସିଥିଲେ । ସେଦିନ ରାତିରେ ସେମାନେ ଖଣ୍ଡସାହୀ ଗାଁର ସ୍କୁଲ ଘରେ ଅତିଥି ଭାବରେ ରହିଥିଲେ ଓ ବଂଶୀଧରଙ୍କ ପ୍ରଦତ୍ତ ଚୂଡ଼ା, ନଡ଼ିଆ ଖାଇଥିଲେ ।

ଏହି ଦିନମାନଙ୍କରେ ଆଣ୍ଡ୍ରୁଜ ସାହେବ ରମାଦେବୀଙ୍କ ବାସସ୍ଥାନ କଟକରେ ରହୁଥିଲେ ବୋଲି ମନମୋହନ ଚୌଧୁରୀ ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

**ରାଜନୀତିକ ଜୀବନ :**

ଯୁବକ ବଂଶୀଧର ସେ ସମୟରେ ଅନ୍ୟାନ୍ୟ ଭାରତୀୟ ଯୁବକମାନଙ୍କ ଭଳି ସ୍ୱରାଜ୍ୟର ସ୍ୱପ୍ନ ଦେଖୁଥିଲେ । ସେ ସ୍ୱପ୍ନର ମହାନାୟକ ଥିଲେ ଯୁଗମାନବ ମହାତ୍ମା ଗାନ୍ଧି । ବଂଶୀଧର ସ୍କୁଲରେ ପାଠ ପଢ଼ିବା ଦିନଠାରୁ Young India ପଢୁଥିଲେ । ତହିଁରେ ଗାନ୍ଧିଜୀଙ୍କ ରଚନାମାନ ମୁଦ୍ରିତ ହେଉଥିଲା, ଯାହା ଖୁବ୍ ପ୍ରଭାବଶାଳୀ ଥିଲା । ୧୯୨୧ରେ ବଂଶୀଧରଙ୍କୁ ପୁରୀରେ ଗାନ୍ଧିଜୀଙ୍କୁ ଦେଖିବାର ସୁଯୋଗ ମିଳିଥିଲା । ସେତେବେଳେ ଗାନ୍ଧିଜୀ ଅବିସମ୍ବାଦିତ ଜନନେତା । ତାଙ୍କ ସହିତ ଅଳ୍ପ କେତେ ମିନିଟ କଥା କହିବାର ସୁଯୋଗ ପାଇ ବଂଶୀଧର କୃତକୃତ୍ୟ ହୋଇଥିଲେ । ପିଲାଦିନରୁ ରାମକୃଷ୍ଣ ତଥା ବିବେକାନନ୍ଦଙ୍କ ବାଣୀ ଓ ରଚନା ଦ୍ୱାରା ପ୍ରଭାବିତ ବଂଶୀଧର ଗାନ୍ଧିଜୀଙ୍କ ସହିତ ବାର୍ତ୍ତାଳାପ ପରେ ଜାଣିପାରିଲେ ଯେ ସମସ୍ତେ ଭିନ୍ନ ଭାବରେ ସେହି ସ୍ୱାଧୀନତା ପାଇଁ ନିଜ ନିଜର କର୍ତ୍ତବ୍ୟ ହିଁ ରଖିଛନ୍ତି । ଏପରିକି ଶ୍ରୀ ଅରବିନ୍ଦଙ୍କର ଦର୍ଶନ ଭିତରେ ସେ ଆଧ୍ୟାତ୍ମିକତା ସହିତ ଦେଶପ୍ରେମର ସମନ୍ୱୟ ଦେଖି ଚମତ୍କୃତ ହୋଇଥିଲେ । ନାସ୍ତିକ ଯୁକ୍ତିବାଦୀ ନରେନ୍ଦ୍ର ଓରଫ ନରେନ୍ ଯେଉଁଦିନ ଦକ୍ଷିଣେଶ୍ୱରର ନିରକ୍ଷର ପୂଜକ ବ୍ରାହ୍ମଣ ରାମକୃଷ୍ଣଙ୍କୁ ଗୁରୁ ବୋଲି ମାନିଲେ, ସେହିଦିନଠାରୁ ଯେ ଭାରତୀୟ ଆଧ୍ୟାତ୍ମିକତାର ବିଜୟ ହୋଇଛି, ଏକଥା ତାଙ୍କୁ ଅଭିଭୂତ କରିଥିଲା । ବିବେକାନନ୍ଦଙ୍କର ଚିକାଗୋ ଭାଷଣ ମଧ୍ୟ ଯୁବକ ବଂଶୀଧରଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ତେଣୁ ତାଙ୍କର ରାଜନୀତି ସଂସର୍ଗ ଭିତରେ ଏହି ମୂଲ୍ୟବୋଧ ସଚେତନତା ହିଁ କ୍ରିୟାଶୀଳ ଥିଲା, ଯାହା ତାଙ୍କୁ ଏତେ ଦୃଢ଼ମନା କରିପାରିଥିଲା ।

**କଂଗ୍ରେସ ସହିତ ସଂପୃକ୍ତି :**

ସେ ସମୟରେ ରାଜନୀତିକ ଜୀବନ କହିଲେ—ଭୋଟ ପ୍ରଚାର ବା ମନ୍ତ୍ରୀ ହେବାକୁ ବୁଝାଉ ନଥିଲା । ମୃତକଳ୍ପ ସମାଜ ଜୀବନରେ ତରଙ୍ଗ ସୃଷ୍ଟି କରି ସେମାନଙ୍କୁ ଜାତୀୟ ଜୀବନ ସହିତ ପରିଚିତ କରାଇବା ଏବଂ ସେମାନଙ୍କୁ ସ୍ୱାଧୀନତାର ଅର୍ଥ ବୁଝାଇବା ଥିଲା ରାଜନୀତିର ଉଜ୍ଜ୍ୱଳ ଦିଗ । ବଂଶୀଧର ପାଠ ଛାଡ଼ି ସମାଜ କ୍ଷେତ୍ରକୁ ଓହ୍ଲାଇଥିଲେ । 'ନିର୍ଭୟ ନିଳୟ' ଗଢ଼ି ସମାଜ ସେବା କାର୍ଯ୍ୟକୁ ସଙ୍ଗଠିତ କରିଥିଲେ । 'ଯୁବକ' ସମ୍ପାଦନା କରି ନିଜର ସାମର୍ଥ୍ୟର ପରିଚୟ ଦେଇଥିଲେ । 'ଯୁବକ' ଥିଲା ଯୁବକଂଗ୍ରେସର ପ୍ରଥମ

ମୁଖପତ୍ର । ୧୯୨୪ରେ ଗୋପବନ୍ଧୁଙ୍କ ସମ୍ମତି କ୍ରମେ ବଂଶୀଧର ଜାତୀୟ କଂଗ୍ରେସର ପ୍ରାଦେଶିକ କମିଟିର ସକ୍ରିୟ ସଭ୍ୟ ଭାବରେ ଯୋଗଦେଲେ । ୧୯୨୮ରେ ଗୋପବନ୍ଧୁଙ୍କର ଦେହାନ୍ତ ହୋଇଥିଲା । ଏହା ବଂଶୀଧରଙ୍କ ଭଳି ଅନେକ ଦେଶପ୍ରେମୀ ଯୁବକଙ୍କୁ ମ୍ରିୟମାଣ କରିଥିଲା ।

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ୰ସୁରେନ୍ଦ୍ର ନାଥ ଦ୍ୱିବେଦୀ ତାଙ୍କର ବାଲ୍ୟ ଜୀବନର ସ୍ମୃତି ଚାରଣ କରି କହନ୍ତି, "ଗୋପବନ୍ଧୁଙ୍କ ମୃତ୍ୟୁ ସମୟକୁ ଆମେ ସବୁ ପିଲା । ବଂଶୀ ଭାଇନା ଖୋଳ କରତାଳ ଧରି 'ହେ ଗୋପବନ୍ଧୁ ହେ ଦୀନବନ୍ଧୁ' ଭଳି ଗୀତ ଗାଇ ଗାଇ ଗାଁ ସାରା ବୁଲନ୍ତି । ଆମେ ତାଙ୍କ ପଛରେ ବୁଲୁ ।" ଗୋପବନ୍ଧୁଙ୍କ ମୃତ୍ୟୁରେ ସତେ ଯେପରି ମୂଲ୍ୟବୋଧର ଅପମୃତ୍ୟୁ ଘଟିଥିଲା । ଗୋପବନ୍ଧୁଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଥିବା ଯୁବକମାନେ ନିଜ ନିଜ ଚିନ୍ତାର ବଳୟରୁ ଛିଟିକି ପଡ଼ିଥିଲେ ।

୧୯୨୫ରୁ ୧୯୨୮ ଯାଏ ବଂଶୀଧର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସାଧାରଣ ସଂପାଦକ ଥିଲେ । ୧୯୨୮ରେ କଲିକତାରେ ଅନୁଷ୍ଠିତ କଗ୍ରେସର ଜାତୀୟ ଅଧିବେଶନକୁ ପ୍ରାୟ ୪୦ କର୍ମୀଙ୍କୁ ନେଇ ବଂଶୀଧର ଯାଇଥିଲେ । ସେଠାରେ ଓଡ଼ିଶାର କର୍ମୀମାନଙ୍କର ଉତ୍ସାହହୀନତା ତଥା ବିଶ୍ୱାସର ଅଭାବ ତାଙ୍କୁ କ୍ଷୁବ୍ଧ କରିଥିଲା । ଚଟ୍ଟଗ୍ରାମର ବିପ୍ଲବୀ ସୂର୍ଯ୍ୟ ସେନଙ୍କର ଆତ୍ମବିଶ୍ୱାସ ଓ ଉଦ୍ଦୀପନା ଦେଖି ଅଭିଭୂତ ହୋଇଥିଲେ । କଂଗ୍ରେସ ସେତେବେଳେ ମହାନ୍ ସ୍ୱାଧୀନତା ସଂଗ୍ରାମର ଏକମାତ୍ର ମୁଖପାତ୍ର । ରାଜନୀତିକ ସଂଗଠନ ଭାବରେ ନୁହେଁ ବରଂ ମୁକ୍ତି ସଂଗ୍ରାମର ପ୍ରତିନିଧି ଭାବରେ ଏହା ଭାରତୀୟ ଜନମାନସକୁ ପ୍ରଭାବିତ କରିଥିଲା । ଗୋପବନ୍ଧୁ ଓଡ଼ିଶାରେ ଜାତୀୟ କଂଗ୍ରେସର ଭାବଧାରାକୁ ପ୍ରୋତ୍ସାହନ ଦେଇଥିଲେ । ଏହା ସାଧାରଣତଃ ଦୁଇ ଭାଗରେ ଗୃହୀତ ହୋଇଥିଲା । ପ୍ରଥମେ ସ୍ୱାଧୀନତା ପ୍ରାପ୍ତି ପାଇଁ ଅହିଂସ ସଂଗ୍ରାମ ଓ ଦ୍ୱିତୀୟରେ ସ୍ୱାଧୀନତା ପରର ଦାୟିତ୍ୱ ନିର୍ବାହ ପାଇଁ ସାଂଗଠନିକ ଶକ୍ତି ବୃଦ୍ଧି । ତେଣୁ କଂଗ୍ରେସରେ ଯୋଗଦେବା ସେ ସମୟରେ ବେଶ୍ ଉତ୍ସାହଜନକ ଥିଲା ।

ବଂଶୀଧର ରାଜନୀତି ପାଇଁ ପାଠ ଛାଡ଼ିଲେ । ସେତେବେଳେ କଂଗ୍ରେସକୁ ଯେଉଁ ଶ୍ରଦ୍ଧା ଓ ସମ୍ମାନ ମିଳୁଥିଲା, ତାହା ଯୁବକ ବଂଶୀଧରଙ୍କୁ ଖଣ୍ଡସାହୀ ଗ୍ରାମର ଅବିସମ୍ବାଦିତ ନାୟକ ସଜାଇ ଦେଲା । ଗ୍ରାମରେ ତାଙ୍କର ଭୂରି ଭୂରି ପ୍ରଶଂସା ହେଲା । ସମସ୍ତେ ତାଙ୍କୁ ଖାଇବାକୁ ଡାକି ଏତାଦୃଶ ଦୃଷ୍ଟିଭଙ୍ଗୀ ପାଇଁ ତାଙ୍କୁ ସାବାସ୍ ଦେଲେ । ଏ ଭିତରେ କିନ୍ତୁ ତାଙ୍କର ଆନ୍ଦୋଳନ ଅବ୍ୟାହତ ରହିଥିଲା । ସରକାର ବିରୋଧୀ କାଗଜପତ୍ର କାଳେ ଖଣ୍ଡସାହୀରେ ତାଙ୍କ ପୈତୃକ ବାସଭବନରେ ଥିବ ବୋଲି ଭାବି ବାରମ୍ବାର ପୋଲିସ୍

ତାଙ୍କ ଘର ଉପରେ ଚଢ଼ାଉ କରୁଥିଲେ । ଜନନୀ ଦ୍ୱିତୀୟା ଦେବୀ ବ୍ୟାକୁଳ ହୋଇ ତାଙ୍କ କାଗଜପତ୍ର ସବୁ ମାଠିଆରେ ରଖି ମାଠିଆ ମୁହଁ ନଡ଼ିଆ ସଢ଼େଇରେ ବନ୍ଦ କରି ମାଟିଲେସି ଦେଉଥିଲେ । ଗ୍ରାମରେ ଲୋକମାନେ ମୁଗ, ବିରି ଇତ୍ୟାଦି ରବିଫସଲ ଏହିଭଳି ଭାବରେ ବିହନ ରଖୁଥା'ନ୍ତି । ତେଣୁ ପୋଲିସ୍‌ଙ୍କ ପ୍ରଶ୍ନର ଉତ୍ତରରେ 'ବିହନ ଅଛି' କହି ସେ ନିଜ ପୁଅକୁ ବିଦେଶୀ ପୋଲିସ୍‌ର ଲାଠି ଓ ବୁଟ୍ ମାଡ଼ରୁ ବଞ୍ଚାଇବାର ପ୍ରୟାସ କରିଥିଲେ । ବେଳେ ବେଳେ ଅଧିକ କାଗଜପତ୍ର ବସ୍ତାରେ ଭର୍ତ୍ତିକରି ତାଙ୍କ ଘରେ କାମ କରୁଥିବା ଲୋକଙ୍କ ଆଟୁ ବା ସଘା ଉପରେ ରଖିବାକୁ ଦେଇ ଦେଉଥିଲେ । କାରଣ ସେମାନଙ୍କ ଘର ପୋଲିସ୍ ଖାନତଲାସ କରିବ ନାହିଁ ।

ଏଣେ କଟକରେ କିନ୍ତୁ ହାତଚଲା ଲିଥୋ ମେସିନ୍‌ରେ ଲିଫ୍‌ଲେଟ୍‌ମାନ ତିଆରି ହେଉଥିଲା ଓ ଜୀବନ ବିପନ୍ନ କରି ବଂଶୀଧର ତଥା ତାଙ୍କର ବନ୍ଧୁମାନେ ତାହା ବାଣ୍ଟୁଥିଲେ । ପୋଲିସ୍ ଚଢ଼ାଉ ଭୟରେ କେବେ ସେ ମେସିନ୍ କେଉଁ ଭଙ୍ଗା କୂଅ ଭିତରେ ତ କେବେ କେଉଁ ଖତଗଦାରେ ଲୁଚାଇ ରଖାଯାଉଥିଲା ।

'ଯୁବକ'ର ତିନୋଟି ସଂଖ୍ୟା ବାଜ୍ୟାପ୍ତ ହୋଇଯିବା ବେଳକୁ ବଂଶୀଧର ଦେବାଳିଆ ହେବା ଅବସ୍ଥାକୁ ଆସିଯାଇଥିଲେ । ମିଶ୍ର ଷ୍ଟୋର୍ ଦୋକାନରେ କିଛି ଜିନିଷ ନଥିଲା କହିଲେ ଚଳେ । ଆନ୍ଦୋଳନ ଚଳାଇ ରଖିବା ପାଇଁ ଆବଶ୍ୟକୀୟ ଅର୍ଥ ସଂଗ୍ରହ କରିବା ଦୁରୂହ ବ୍ୟାପାର ଥିଲା । ଦୋକାନ ବ୍ୟବସାୟ କରି ପାଞ୍ଚପଇସା ସଞ୍ଚି ଆଉ ପାଞ୍ଚଦଶ ଗୃହସ୍ଥଙ୍କ ଭଳି ସନ୍ତୁଷ୍ଟ ହୋଇ ବଞ୍ଚିବା ତାଙ୍କ କପାଳରେ ମଧ୍ୟ ନଥିଲା । ଦେଶର ଦୁର୍ଗତିରେ ଅତିଷ୍ଠ ଯୁବପ୍ରାଣ କି ଘୋର ବିପତ୍ତିରେ ଗତି କରୁଥିଲା, ତାହା ସେ ପରିବାରରେ କାହାକୁ ମଧ୍ୟ ବୁଝାଇ ପାରୁନଥିଲେ । ବୃଦ୍ଧ ପିତାମାତା ଉପାର୍ଜନକ୍ଷମ ପୁଅ ହାତକୁ ଅନାଇଥିଲେ । ନବପରିଣୀତା ବଧୂ ଓ ଶିଶୁକନ୍ୟା ମଧ୍ୟ ତାଙ୍କ ଉପରେ ନିର୍ଭର କରୁଥିଲେ । ଏଭଳି ସମସ୍ୟା ସେତେବେଳେ କେବଳ ଯେ ବଂଶୀଧରଙ୍କର ଥିଲା ତାହା ନୁହେଁ, କଂଗ୍ରେସରେ ଯୋଗଦାନ କରିଥିବା ଅନେକ ବ୍ୟକ୍ତି (ଯେଉଁମାନଙ୍କର ପରିବାର ଥିଲା) ଏହିଭଳି ଅସୁବିଧାରେ ପଡ଼ିଥିଲେ । ବଂଶୀଧରଙ୍କର ଏକମାତ୍ର ଆଶ୍ୱାସନା ଥିଲା ଯେ ତାଙ୍କର କିଛି ପୈତୃକ ସମ୍ପତ୍ତି ଥିଲା, ଯାହା ଉପରେ ନିର୍ଭର କରି ତାଙ୍କ ପରିବାର ଶାଗଭାତ ଖାଇ ଅନ୍ତତଃ ବର୍ଷକ ଚଳିଯାଇ ପାରିବେ, ସେମାନଙ୍କୁ କାହା ପାଖରେ ଗୋଡ଼ଭାଙ୍ଗି ଠିଆହେବାକୁ ପଡ଼ିବ ନାହିଁ । ବାରମ୍ବାର ପୋଲିସ୍ ଦୌରାତ୍ମ୍ୟରେ ଅତିଷ୍ଠ ପରିବାର ଓ ଘନ ଘନ ୱାରେଣ୍ଟ ପରୱାନାଠାରୁ ଦୂରକୁ ଯିବାକୁ ସେ ମାନସିକ ପ୍ରସ୍ତୁତି କରିନେଲେ । ଦୃଢ଼ପ୍ରତିଜ୍ଞ ବଂଶୀଧର ଘରେ କାହାକୁ କିଛି କହିଲେ ନାହିଁ । କହିଥିଲେ

କ'ଣ ସତରେ ସେ ଘର ଛାଡ଼ି ପାରିଥା'ନ୍ତେ ! ବୋଧହୁଏ ନାଁ । ଦୋକାନ ପାଇଁ କରିଥିବା କରଜ ଶୁଝିପାରି ନଥିଲେ । ଅର୍ଥାଭାବରୁ ଦୋକାନ ମଧ୍ୟ ଠିକ୍ ଭାବରେ ଚାଲୁନଥିଲା । ତେଣୁ ଭିଣୋଇ ପ୍ରଭୃତିଙ୍କୁ କହି ସେ ଦୋକାନ ପାଇଁ ଡେକ୍‌ଚି ବାସନ ହୋଲ୍‌ସେଲ୍‌ରେ ଆଣିବା ପାଇଁ କିଛି ଅର୍ଥ ଯୋଗାଡ଼ କଲେ ।

**ଗୃହତ୍ୟାଗ :**

ପ୍ରାୟ ୧୯୨୮ ଶେଷ ବା ଆରମ୍ଭରେ ସେ କଲିକତା ଯାଇଛନ୍ତି ବୋଲି ପରିବାରରେ ଧାରଣା ସୃଷ୍ଟି କରି ଘର ଛାଡ଼ିଲେ । ସାଙ୍ଗରେ ନେଇଯାଇଥିଲେ ତାଙ୍କ ବାପା (କକେଇ) ଲକ୍ଷ୍ମୀଧର ମିଶ୍ର ପର କଲମ କାଟିବାକୁ ଦେଇଥିବା ଛୁରୀ, ଛୋଟ ଭଗବତ୍ ଗୀତାଟିଏ, Westend Pocket Watch ଆଉ ଠାକୁର ଦାଣ୍ଡର ଧୂଳି । ଅର୍ଥାତ୍ କେହି ନ ଜାଣିଲେ ମଧ୍ୟ ସେ ଜାଣିଥିଲେ ଯେ ଆଉ ତାଙ୍କର ନିକଟ ଭବିଷ୍ୟତରେ ପରିବାର ସହିତ ମିଳିତ ହେବାର ନାହିଁ ।

ଦିନ ଆଲୁଅରେ ସ୍ୱାମୀଙ୍କ ଚେହେରା ଠିକ୍ ଭାବରେ ଦେଖିନଥିବା ଶ୍ରୀମତୀ ଦେବୀ ସ୍ୱାମୀ କହିଲେ ମନେ ପକାଉଥିଲେ ଧୋତି ସାର୍ଟ ପିନ୍ଧି ତାଙ୍କୁ ପଛକରି ଚାଲିଯାଉଥିବା ଏକ ଯୁବକର ଛବି । ଆଉ ଚାରି ମାସର କନ୍ୟା କୃଷ୍ଣବଲ୍ଲଭୀ ନନା ନାମକ ମଣିଷଟି କେମିତି ତାହା ଜାଣିଲା ତା'ର ବିବାହ ଦଶ-ଏଗାର ବର୍ଷ ପରେ । ଗଙ୍ଗାଧର ମିଶ୍ର ମଧ୍ୟ ପୁତ୍ର ବିଚ୍ଛେଦ ଦୁଃଖରେ ଭାଙ୍ଗିପଡ଼ିଲେ । ଦ୍ୱିତୀୟା ଦେବୀ ଗଲା ଅଇଲା ବ୍ରାହ୍ମଣ ଜ୍ୟୋତିଷଙ୍କ ଅଣ୍ଡିରେ ଚାଉଳ କୁଲାଏ ଅଜାଡ଼ି ଦେଇ ତାଙ୍କୁ ହାତ ଦେଖାଉଥିଲେ "ସତେ କ'ଣ ମୋ ପୁଅ ଫେରିବ ?" ଏ ଭିତରେ କିନ୍ତୁ ସମୟର ଚକ ଅଟକି ଯାଇ ନଥିଲା । କାହା ଦୁଃଖ ସୁଖକୁ ପରୱା ନ କରି ସେ ଗଡ଼ି ଚାଲିଥିଲା ଅବିଶ୍ରାନ୍ତ ଭାବରେ ।

୧୯୨୯ରୁ ୧୯୫୧—କେତେ ପାଣି ବୋହିଗଲା ଲୁଣା ନଈରେ । କେତେ ବନ୍ୟା ବାତ୍ୟା ଆସିଲା । ଧୋଇଗଲା ଫସଲ । ଉପୁଡ଼ି ଗଲା ମହୀରୁହ । କିନ୍ତୁ ଗଙ୍ଗାଧର ମିଶ୍ରଙ୍କ ଘରେ ଗୋଟିଏ ଋତୁ ଚିରସ୍ଥାୟୀ ହୋଇ ରହିଗଲା, ତାହା ହେଲା ପ୍ରତୀକ୍ଷାର ଋତୁ । ଏକଟଣା ପ୍ରତୀକ୍ଷାର ଅସରନ୍ତି ସମୟ ।

**ପ୍ରତୀକ୍ଷାର ଅସରନ୍ତି ସମୟ :**

୧୯୨୮ରେ ବଂଶୀଧର ଘର ଛାଡ଼ିଲେ । ବାପା ମାଆ ଭାବିଥିଲେ ପୁଅ ତା' ଦୋକାନ ପାଇଁ ଜିନିଷ କିଣିବାକୁ କଲିକତା ଯାଉଛି । କିନ୍ତୁ ପୁଅ ଯେ ବ୍ରିଟିଶ ସରକାରଙ୍କ

ଶ୍ୟେନ ଦୃଷ୍ଟିର ଆଢୁଆଳକୁ ଯିବାପାଇଁ ମାନସିକ ପ୍ରସ୍ତୁତି କରିସାରିଥିଲେ, ସେ ବାବଦରେ ସେମାନେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରି ନଥିଲେ । ଦିନେ ରାଜପୁତ୍ର ସିଦ୍ଧାର୍ଥଙ୍କୁ ସୁନ୍ଦରୀ ପତ୍ନୀ  ଯଶୋଧାରା ଓ ସୁକୁମାର ଶିଶୁପୁତ୍ର ରାହୁଲଙ୍କ ଆକର୍ଷଣ ବାନ୍ଧି ରଖିପାରି ନଥିଲା । ସେମିତି ଷୋଡ଼ଶୀ ଶ୍ରୀମତୀ ଓ ଶିଶୁକନ୍ୟା କୃଷ୍ଣବଲ୍ଲଭୀ ବଂଶୀଧରଙ୍କୁ ସଂକଳ୍ପ ପଥରୁ ବିଚ୍ୟୁତ କରାଇ ପାରି ନଥିଲେ ।

ସମୟ ଗଡ଼ି ଚାଲିଲା । ଶିଶୁ କୃଷ୍ଣା ଓରଫ ବଲ୍ଲୀ ବଢ଼ିଲା, ଆଉ ପାଞ୍ଚଟା ପିଲାଙ୍କଠାରୁ ସ୍ୱତନ୍ତ୍ର ଭାବରେ । ପ୍ରତି ପଦରେ ତାକୁ ସାମନା କରିବାକୁ ପଡୁଥିଲା ଅଗଣିତ ପ୍ରଶ୍ନବାଣ । କୁଆଡ଼େ ଗଲେ ତା' ନନା ? ସମସ୍ତେ ନିଜ ବାପାମାନଙ୍କ ପାଖରେ ଗେହ୍ଲା ହେଉଥିବା ଦେଖି ସେ ସଂକୁଚିତ ହୋଇଯାଉଥିଲା । କାରଣ ତା' ନନା କେଉଁଠି ଥିଲେ ସେ ତ ଜାଣି ନଥିଲା । ସିଏ କ'ଣ କେହି ବି ଜାଣି ନଥିଲେ । କ୍ରମେ ବଲ୍ଲୀ ସ୍କୁଲ ଗଲା । ପାଠ ପଢ଼ିଲା । ଭଲ ଛାତ୍ରୀ ଭାବରେ ନାମ କଲା; କିନ୍ତୁ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଝିଅମାନେ ପାଠ ପଢ଼ିବା ଦୋଷାବହ ଥିଲା । ପିଲାଦିନେ ଜେଜେବାପାଙ୍କ ଶ୍ରଦ୍ଧାରେ ଉବୁଟୁବୁ ହେଉଥିବା କିଶୋରୀ ବଲ୍ଲୀ ଢେର୍ ଦିନଯାଏ ପୁଅପିଲାଙ୍କ ଧୋତି ପିନ୍ଧି ଗାଁ ଦାଣ୍ଡରେ ବୁଲୁଥିଲା । କ୍ରମେ ପରିସ୍ଥିତି ବଦଳି ଗଲା । ଘରଯୋଗ୍ୟା ହେବାପରେ ପୁଅମାନଙ୍କ ସହିତ ଏକାଠି ବସି ପାଠ ପଢ଼ିବା କଥା ଚିନ୍ତାର ପରିଧି ଭିତରେ ନଥିଲା । ବଲ୍ଲୀ ମଧ ଥିଲା ବେଶ୍ ସ୍ୱାଭିମାନିନୀ । ଅଷ୍ଟମ ଶ୍ରେଣୀରୁ ତା'ର ପାଠପଢ଼ା ବନ୍ଦ ହୋଇଗଲା, ଯଦିଚ ସେ ସପ୍ତମରେ ବୃତ୍ତି ପାଉଥିଲା । ସେତେବେଳର ହେଡ୍‌ମାଷ୍ଟର (ତା' ଦଦେଇ ହିସାବ) ତାକୁ ବାରମ୍ବାର କହିଥିଲେ ଦସ୍ତଖତ କରି ସ୍କଲାରସିପ୍ ପଇସା ନେଇ ଆସିବାକୁ । କିନ୍ତୁ ପାଠ ଛାଡ଼ିଥିବା ଝିଅ ସ୍କଲାରସିପ୍ ପାଇଁ ଯିବ ବା କାହିଁକି ? ତେଣୁ ଗୋଟେ ମେଧାବିନୀ କିଶୋରୀର ସ୍ୱପ୍ନ ଅଧା ରହିଗଲା । ସେହିଦିନଠାରୁ କିନ୍ତୁ ବଲ୍ଲୀ ଘରେ ବସି ରନ୍ଧାବଢ଼ା ବା ସିଲେଇ ଶିଖି ସନ୍ତୁଷ୍ଟ ରହିଲା ନାହିଁ । ତା'ର ସାମାଜିକ ସ୍ତରର ଗଠନମୂଳକ କାର୍ଯ୍ୟକଳାପ ଚାଲୁ ରହିଲା । ସେଥିରେ ତାକୁ ସହଯୋଗ କରିଥିଲେ ଜମିଦାର ଗୋପବନ୍ଧୁ ମିଶ୍ରଙ୍କର ଆଦରଣୀୟା କନ୍ୟା ଜାହ୍ନବୀ ଦେବୀ ଓରଫ ପେନି ନାନୀ । ବଲ୍ଲୀଠାରୁ ସେ ପ୍ରାୟ ଦୁଇ ତିନି ବର୍ଷ ବଡ଼ ଥିଲେ ହେଁ ଉଭୟଙ୍କର ବନ୍ଧୁତା ଥିଲା । ତାଙ୍କର ଅର୍ଥବଳ ଓ ବଲ୍ଲୀର ସାଂଗଠନିକ କ୍ଷମତା ଖଣ୍ଡସାହୀ ଗ୍ରାମର ଉନ୍ନତି ପାଇଁ ବେଶ୍ ସହାୟକ ହୋଇଥିଲା । ପ୍ରାୟ ପନ୍ଦର ବର୍ଷରେ (୧୯୪୩) ମସିହାରେ ତା'ର ବିବାହ ସମ୍ପନ୍ନ ହୋଇଥିଲା । ଖୋର୍ଦ୍ଧା ଥାନା ... ଶାଳା ନିକଟସ୍ଥ ପଳାଶପୁର ଗ୍ରାମର ବିଶ୍ୱନାଥ ରଥଙ୍କ ଏକୋଇର ବଳା ଆ... ଣ ରଥଙ୍କୁ ସେ ବିବାହ କରିଥିଲେ । ଆର୍ତ୍ତତ୍ରାଣ ଥିଲେ ବୃତ୍ତିରେ ପଣ୍ଡୁ

ଡାକ୍ତର । ଖୁବ୍ ତରବରିଆ ଭାବରେ ଏ ବିବାହ ସମ୍ପନ୍ନ ହୋଇଥିଲା । ଦଦେଇ ରାଧାନାଥ ମିଶ୍ର ଓ ସୋମନାଥ ମିଶ୍ର, କକେଇ ସୀତାନାଥ ମିଶ୍ର, ଶ୍ରୀନିବାସ ମିଶ୍ର, ପ୍ରିୟନାଥ ମିଶ୍ର ଓ ଉମାନାଥ ମିଶ୍ର ଏ ବିବାହ ପାଇଁ ବହୁତ ସହଯୋଗ କରିଥିଲେ । ରାଧାନାଥ ମିଶ୍ରଙ୍କ ଜ୍ୟେଷ୍ଠ ପୁତ୍ର ବିନୋଦ ବିହାରୀ ମିଶ୍ର ମଧ୍ୟ ବଡ଼ଭାଇର ଦାୟିତ୍ୱ ତୁଲାଉଥିଲେ ଓ ବଲ୍ଲୀ ସହିତ ତା' ଶାଶୁଘରକୁ କୁଣିଆ ହୋଇ ଯାଇଥିଲେ ।

ଏପାଖରେ ଖଣ୍ଡସାହୀ ଗ୍ରାମରେ ବଂଶୀଧରଙ୍କୁ ନେଇ ବେଶ୍ ମୁଖରୋଚକ ଅର୍ଥାତ୍ ଚିତ୍ତବିଦାରକ କାହାଣୀମାନ ଗଢ଼ି ଉଠିଥିଲା । ବଲ୍ଲୀ ଦଶ ବାର ବର୍ଷର ହୋଇଥିବା ବେଳେ, ଅର୍ଥାତ୍ ବଂଶୀଧର ଘର ଛାଡ଼ିବାର ପ୍ରାୟ ବାର ବର୍ଷ ପରେ ଧର୍ମର ପ୍ରଥା ମୁତାବକ ପଳାଶପତ୍ର ଦାହ କରି ତାଙ୍କୁ ଶୁଦ୍ଧି ହେବା ପାଇଁ ଯୋଜନା ମଧ୍ୟ କରାଯାଇଥିଲା । ଏପରି କି ଏଥିରେ ସମ୍ମତ ନ ହେଲେ ନିଆଁ ପାଣି ଅଟକ କରାଯିବାର ଧମକ ମଧ୍ୟ ମିଳିଥିଲା । କିନ୍ତୁ ନିରକ୍ଷରା ଜନନୀ ଦ୍ୱିତୀୟା ଦେବୀ ଜିଦ୍ ଧରିଲେ, ମୋ ବୋହୂ ବିଧବା ହେବ ନାହିଁ । ବଲ୍ଲୀ ମଧ୍ୟ ତା'ର ବୟସ ତୁଳନାରେ ଅଧିକ ବୟସ୍କ ଭଳି ଜିଦ୍‌ରେ ଅଟଳ ରହିଲା । ଶ୍ରୀମତୀ ଦେବୀ ନିଜେ ମଧ୍ୟ ନିଜ କଥା ଉପରେ ଅଟଳ ରହିଲେ ଯେ ସେ ହାତରୁ ଶଙ୍ଖା ଖୋଲିବେ ନାହିଁ ବା ସିନ୍ଦୂର ପୋଛିବେ ନାହିଁ । ତାଙ୍କର ମନ କହୁଥିଲା ତାଙ୍କ ସ୍ୱାମୀ ଜୀବିତ । ଏଭଳି ଏକ ଘଟଣା ସେତେବେଳେ ଖଣ୍ଡସାହୀର ଆଖପାଖରେ ବ୍ୟାପି ଯାଇଥିଲା ଆଉ ଦୀର୍ଘଦିନ ପରେ ତା'ର ସତ୍ୟତା ମଧ୍ୟ ପ୍ରମାଣିତ ହୋଇଥିଲା । ଫଳରେ ଶ୍ରୀମତୀ ଦେବୀ ହାତରେ ଶଙ୍ଖା ଓ ମୁଣ୍ଡରେ ସିନ୍ଦୂର ପିନ୍ଧି ନିଷ୍ଠୁର ପତିଙ୍କ ଅପେକ୍ଷାରେ ଦିନ କାଟିଲେ । ଶ୍ରୀମତୀ ଭାର ନେଇ ପ୍ରଥମଥର ପତିଗୃହକୁ ଆସିବା ପୂର୍ବରୁ ତାଙ୍କ ପିତାଙ୍କର ମୃତ୍ୟୁ ହୋଇଥିଲା । ତେଣୁ ଶୋକାତୁରା ଜନନୀ ଯଦି ଶ୍ରୀମତୀଙ୍କୁ ଥରେ ନିଜ ପାଖକୁ ନେଉଥିଲେ, ତେବେ ବର୍ଷକ ପର୍ଯ୍ୟନ୍ତ ଆଉ ଛାଡୁନଥିଲେ । ଅପର ପାଖରେ ଶ୍ୱଶୁର ଶାଶୁ ମଧ୍ୟ ଶିଶୁ ବଲ୍ଲୀର ଦରୋଟି କଥା ଶୁଣିବା ପାଇଁ ଆଗ୍ରହ କରି ବୋହୂକୁ ବାପଘରକୁ ଛାଡ଼ିବାକୁ ରାଜି ହେଉନଥିଲେ କାରଣ ବୋହୂ ଓ ନାତୁଣୀ ଥିଲେ ତାଙ୍କ ଜୀବନର ଏକମାତ୍ର ଆନନ୍ଦର ଉତ୍ସ । ଏହିଭଳି ଉଭୟ ପିତୃ ଓ ଶ୍ୱଶୁର କୁଳର ନୟନପିତୁଳା ହୋଇ ଶ୍ରୀମତୀ ଦେବୀ ନିଜକୁ ଧନ୍ୟ ମନେ କରିବା ସ୍ୱାଭାବିକ ମାତ୍ର ବଂଶୀଧରଙ୍କ ଦୀର୍ଘ ଅନୁପସ୍ଥିତି ସକଳ ଆନନ୍ଦକୁ ବିଷାଦରେ ପରିଣତ କରିଥିଲା । ଏପରିକି ଶ୍ରୀମତୀ ଦେବୀ ନିଜର ସ୍ମୃତି ମନେ ପକାଇ କହନ୍ତି ଯେ ତାଙ୍କ ଶାଶୁ ତାଙ୍କୁ ଝିଅଭଳି ଭଲ ପାଉଥିଲେ ମଧ୍ୟ ଭରସି କରି ପଦେ ଟାଣ କଥା କହିପାରୁ ନଥିଲେ । ଖାଇବା ପାଇଁ ବାଧ କରିପାରୁ ନଥିଲେ ବା ଭଲ ଶାଢ଼ି କି ଚୂଡ଼ି ପିନ୍ଧିବାକୁ ଅତ୍ୟଧିକ ଆଗ୍ରହ ଦେଖାଉ ନଥିଲେ । ହୁଏତ

ତାଙ୍କ ବିବେକ ସେଥିପାଇଁ ତାଙ୍କୁ ବାଧା ଦେଉଥିଲା । ଶ୍ରୀମତୀ ଦେବୀ ଶାଶୁ ଶ୍ୱଶୁରଙ୍କ ସ୍ନେହରେ ଦିନ କାଟୁଥିଲେ ମଧ୍ୟ ତାଙ୍କ ମୁଖରୁ ଦୁଃଖର କଳାଛାଇ କେବେ ହଟିଯାଉ ନଥିଲା । ବଲ୍ଲୀ ୪ର୍ଥ ବା ପଞ୍ଚମ ଶ୍ରେଣୀ (୧୯୩୭ ମସିହା) ବେଳକୁ ସ୍ୱାଧୀନତା ଆନ୍ଦୋଳନ ଶୀର୍ଷରେ ପହଞ୍ଚିଥାଏ । ଗାଁ, ସହର ସବୁଠାରେ ସ୍ୱାଧୀନତା ସମ୍ପର୍କୀୟ ଚର୍ଚ୍ଚା ଚାଲିଥାଏ । ସେଇବର୍ଷ ଭୀଷଣ ବାତ୍ୟା ହୋଇଥିଲା । ବାତ୍ୟାରେ ଆମ୍ବ, ଗୁଆ, ନଡ଼ିଆ ଗଛ ସବୁ ଭାଙ୍ଗି ପଡ଼ିଥିଲା । ସେହି ଭଙ୍ଗା ଗଛ ସବୁ ଦେଖି ଗଙ୍ଗାଧର ମିଶ୍ର ଲୁଚେଇ ଲୁଚେଇ ଆଖି ପୋଛୁଥିଲେ । ସେହି ଗଛଗୁଡ଼ିକୁ ସେ ପୁଅଭଳି ଦେଖୁଥିଲେ । ନଡ଼ିଆ, ଗୁଆ ବିକ୍ରି ଥିଲା ସେ ସମୟରେ ବ୍ରାହ୍ମଣ ଶାସନର ଏକମାତ୍ର ଆୟ ପନ୍ଥା । ଗଙ୍ଗାଧର ମିଶ୍ର ଖାଲି ପାଗଳଙ୍କ ଭଳି ପ୍ରଳାପ କଲେ । "ଯାହାକୁ ପୁଅକରି ଆଣିଥିଲି, ସେ ତ କୁଆଡ଼େ ଗଲା । ମୋର ପୋଷଣାହାରୀ ପୁଅ ଭଳି ନଡ଼ିଆ ଗଛଗୁଡ଼ାକ ବି ଭାଙ୍ଗିଗଲା । ମୋର ଆଉ ବଞ୍ଚିବା କ'ଣ ଲୋଡ଼ା ?" ତିନିଟା ଦିନ ଜରରେ ଗଙ୍ଗାଧର ଆରପାରିକୁ ବାଟ କାଟିଲେ । କେହି ଜାଣିନଥିଲେ ମୂଲିଆଙ୍କ କାମକୁ ତଦାରଖ କରି ଫେରିଥିବା ଦମ୍ଭିଲା ମଣିଷଟା ଏମିତି ଚାଲିଯିବ । କିନ୍ତୁ ସେ ଗଲାବେଳେ ବଲ୍ଲୀକୁ ଇଚ୍ଛା କରି ମଧ୍ୟ ସେ ସ୍କୁଲରେ ଥିବାରୁ ଦେଖା କରିପାରିଲେ ନାହିଁ । ଅପର ପକ୍ଷରେ ବଲ୍ଲୀର ଆଗାମୀ ଧୂସର ଜୀବନ ପାଇଁ ଦେଇଗଲେ ଭବିଷ୍ୟତ ବାଣୀ 'ବଲ୍ଲୀଟା ଜନମ ଦୁଃଖୀ'— ଜେଜେମା ଆଉ ମା' ଭାବିଲେ ପିଲାଦିନୁ ବାପା ସ୍ନେହ ପାଇନଥିବା ଝିଅଟି ପାଇଁ ଏ ନିଛକ ଭାବପ୍ରବଣତାର କଥା । ମାତ୍ର ସେ ଭିତରେ ଭବିଷ୍ୟତର ଝଲକ ଛପି ରହିଥିଲା, ଯାହା ପରବର୍ତ୍ତୀ କାଳରେ ସତ୍ୟରେ ପରିଣତ ହେଲା ।

ଗଙ୍ଗାଧର ମିଶ୍ରେ ଚାଲିଗଲେ ମନମରା ହୋଇ । ରୋଗ ବାଧିକାରେ ପଡ଼ି ନାହାନ୍ତି କି କାହାରି ସେବା ଖୋଜି ନାହାନ୍ତି । ଖୋଜିଥିଲେ ବି କିଏ ଥିଲା ପାଖରେ ? ତାଙ୍କୁ ଶୁଦ୍ଧି ହେବାକୁ କି ତାଙ୍କର ଶ୍ରାଦ୍ଧ କରିବାକୁ ବଂଶୀଧର ଆସିଲେ ନାହିଁ । ତାଙ୍କ ପାଖରେ ଖବର ମଧ୍ୟ ପହଞ୍ଚିଲା ନାହିଁ । ଏହା ହୁଏତ ଉଭୟଙ୍କର ଦୁର୍ଭାଗ୍ୟ । ଗଙ୍ଗାଧର ଚାଲିଗଲା ପରେ ବଂଶୀଧରଙ୍କ ପରିବାରର ଦୁଆର ବନ୍ଧ ପାଲଟିଗଲେ ପତିହରା ଦ୍ୱିତୀୟା ଦେବୀ । ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବଲ୍ଲୀ ବଢ଼ିଲା ।

ବଲ୍ଲୀର ବିବାହ ମଧ୍ୟ ହେଲା । ପନ୍ଦର ବର୍ଷ ବୟସରେ ସେ ବିବାହ କଲା । ଜେଜେମାଆ ଦ୍ୱିତୀୟା ଦେବୀ ସବୁ ତଦାରଖ କଲେ । ନାତୁଣୀ ଜୋଇଁ ନାତୁଣୀକୁ ଦେଖି ଆସିଥିବା ବେଳେ ଯେଉଁ ପ୍ରଶ୍ନମାନ ପଚାରିଥିଲେ ତା'ର ଉତ୍ତର ମଧ୍ୟ ଦେଲେ ନିଜ ଓଢ଼ଣା ତଳୁ । ଏପରିକି ବଲ୍ଲୀ ବିବାହ ପରେ ଦଶବର୍ଷ ଯାଏ ସେ ବଞ୍ଚିଥିଲେ । ବଂଶୀଧରଙ୍କ

ଫେରନ୍ତା ବାଟକୁ ଅନାଇଁ ଅନାଇଁ ରହିଥିବା ଜନନୀଙ୍କର ସ୍ୱପ୍ନ ସଫଳ ହେଲା । ଏପରିକି ନିଜ ପରିବାରର ଦ୍ୱିତୀୟ କନ୍ୟାର ଜନ୍ମ (୧୯୫୩) ପର୍ଯ୍ୟନ୍ତ ସେ ବଞ୍ଚିଥିଲେ । ତା'ର ଜନ୍ମ ସମୟରେ 'ପୁଣି ଝିଅଟିଏ ହେଲା'ର ନାକଟେକାଠାରୁ ସେ ଥିଲେ ବହୁତ ଦୂରରେ । ଶେଷରେ ୧୯୫୭ କାର୍ତ୍ତିକ ମାସ ବଡ଼ ଏକାଦଶୀ ଦିନ ତାଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପର୍ଯ୍ୟନ୍ତ ସେ ମଧ୍ୟ ଥିଲେ କର୍ମଚଞ୍ଚଳ । ତିନି ଚାରି ଦିନ ମାତ୍ର ସେ ବିଛଣାରେ ପଡ଼ିଥିଲେ ।

**ବଂଶୀଧରଙ୍କର ଯାତ୍ରା :**

କଲିକତା କଂଗ୍ରେସ (୧୯୨୮)ରେ ଚଟ୍ଟଗ୍ରାମର ଅଗ୍ନିଯୁଗର ବିପ୍ଳବୀ ସୂର୍ଯ୍ୟ ସେନଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ସୂର୍ଯ୍ୟ ସେନଙ୍କର ଉତ୍ସାହ ଓ ବିଶ୍ୱାସରେ ବଂଶୀଧର ଅନୁପ୍ରାଣିତ ହେଲେ ଓ ତାଙ୍କ ଗୋଷ୍ଠୀରେ ଗୃହୀତ ହୋଇଗଲେ । ବିପ୍ଳବୀମାନଙ୍କର ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ଘଟଣା । ବିପ୍ଳବୀ ସୂର୍ଯ୍ୟ ସେନ (ମାଷ୍ଟରଦା) ନାମରେ ପରିଚିତ । ଚଟ୍ଟଗ୍ରାମ ବା ଚିଟାଗଙ୍ଗର ଅସ୍ତ୍ରାଗାର ୧୯୩୦ ମେ ମାସ ୧୨ ତାରିଖରେ ଲୁଣ୍ଠିତ ହୋଇଥିଲା । ଫଳରେ ସୂର୍ଯ୍ୟ ସେନଙ୍କର ଅନ୍ୟାନ୍ୟ ସହଯୋଗୀ ଅନନ୍ତ ସିଂହ, ଗଣେଶ ଘୋଷ ଓ ଜମିଦାର ପ୍ରଭୃତିଙ୍କୁ ପୋଲିସ୍ କଡ଼ା ନଜରରେ ରଖିଥିଲା । ସୂର୍ଯ୍ୟ ସେନ ୧୯୩୪ ଜାନୁୟାରୀ ୨୦ ତାରିଖରେ ଫାଶୀ ପାଇଲେ । ମାତ୍ର ଏଥିପାଇଁ ସାମ୍ରାଜ୍ୟବାଦୀମାନେ ଏହି ବୈପ୍ଳବିକ ସଂଗଠନକୁ ମୂଳପୋଛ କରିବା ପାଇଁ ଉଦ୍ୟମ କରିଥିଲେ । ଗୋଏନ୍ଦା ବିଭାଗର ତନାଘନା ଅନୁସନ୍ଧାନ ଯୋଗୁ ବିପ୍ଳବୀମାନେ ଆତ୍ମଗୋପନ କରିବାକୁ ବାଧ୍ୟ ହେଲେ । ତେଣୁ ବାଧ୍ୟହୋଇ ବଂଶୀଧର ଚଟ୍ଟଗ୍ରାମ ଛାଡ଼ି ବର୍ମା ଗଲେ ।

ଯଦିଚ ବର୍ମା ବ୍ରିଟିଶ ଶାସନରୁ ମୁକ୍ତି କାମନା କରିଥିଲା; କିନ୍ତୁ ତା'ର ପଦ୍ଧତି ଭାରତୀୟ ପଦ୍ଧତିଠାରୁ ସଂପୂର୍ଣ୍ଣ ଭିନ୍ନ ଥିଲା । ଭାରତର ଆନ୍ଦୋଳନ ଥିଲା ଅହିଂସ, ଶସ୍ତ୍ର ବର୍ଜିତ ଆନ୍ଦୋଳନ; ମାତ୍ର ବର୍ମାର ଥିଲା ସଶସ୍ତ୍ର ସଂଗ୍ରାମ । ବର୍ମାର ଆକାୟାବରୁ ବଂଶୀଧର ଭାରତ ଆସିବାକୁ ଇଚ୍ଛା କରି ମଧ୍ୟ ଆସିପାରିଲେ ନାହିଁ । ସେତେବେଳେ ବର୍ମାର ମୌଲମିନ ସହରରେ ଓଡ଼ିଶାର ବିଶେଷତଃ ଗଞ୍ଜାମ ଜିଲ୍ଲାର ବହୁ ବ୍ୟକ୍ତି ବସବାସ କରୁଥିଲେ । ବର୍ମାରେ ଭାରତୀୟମାନଙ୍କର ସଂଖ୍ୟା ଅଧିକ ଥିଲା । ବଂଶୀଧରଙ୍କ ଭଳି ଅନେକ ଦେଶସେବୀ ବିଭିନ୍ନ କରଣରୁ ଗୁପ୍ତରେ ମଧ୍ୟ ସେଠାରେ ରହୁଥିଲେ । ବଂଶୀଧର ସେଠାରେ ରହି ନିଜର କର୍ମପନ୍ଥା ସ୍ଥିର କଲେ । ବର୍ମାରୁ ଗୋପାଳପୁର ପ୍ରତି ସପ୍ତାହରେ ବୋଇତ ଆସୁଥିଲା । ଗଞ୍ଜାମର ଚାଷୀମାନେ ବର୍ମାର ଧାନ ଉତ୍ପାଦନର ପ୍ରଧାନ କର୍ମୀ ଥିଲେ । ବର୍ମାର ପେଟ୍ରୋଲିୟମ ଶିଳ୍ପରେ ମଧ୍ୟ ଓଡ଼ିଶାର କିଛି ଲୋକ କାମ କରୁଥିଲେ ।

୧୯୩୫ର 'ଭାରତ ଶାସନ ଆଇନ' ପ୍ରବର୍ତ୍ତନ ହେବା ପରେ ବର୍ମାକୁ ବିନା ପାସପୋର୍ଟରେ ପ୍ରବେଶ କରିବା ନିଷିଦ୍ଧ ହୋଇଗଲା ।

ବର୍ମାରେ ବଂଶୀଧର ନିଜର ଭରଣ-ପୋଷଣ ପାଇଁ କେତେକ ପରିବାରରେ ରୋଷେଇଆ କାମ କରିଥିଲେ । ତାଙ୍କୁ ଭଲ ରାନ୍ଧି ଆସୁଥିବାରୁ ଏ କାମ ତାଙ୍କୁ ସହଜ ମନେ ହୋଇଥିଲା । ମାତ୍ର ବିଧିର ବିଧାନ ଥିଲା ଅନ୍ୟ ପ୍ରକାର । ସେହିପରିବାରର ଗୃହଶିକ୍ଷକ ତାଙ୍କ ପିଲାମାନଙ୍କୁ ଭୁଲ୍ ଗଣିତଟିଏ ବତାଇ ଦେଇଥିଲେ, ଯାହା ବଂଶୀଧରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଗୃହ ଶିକ୍ଷକ ଗଲା ପରେ ସେ ପିଲାଟିକୁ ସଠିକ ଗଣିତଟି ବତାଇ ଦେଇଥିଲେ, ଯାହା ସେ ପରିବାରର କର୍ତ୍ତାଙ୍କୁ ତାଙ୍କ ବିଷୟରେ କୌତୂହଳୀ କରିଥିଲା । ପରଦିନ ବଂଶୀଧର ଅତି ସତର୍କତାର ସହିତ ସେ ସ୍ଥାନ ଛାଡ଼ି ଦେଇଥିଲେ । ଗୁଇନ୍ଦା ପୋଲିସ୍‌ଙ୍କ ନଜର ଆଢୁଆଳରେ ରହିବା ପାଇଁ ସେ ବନ୍ଦର ଅଞ୍ଚଳକୁ ହିଁ ଉପଯୁକ୍ତ ମନେ କରିଥିଲେ ।

ଚଟ୍ଟଗ୍ରାମ ଛାଡ଼ିବା ସମୟରେ ମଧ୍ୟ ସେ ଭାରତୀୟ ନାବିକମାନଙ୍କର ସହଯୋଗ ପାଇଥିଲେ । ଏମାନଙ୍କୁ 'ଲସ୍କର' କୁହାଯାଉଥିଲା । ଇଂରାଜୀ ଅଭିଧାନରେ 'ଲସ୍କର' ଶବ୍ଦର ଅର୍ଥ ଭାରତୀୟ ନାବିକ । (ବର୍ତ୍ତମାନ 'ଲସ୍କର' କହିଲେ ଜଳଦସ୍ୟୁଙ୍କୁ ହିଁ ବୁଝାଉଛି) ଏହି 'ଲସ୍କର'ମାନେ ବ୍ୟବହାର, ଚାଲିଚଳନ ଓ ଭାଷା ଇତ୍ୟାଦିରେ ଭାରତୀୟ ଥିଲେ ହେଁ, ଏମାନେ ଥିଲେ ଆନ୍ତର୍ଜାତିକ ବିଚାର ସମ୍ପନ୍ନ । ବାଣିଜ୍ୟ ଜାହାଜ ସହିତ ବେଶ୍ ଭ୍ରମଣ କରିବା ସମୟରେ ସେମାନେ ଜାତି, ଧର୍ମ, ବର୍ଣ୍ଣ ଓ ସମ୍ପ୍ରଦାୟର ଊର୍ଦ୍ଧ୍ୱରେ ଉଦାର ମାନବିକତାରେ ବାନ୍ଧି ହୋଇଥିଲେ । ଏହି ନାବିକମାନଙ୍କ ସହିତ ବଂଶୀଧରଙ୍କର ସମ୍ପର୍କ ସ୍ଥାପିତ ହେଲା । ପ୍ରଥମରେ ବନ୍ଦର ଅଞ୍ଚଳରେ ଖଲାସୀ କାମ କରି ଜୀବିକା ନିର୍ବାହ କରୁଥିବା ବ୍ୟକ୍ତି ପରବର୍ତ୍ତୀ କାଳରେ, ସେମାନଙ୍କୁ ନେତୃତ୍ୱ ଦେଇଥିଲେ ।

**ଉଦ୍ଦେଶ୍ୟହୀନ ଯାତ୍ରାରୁ ଲକ୍ଷସ୍ଥଳ ପର୍ଯ୍ୟନ୍ତ :**

ବର୍ମାର Trade Centreରେ ପହଞ୍ଚିବା ବେଳକୁ ପାସପୋର୍ଟରେ ତାଙ୍କର ନାମ ଥିଲା ଇବ୍ରାହିମ୍ ଖାଁ । ବର୍ମାର ଏହି ଅଞ୍ଚଳରେ ସେ କିଛିଦିନ ଜଳଖିଆ ଦୋକାନ କରିଥିଲେ । ସେଠାରେ ଜିଲିପି ଓ ମାଲପୁଆ ଜାତୀୟ ଖାନା ତିଆରି କରି ଫେରିକରି ବିକ୍ରି କରୁଥିଲେ । ତାହା ସେତେବେଳେ ଖୁବ୍ ଲୋକପ୍ରିୟ ହୋଇଥିଲା ଓ ବଂଶୀଧର କିଛି ଅର୍ଥ ମଧ୍ୟ ଉପାର୍ଜନ କରିଥିଲେ । ପରେ ସେ ପୁରୁଣା ପୋଷାକ କିଣି ତାକୁ ଶ୍ରମିକ ବସ୍ତି ଅଞ୍ଚଳରେ ଅଳ୍ପ ଦାମ୍‌ରେ ବିକ୍ରି କଲେ । ଫଳରେ ବନ୍ଦର ଅଞ୍ଚଳରେ ଶ୍ରମିକମାନଙ୍କ

ସହିତ ସେ ପରିଚିତ ହେଲେ ଓ ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜ୍ଜନ କଲେ । ବର୍ମାରୁ ଜାହାଜରେ ଆମେରିକାର ବ୍ରୁକ୍‌ଲିନ୍‌କୁ ଯାଇ ସେ ପୁଣି ଲଣ୍ଡନ ଫେରିଲେ । ରେଙ୍ଗୁନ୍‌ରେ ସେ ନିଜର ପାସପୋର୍ଟ ବଦଳାଇ ଇବ୍ରାହିମ୍ ଖାଁରୁ ପାଲଟିଲେ ସୁରତ ଅଲ୍ଲି ।

ବର୍ମାରୁ ସେ ସିଙ୍ଗାପୁର ଗଲେ । ସିଙ୍ଗାପୁର ଥିଲା ଭାରତ ମହାସାଗରରୁ ପ୍ରଶାନ୍ତ ମହାସାଗର ପାଇଁ ପ୍ରଧାନ ପ୍ରବେଶ ଦ୍ୱାର । ସିଙ୍ଗାପୁରର ନାବିକମାନେ ବଂଶୀଧରଙ୍କ ନେତୃତ୍ୱ ଗ୍ରହଣ କରିନେଲେ । ସିଙ୍ଗାପୁର ସେତେବେଳେ ବ୍ରିଟିଶ ସାମରିକ ନୌଘାଟୀ ଥିଲା । ବଂଶୀଧର ସିଙ୍ଗାପୁରଠାରେ Indian Seamens' Association ଗଢ଼ି ତା'ର ପ୍ରତିଷ୍ଠାତା ସମ୍ପାଦକ ଭାବରେ ସାଂଗଠନିକ କାର୍ଯ୍ୟ ଆରମ୍ଭ କରିଥିଲେ । ଏହିଠାରେ ହିଁ ପ୍ରଥମଥର ତାଙ୍କୁ କିଛି ସାଂଗଠନିକ କାର୍ଯ୍ୟରେ ନିଜର କୃତିତ୍ୱ ପ୍ରମାଣ କରିବାର ଅବସର ମିଳିଲା, ଯାହା ପରବର୍ତ୍ତୀ କାଳରେ ତାଙ୍କର ଜୀବନ ଶୈଳୀକୁ ପ୍ରଭାବିତ କରିଥିଲା ।

ବର୍ମାରୁ ସିଂଗାପୁର ପୁଣି ସିଂଗାପୁରରୁ ସିଲୋନ୍ ତାଙ୍କୁ ଏକାଧିକ ବାର ଯାତ୍ରା କରିବାକୁ ହୋଇଥିଲା । ବ୍ରିଟିଶ କୋପଦୃଷ୍ଟିରୁ ଦୂରକୁ ଚାଲିଯିବାର ଏକମାତ୍ର ଆଗ୍ରହ ନେଇ ସେ ଘୂରି ବୁଲୁଥିଲେ; ମାତ୍ର କାଇଁଚ ଯେତେ ମାଟିତଳେ ପୋତିହୋଇ ରହିଥିଲେ ମଧ ତା'ର ରଙ୍ଗ ଯେମିତି ଫିକା ହୁଏ ନାହିଁ, ସେହିପରି ସେ ଲୁଚିଥିବା ସ୍ଥାନରେ ମଧ ବାରମ୍ବାର ନିଜ ବ୍ୟକ୍ତିତ୍ୱର ଔଜଲ୍ୟ ଯୋଗୁ ସନ୍ଦେହ ଘେରାକୁ ଚାଲି ଆସୁଥିଲେ ।

ସିଲୋନ୍‌ରେ ସେ କିଛିଦିନ ବନ୍ଦର ଅଞ୍ଚଳରେ ରହି ଜାହାଜରେ ଖଲାସୀ କାମ କରୁଥିଲେ । ସେଠାରୁ ଗୋଟିଏ ସିଂହଳୀ ସିନେମା କମ୍ପାନୀ ପାନାମା କେନାଲ ଓ ସୁଏଜ୍ କେନାଲକୁ ସିନେମା ସୁଟିଂ ପାଇଁ ଯିବାର ଥାଏ । ସେମାନଙ୍କର ନାବିକ ଭୂମିକା ପାଇଁ ଜଣେ ଅଭିନେତା ଆବଶ୍ୟକ ଥିଲା । ସେହି ଭୂମିକା କରିବା ପାଇଁ ବଂଶୀଧର ଅଗ୍ରହରେ ସମ୍ମତି ଦେଲେ । ବ୍ରିଟିଶ ଅଧିକୃତ ଭାରତରୁ ଇଂଲଣ୍ଡ ଯିବା ପାଇଁ ସେତେବେଳେ ଭିସା ପାସପୋର୍ଟ ପ୍ରଭୃତିର ଏତେ କଡ଼ା କଟକଣା ନଥିଲା । ଅପର ପକ୍ଷରେ ସିନେମା କମ୍ପାନୀରେ ଥିବା ସମସ୍ତ କର୍ମୀଙ୍କୁ ଏକତ୍ର ଯାତ୍ରା କରିବାର ସୁବିଧା ମିଳିଥିଲା । ବଂଶୀଧର ଏହି ଅପୂର୍ବ ସୁଯୋଗର ସଦ୍‌ବ୍ୟବହାର କରି ସିନେମା କମ୍ପାନୀ ସହିତ ଲଣ୍ଡନ ଅଭିମୁଖେ ଯାତ୍ରା କଲେ । ସିନେମା ସୁଟିଂ ସାରି ଅନ୍ୟମାନେ ଫେରିଆସିଲେ; ମାତ୍ର ବଂଶୀଧର ଫେରିଲେ ନାହିଁ । ନିଜର ଭାଗ୍ୟ ନିର୍ଦ୍ଧାରଣ ତଥା ଜାତୀୟ ଭାଗ୍ୟ ସହିତ ସମ୍ପୃକ୍ତ ହେବାର ଏହି ଅବସରକୁ ସତେ ଯେପରି ସେ ଅପେକ୍ଷା କରି ରହିଲେ ।

ସିଙ୍ଗାପୁରରୁ ସେ ଜାପାନ ଯାଇ ଅଣଭାରତୀୟ ନାବିକ ଯଥା–ଗ୍ରୀସ୍, ଇଟାଲୀ, ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ରର ନାବିକମାନଙ୍କ ସହିତ ପରିଚିତ ହେଲେ । ସେଠାରୁ ସାଂଗଠନିକ କାର୍ଯ୍ୟରେ ତାଙ୍କୁ ଯୁକ୍ତରାଷ୍ଟ୍ର ମଧ୍ୟ ଯିବାକୁ ପଡ଼ିଥିଲା । ବ୍ରୁକ୍‌ଲିନ୍ ନାମକ ମର୍ତ୍ତନ ସହରରେ ରହୁଥିବା ସମୟରେ ସେ ବିଶ୍ୱ ନୌବାଣିଜ୍ୟ ନାବିକ ଆସୋସିଏସନ (Warld Seamens' Association)ର ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ । ୧୯୩୪-୩୫ ମସିହା ବେଳକୁ ଏହି ଆସୋସିଏସନ ଲଣ୍ଡନକୁ ସ୍ଥାନାନ୍ତରିତ ହେଲା । ବିଶିଷ୍ଟ କମ୍ୟୁନିଷ୍ଟ ନେତା ଡଃ ଜେଡ୍.ଏ. ଆଜାଦ୍ ତାଙ୍କ ଜୀବନ ଅନୁଭୂତି 'ମେରେ ଜୀବନ କୀ କୁଛ୍ ଯାଦେଁ'ରେ ଉଲ୍ଲେଖ କରିଛନ୍ତି ଯେ ଭାରତୀୟ ଜାହାଜରେ କାମ କରୁଥିବା ଶ୍ରମିକ ସଂଗଠନମାନେ ନିଜକୁ କମ୍ୟୁନିଷ୍ଟ କହୁଥିଲେ । ଏମାନଙ୍କ ମଧ୍ୟରୁ ଅସରଫ୍, ଶୌକତ ଉମର, ନିହାରେନ୍ଦୁ ମଜୁମଦାର, ପ୍ରମୋଦ ଦାସଗୁପ୍ତ, କମ୍ରେଡ୍ ସାହା, ଗୋପାଲ ବସାକ, ରଜନୀ ପାମିଦତ୍ତ ଓ ହାରି ପାଲିଟ୍ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । କେମ୍ବ୍ରିଜ ଓ ଅକ୍ସଫୋର୍ଡରେ ପାଠ ପଢୁଥିବା ଭାରତୀୟ ବିଦ୍ୟାର୍ଥୀମାନଙ୍କ ଉପରେ ଏମାନଙ୍କର ବେଶ୍ ପ୍ରଭାବ ଥିଲା । India League, Students Union, Indian Students Association, League against Imperialism ଭଳି ସାନବଡ଼ ଛାତ୍ର ସଂଘ ଭାରତୀୟ ବିଦ୍ୟାର୍ଥୀମାନଙ୍କ ଦ୍ୱାରା ପରିଚାଳିତ ହୋଇ ଭାରତର ସ୍ୱାଧୀନତା ପ୍ରାପ୍ତି ସମ୍ପର୍କରେ ବିଭିନ୍ନ ଆଲୋଚନା କରୁଥିଲେ । ଅକ୍ସଫୋର୍ଡର ତତ୍କାଳୀନ ବିଶ୍ୱବିଖ୍ୟାତ ପ୍ରଫେସର ହାରଲ୍‌ଡ ଲାସ୍କି ଥିଲେ ସମସ୍ତଙ୍କର ପଥପ୍ରଦର୍ଶକ । ଯେଉଁ କେତେକ ପୁସ୍ତକ ଏହି ଛାତ୍ରସମାଜକୁ ଅନୁପ୍ରେରିତ କରିଥିଲା, ସେଗୁଡ଼ିକ ହେଉଛି Bernard Shawଙ୍କର Inteligent Women's Guide to Socialism, Bertand Russellଙ୍କର Roads to Freedom ଓ Sidenly Webଙ୍କର Soviet Russia A New Civilization । ବର୍ଣ୍ଣାଡ୍ ଶଙ୍କ ପୁସ୍ତକର ପ୍ରଭାବ ଫଳରେ ୧୯୨୯ରେ ୟୁରୋପର ମହିଳାମାନଙ୍କୁ ଭୋଟ୍ ଅଧିକାର ମିଳିଥିଲା ।

ଲଣ୍ଡନ ସହରରେ ତାଙ୍କର ପ୍ରାଥମିକ ଅବସ୍ଥାନ ସମୟ ଥିଲା ବେଶ୍ ରୋମାଞ୍ଚକର । ସେ ପୁରୁଣା ଲୁଗାପଟା ବିକ୍ରି କରି ଅର୍ଥ ରୋଜଗାର କରିଥିଲେ, ଯାହାକୁ ସମ୍ବଳ କରି ସେ ଏକ ପୁରୁଣା ଟାଇପ୍ ମେସିନ୍ କିଣିଲେ । ସେହି ଟାଇପ୍ ମେସିନ୍‌ର ଶବ୍ଦ ସତେ ଯେପରି ତାଙ୍କ ଭାଗ୍ୟର ବନ୍ଦ ଦୁଆରେ କରାଘାତ କଲା । ଭାରତୀୟ ନାବିକମାନଙ୍କର ଦୁର୍ଦ୍ଦଶା ବିଷୟ ଲେଖି ସେ ବାରମ୍ବାର ରଏଟର ଭଳି ସମ୍ବାଦ ପରିବେଷଣ ସଂସ୍ଥା ନିକଟକୁ ପଠାଇବାକୁ ଲାଗିଲେ । ଭାରତୀୟ ନାବିକମାନେ ବେଶି ଅର୍ଥ ରୋଜଗାର କରନ୍ତି ନାହିଁ ।

ତାଙ୍କ ପିଲାମାନଙ୍କର ଶିକ୍ଷା ଓ ସ୍ୱାସ୍ଥ୍ୟ ପ୍ରତି ଲଂଣ୍ଡନ ସରକାର ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ବନ୍ଦରର ସନ୍ତସନ୍ତିଆ ଅଞ୍ଚଳରେ ସେମାନଙ୍କର ପିଲାମାନେ ରୋଗିଣା ହୋଇଯାଆନ୍ତି । ଯଦି କେହି ଜାହାଜ ଶ୍ରମିକ ମୃତ୍ୟୁବରଣ କରେ, ତେବେ ତା'ର ପରିବାର ପାଇଁ କ୍ଷତିପୂରଣ ତ ଦୂରର କଥା, ଖବର ମଧ୍ୟ ଠିକ୍ ସମୟରେ ପାଆନ୍ତି ନାହିଁ । ଏସବୁ ଅଙ୍ଗେଲିଭା ଘଟଣାକୁ ସୁରଟ ଅଲ୍ଲି ବାରମ୍ବାର କର୍ତ୍ତୃପକ୍ଷଙ୍କ ନିକଟକୁ ଆଣିଲେ ଓ ତା'ଦ୍ୱାରା ସେହି ଜାହାଜ ଶ୍ରମିକମାନଙ୍କ ମନରେ ନିଜପାଇଁ ଶ୍ରଦ୍ଧା ଓ ସମ୍ମାନ ସୃଷ୍ଟି କରିପାରିଥିଲେ ।

ପ୍ରାୟ ୧୯୩୪-୩୫ ମସିହା ବେଳକୁ ଅତ୍ୟଧିକ ପରିଶ୍ରମ ଓ ଅସ୍ୱାସ୍ଥ୍ୟକର ବନ୍ଦର ପରିବେଶରେ ରହି ସୁରତ ଅଲ୍ଲିଙ୍କର ଆଖି ଖରାପ ହେଲା । ଡାକ୍ତରମାନେ ସ୍ଥାନ ପରିବର୍ତ୍ତନ କରିବା ପାଇଁ ତାଙ୍କୁ ନିର୍ଦ୍ଦେଶ କଲେ । ବିଶ୍ୱ ନୌବାଣିଜ୍ୟ ଆସୋସିଏସନର କର୍ମକର୍ତ୍ତାମାନେ ମଧ୍ୟ ଶ୍ରମିକ ସୁଲଭ କାର୍ଯ୍ୟ ଛାଡ଼ି ଶ୍ରମିକ ସଂଗଠନର ସାଂଗଠନିକ ଦାୟିତ୍ୱ ନେବାକୁ ସୁରତ ଅଲ୍ଲିଙ୍କୁ ଅନୁରୋଧ କଲେ । ଫଳରେ ସୁରତ ଅଲ୍ଲିଙ୍କର ଆତ୍ମନିର୍ବାସନର ଦିନମାନ ଟିକିଏ ସହଜ ହେଲା । ସେ ଏତେବଡ଼ ସଂଗଠନର କର୍ମକର୍ତ୍ତା ଭାବରେ ଯଥେଷ୍ଟ ଅର୍ଥ, ସମ୍ମାନ ଓ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ବହନ କରି ନିଜକୁ ସେଠାରେ ପ୍ରତିଷ୍ଠିତ କରିପାରିଥିଲେ ।

ଅସାଧାରଣ କାର୍ଯ୍ୟଦକ୍ଷତା, ଦୂରଦୃଷ୍ଟି ତଥା ପ୍ରଭାବଶାଳୀ ବ୍ୟକ୍ତିତ୍ୱ ନେଇ ଖଣ୍ଡସାହୀ ଗ୍ରାମର 'ବଂଇଶୀ' ପାଲଟିଗଲେ ଶ୍ରମିକ ନେତା ସୁରତ ଅଲ୍ଲି । ପରିବାର ପଡ଼ି ରହିଲା କାହିଁ କେତେ ପଛରେ । ଏହି ଦୃଢ଼ ମନୋବଳ ସମ୍ପନ୍ନ ଯୁବକଙ୍କ ଆଖି ଆଗରୁ ଶ୍ରୀମତୀଙ୍କର ସୁନ୍ଦର ମୁଖ ଛବି ଅନ୍ତର୍ହିତ ହୋଇଗଲା । ନିଜକୁ ପ୍ରତିଷ୍ଠିତ କରିବା ପରେ ଏକମାତ୍ର ତାଙ୍କର ଲକ୍ଷ ଥିଲା ଭାରତରୁ ବୈଦେଶିକ ଶକ୍ତିର ମୂଳୋତ୍ପାଟନ । ସେଥିପାଇଁ ଦରିଆ ପାରିରେ ସ୍ୱାଧୀନତା ଆନ୍ଦୋଳନକୁ ଚେତାଇ ରଖିଥିଲେ ।

**ଭାରତୀୟ ଶ୍ରମିକମାନଙ୍କର ଦୁର୍ଦ୍ଦଶା :**

ଚାଳିଶି ଦଶକରେ ଲଣ୍ଡନର ଜାହାଜ ଶ୍ରମିକମାନଙ୍କର ଅବସ୍ଥା ବେଶ୍ ଦୟନୀୟ ଥିଲା । ସେମାନଙ୍କର ବାସସ୍ଥାନ ଥିଲା ବେଶ୍ ଅସ୍ୱାସ୍ଥ୍ୟକର ସନ୍ତସନ୍ତିଆ । ବିଶେଷ କରି ଇଷ୍ଟ୍ ଇଣ୍ଡିଆ ଡକ୍‌ରେ ଥିବା ଭାରତୀୟମାନେ ଖୁବ୍ ଦରିଦ୍ର । ୯୦ ନମ୍ବର ହାଇଷ୍ଟ୍ରିଟ୍‌ରେ ଗୋଟିଏ ହିନ୍ଦୁସ୍ଥାନୀ ଆସୋସିଏସନ ଥାଏ । ସେଠାରେ ଏହି ଅସଂଗଠିତ ଶ୍ରମିକମାନଙ୍କୁ ଏକତ୍ର ହେବାର ସୁଯୋଗ ମିଳେ । ସେଠାରେ ଅନେକ ଭାରତୀୟ ମୁସଲମାନ ରହନ୍ତି । ସୁରତ ଅଲ୍ଲି ସେମାନଙ୍କ ସହିତ ରହୁଥିଲେ ଓ ଲଣ୍ଡନ ହିନ୍ଦୁସ୍ଥାନୀ ଆସୋସିଏସନର

ସେକ୍ରେଟାରୀ ଥିଲେ ।* ଅସଂଗଠିତ ଶ୍ରମିକମାନଙ୍କୁ ଏକତ୍ର କରି ସେମାନଙ୍କ ଭିତରେ ଭାରତୀୟତାର ଗୌରବ ଭରିଦେବା ପାଇଁ ସେ ସଂକଳ୍ପ ନେଇଥିଲେ ।

ଲଣ୍ଡନରେ ସେହି ଶ୍ରମିକମାନଙ୍କୁ ସାଧାରଣ ମଣିଷ ଭାବରେ ଗଣାଯାଏ ନାହିଁ । ସେମାନେ ସପ୍ତାହରେ ଥରେ ମଧ୍ୟ ଗାଧୋଇବାର ସୁଯୋଗ ପାଆନ୍ତି ନାହିଁ, କାରଣ ଥରେ ଗାଧୋଇବାକୁ ସେମାନଙ୍କୁ ଦୁଇ ପେନି ଖର୍ଚ୍ଚ କରିବାକୁ ପଡୁଥାଏ । ସେମାନଙ୍କ ମୋଜାରୁ ଉତ୍କଟ ଗନ୍ଧ ବାହାରୁଥାଏ । ମୋଜା ହଳେ କିଣିବା ପାଇଁ ୬ ପେନି ସେମାନଙ୍କ ପାଖରେ ନଥାଏ ବା ବଦଳାଇ ପିନ୍ଧିବା ପାଇଁ ଆଉ ହଳେ ମୋଜା ମଧ୍ୟ ନଥାଏ । ଶ୍ରମିକମାନେ ଯେଉଁ ଚା' ପିଅନ୍ତି, ସେଥିରେ ଚିନିର ପରିମାଣ କମ୍ । ଲହୁଣୀ ପରିବର୍ତ୍ତେ ସେମାନଙ୍କ ଖାନାରେ ମାର୍ଜାରିନ୍ ବ୍ୟବହୃତ ହୁଏ । ଏହି ମାର୍ଜାରିନ୍ ଚର୍ବିରୁ ତିଆରି ଓ ଏହାକୁ ଖାଇଲେ ପିତ୍ତ ହୁଏ । କିନ୍ତୁ ଭୋକିଲା ପେଟରେ ମାର୍ଜାରିନ୍ ସହଜରେ ହଜମ ହୋଇଯାଏ । ସେମାନେ ଯେଉଁ ଘରେ ରହନ୍ତି, ସେଠାରେ ଧାଡ଼ି ଧାଡ଼ି ହୋଇ ଖଟ ପଡ଼ି ତହିଁ ଉପରେ ବିଛଣା ପଡ଼ିଥାଏ । ପ୍ରତ୍ୟେକ ବିଛଣା ତଳେ ଗୋଟାଏ ଲେଖାଏଁ ପାତ୍ର ଥାଏ । ଶ୍ରମିକମାନଙ୍କର ଶୋଇବା ପାଇଁ ପୋଷାକ ନଥାଏ ବା ଖାଲି ଦେହରେ ରେଷ୍ଟ୍ ରୁମ୍‌କୁ ଯିବାର ସମ୍ଭାବନା ନଥାଏ । ତେଣୁ ରାତିରେ ପରିସ୍ରା ଲାଗିଲେ ସେମାନେ ସେହି ପାତ୍ରରେ ପରିସ୍ରା କରିଥାଆନ୍ତି ।

ଭାରତୀୟମାନଙ୍କୁ ସେଠାରେ କେହି ସମ୍ମାନଜନକ ଦୃଷ୍ଟିରେ ଦେଖନ୍ତି ନାହିଁ ବରଂ ଭାରତୀୟ ବୋଲି ପରିଚିତ ହେବା ପର୍ଯ୍ୟନ୍ତ ସେମାନେ ସାନବଡ଼ ବ୍ୟବସାୟ କରିପାରନ୍ତି । ଭାରତୀୟ ନାବିକ ଯଦି ସଞ୍ଜବେଳେ କୌଣସି ରାସ୍ତା କଡ଼ରେ ଠିଆ ହୁଅନ୍ତି, ତେବେ ପୋଲିସ୍ ତାଙ୍କୁ ଧକ୍କା ଦିଏ ନ ହେଲେ ଧରି ନେଇଯାଏ । କାରଣ ବେଳେ ବେଳେ ଭାରତୀୟ ନାବିକ ଅନ୍ୟାନ୍ୟ ଭଦ୍ରଲୋକମାନେ ଲଣ୍ଡନରେ ଅଛନ୍ତି ବୋଲି ଭୁଲିଯାଇ ଅଭଦ୍ର ଆଚରଣ କରିଥାଆନ୍ତି । ତେଣୁ ସମସ୍ତ ଭାରତୀୟ ନାବିକମାନଙ୍କୁ ଲଣ୍ଡନରେ ଅସଭ୍ୟ ବୋଲି ବିଚାର କରାଯାଏ ।

ସେ ସମୟରେ ବଙ୍ଗଳାର ପଲ୍ଲୀ ଗାଁରୁ କଲିକତା ଆସି ସିଧାସଳଖ ଲଣ୍ଡନ, ନିଉୟର୍କ ବା ସାନଫ୍ରାନ୍‌ସିସ୍‌କୋ ଯାଇ ମଧ୍ୟ ଅନେକ ଲୋକ ୟୁରୋପୀୟମାନଙ୍କ ସହିତ ମିଶିଯାଇ ପାରିଛନ୍ତି । ଭାରତୀୟ ଶ୍ରମିକମାନେ ଅଭାବ ଅସ୍ୱାସ୍ଥ୍ୟକର ପରିବେଶ ଓ ଅଶିକ୍ଷା

---

* ଆଜକେର ଆମେରିକା—ରାମନାଥ ବସୁ, ଅନୁବାଦ : ଆଜିର ଆମେରିକା—ରମେଶ ଚନ୍ଦ୍ର ପାଣିଗ୍ରାହୀ, ପୃ - ୧୧-୪୪ ।

ମଧ୍ୟରେ ଥିଲେ ମଧ୍ୟ ପ୍ରତିବାଦ ଶକ୍ତିହୀନ ଥିଲେ ବୋଲି 'ଆଜକେର ଆମେରିକା' ପୁସ୍ତକର ଲେଖକ ବିଶିଷ୍ଟ ବଙ୍ଗୀୟ ପରିବ୍ରାଜକ ରାମନାଥ ବସୁ କହନ୍ତି । ତାଙ୍କ ମତରେ ଭାରତର ବେକାର ସମସ୍ୟା ଓ ୟୁରୋପର ବେକାର ସମସ୍ୟା ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ । ଭାରତୀୟ ବେକାର କପାଳରେ ହାତମାରି କହେ, "କପାଳ ମୋର ଖରାପ, ସେଥିପାଇଁ କାମ ମିଳୁ ନାହିଁ କି ଖାଇବାକୁ ମିଳୁ ନାହିଁ ।" x x ବ୍ରିଟେନ୍‌ର ଶ୍ରମିକ ବର୍ତ୍ତମାନ ସୁନ୍ଧା ଭାବେ ଯେ କାମ କରିବାର ଅଧିକାର ତା'ର ରହିଛି, "କାମ ପାଇବ ନାହିଁ କାହିଁକି ? କିଏ ତା'ର ପ୍ରତିବନ୍ଧକ ?"(୧)

ଲଣ୍ଡନରେ କଳାଗୋରା ଭେଦ, ହିନ୍ଦୁ ଅଣହିନ୍ଦୁ ଭେଦ ଅଧିକ । ସାଧାରଣ ଭାବରେ ଜଣେ କଳା ଲୋକକୁ ସେଠି ନିମ୍ନସ୍ତରର ମଣିଷ ଭାବରେ ଗଣାଯାଏ । ସିଲ୍‌ହଟରୁ ଆସିଥିବା ମୁସଲମାନ, ହିନ୍ଦୁ ବଂଗାଳୀ, କେରଳର ମୁସଲମାନମାନେ ସେଠାରେ ଏକତ୍ର ରହିପାରୁଥିଲେ, କାରଣ ଦାରିଦ୍ର୍ୟ ଓ ନିରକ୍ଷରତା ନେଇ ସେମାନେ ଜୀବନ୍ମୃତ ଅବସ୍ଥାରେ ଥିଲେ । ଭାରତବର୍ଷରୁ ଅନେକ ଜାହାଜରେ ଖଲାସୀ କାମ କରୁ କରୁ ନିଜ ଦେଶରୁ ଆସି ଲଣ୍ଡନ ବା ଆମେରିକାରେ ବାସ କରି ରହିଯାଉଥିଲେ । ସେମାନଙ୍କୁ ଜାହାଜୀ ଆଇନ ବ୍ୟତୀତ ଆଉ କୌଣସି ଉପାୟରେ ଗିରଫ କରାଯାଇପାରେ ନାହିଁ, କାରଣ ତା'ର ଦୋଷ ସମ୍ପର୍କରେ ପ୍ରଥମେ ପ୍ରମାଣ ଖୋଜାଯାଏ । ଲୋକଟି କେଉଁ ଜାହାଜରେ ଆସିଛି ବା କେଉଁ ବନ୍ଦରରେ କେତେଦିନ ଛପି ରହିଛି, ଏସବୁ ଜାଣିବାକୁ ହେଲେ ପ୍ରଥମେ ହିନ୍ଦୁମାନଙ୍କର ସାହାଯ୍ୟ ହିଁ ନେବାକୁ ହେବ । ତେଣୁ କେହି ଏଥିପ୍ରତି ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ସେମାନଙ୍କୁ ଚିହ୍ନି ଭାରତକୁ ଫେରାଇ ଦେବା ଏକ କଷ୍ଟକର ବ୍ୟାପାର ହୋଇଥିବାରୁ କେହି ସେ ବାବଦରେ ଖୋଳତାଡ଼ ମଧ୍ୟ କରନ୍ତି ନାହିଁ । କିନ୍ତୁ ସେମାନେ ଜାଣନ୍ତି ଯେ ବେକାର ହିନ୍ଦୁ ଯୁବକଟିଏ ଅର୍ଥ ଲୋଭରେ ନିଜର ଦେଶବାସୀଙ୍କୁ ଧରାଇ ଦେଇପାରେ । ସର୍ଦ୍ଦାର ପଟେଲ ଯେତେବେଳେ ଆମେରିକା ଯାଇଥିଲେ, ସେ ଚେଷ୍ଟା କରିଥିଲେ ଯେ ଭାରତୀୟମାନେ ଅନ୍ତତଃ ନିଜ ଦେଶର ଲୋକଙ୍କ ପ୍ରତି ଏଭଳି ନିର୍ଦ୍ଦୟ ନ ହୁଅନ୍ତୁ । କିନ୍ତୁ ତାଙ୍କର ଫେରିବା ପରେ ଏ ଉପଦେଶର ଗୁରୁତ୍ୱ ଉଣା ହୋଇଯାଇଥିଲା । ପରାଧୀନ ଦେଶର ମଣିଷ ହିଁ ନିଜର ସ୍ୱାର୍ଥ ପ୍ରଥମେ ଦେଖିବ । ଦେଶପ୍ରେମ ଆଦୌ ଜାଣିନଥିବା ବ୍ୟକ୍ତି ଦେଶପାଇଁ ବିବ୍ରତ ହେବ କାହିଁକି ?

ସୁରତ ଅଲ୍ଲି ଏହିଭଳି ନିରକ୍ଷର ଭାରତୀୟଙ୍କ ଭିତରେ ଶିକ୍ଷାର ଆଲୋକ ଜଳାଇଥିଲେ । ଦରିଦ୍ରର ଜାତି ନାହିଁ ମାତ୍ର ନିଜର ଦାବି ଉପସ୍ଥାପିତ କରିବାର ଅଧିକାର

---

୧ । ଆଜିର ଆମେରିକା—ପୃଷ୍ଠା - ୪୨-୪୩ ।

ଅବଶ୍ୟ ଅଛି, ଏ ବିଷୟରେ ସେମାନେ ପ୍ରଥମଥର ପାଇଁ ସୁରତ ଅଲ୍ଲିଙ୍କ ପାଇଁ ସଚେତନ ହୋଇଥିଲେ । ତେଣୁ ମୁସଲମାନ ଭାବରେ ସେ ନୌଶ୍ରମିକଙ୍କ ପାଇଁ ପାଲଟିଯାଇଥିଲେ ଦେବଦୂତ ।

ଲଣ୍ଡନ ବା ଆମେରିକାରେ ଥିବା ହିନ୍ଦୁସ୍ତାନୀ ଲୋକମାନେ ଗୋଟିଏ ପଡ଼ାରେ ରହନ୍ତି ନାହିଁ । ସେମାନେ ଅଶିକ୍ଷିତ । ଗୋଟିଏ ସ୍ଥାନରେ ରହିବା ପାଇଁ ମଧ୍ୟ ସେମାନଙ୍କର ମାନସିକ ଶକ୍ତି ନଥାଏ । ପରାଧୀନ ଦେଶର ଲୋକେ ସ୍ୱାଧୀନ ଦେଶକୁ ଯାଇ ତାଙ୍କ ସହିତ ମିଶି ରହିବା କଷ୍ଟକର । ମାତ୍ର ଯେଉଁମାନେ ମୁଷ୍ଟିମେୟ ଭାରତୀୟ ଲଣ୍ଡନରେ ଯାଇ ବିଶେଷ ସୁନାମ ଅର୍ଜନ କରିଥିଲେ, ସେମାନଙ୍କ ଭିତରୁ ଭାରତୀୟ ନାବିକ ସୁରତ ଅଲ୍ଲି ଅନ୍ୟତମ । ଏହି ଅଭାବୀ ଶ୍ରମିକମାନଙ୍କ ବ୍ୟବହାର ପାଇଁ ସେ ପ୍ରଥମେ ପୁରୁଣା ଲୁଗାପଟା ଫେରି କରି ବିକ୍ରି କରିଛନ୍ତି । ଛୋଟ ଛୋଟ ଚକୋଲେଟ୍ ଭଳି ମିଠାଇ ମୁଣ୍ଡରେ ବୋହି ଶ୍ରମିକ ବସ୍ତିର ବାଳକବାଳିକାଙ୍କୁ ବିକ୍ରି କରିଛନ୍ତି । ସେମାନଙ୍କ ସହିତ ବସ୍ତିର ଅସ୍ୱାସ୍ଥ୍ୟକର ପରିବେଶରେ ରହି ଦୃଷ୍ଟିଶକ୍ତି ଅଦିନରେ ନଷ୍ଟ କରିଛନ୍ତି । ସେଠାରେ ଶ୍ରମିକ ପାଇଁ ବର୍ଣ୍ଣବିଦ୍ୱେଷ ନୀତି କେତେ ଦୁର୍ବିସହ ହୋଇପଡ଼େ, ତାହା ଅଙ୍ଗେ ଲିଭାଇଛନ୍ତି । ତେଣୁ ସେ ଭାରତର ବିଶିଷ୍ଟ ପର୍ଯ୍ୟଟକ ରାମନାଥ ବସୁଙ୍କ * ସହିତ ସମ୍ପର୍କିତ ହୋଇଥିଲେ । ଏହିଭଳି ସର୍ବହରା ତଥା ନିରକ୍ଷର ମଣିଷମାନଙ୍କ ଭିତରୁ କେତେକଙ୍କର ଠିକଣା ମଧ୍ୟ ବସୁ ମହାଶୟଙ୍କୁ ପ୍ରଦାନ କରିଥିଲେ । ନିଉୟର୍କରେ ଅନେକ ବଂଗୀୟ ବ୍ୟକ୍ତି ଅଛନ୍ତି ଯେଉଁମାନେ ନିରକ୍ଷର । ସେମାନଙ୍କ ଠିକଣା ମଧ୍ୟ ବସୁ ମହାଶୟ ସୁରତ ଅଲ୍ଲିଙ୍କ ନିକଟରୁ ଆଣିଥିଲେ । ମାତ୍ର ପରିବ୍ରାଜକର ଦୃଷ୍ଟି ନେଇ ନିଉୟର୍କରେ ପହଞ୍ଚିବା ବେଳକୁ ସେ ଏହି ସମସ୍ୟାର ଗମ୍ଭୀରତା ସମ୍ପର୍କରେ ଭୁଲି ଯାଇଥିଲେ ବୋଲି ନିଜର ଭ୍ରମଣ କାହାଣୀରେ ଉଲ୍ଲେଖ କରିଛନ୍ତି । କିନ୍ତୁ ଏହି ଶ୍ରମିକମାନଙ୍କ ବସ୍ତିରେ ସେ ଏକାଧିକ ଥର ନିଜର ଅନୁଭୂତି ବର୍ଣ୍ଣନା କରି ଭାଷଣ ଦେଇଛନ୍ତି ।

ଯେଉଁ ଭାରତୀୟମାନେ ଅଭାବରେ ପଡ଼ି ଦେଶ ଛାଡ଼ିଥାଆନ୍ତି, ସେମାନେ ଲଣ୍ଡନରେ ବହୁଭାବରେ ଅସୁବିଧା ଭୋଗନ୍ତି । ସେମାନେ ବାହାରେ ଖାଇବା ବେଳେ କଣ୍ଟା ଚାମଚ ବ୍ୟବହାର କରନ୍ତି; ମାତ୍ର ଘର ଭିତରେ ଦୁଆର କିଳି ଡାହାଣ ହାତ

---

* ରାମନାଥ ବସୁ ଜଣେ ବଙ୍ଗୀୟ ପର୍ଯ୍ୟଟକ, ଯିଏ ନିଜର ସାଇକେଲ ଧରି ବିଶ୍ୱ ପରିକ୍ରମା କରିଥିଲେ । ସେ ବିଭିନ୍ନ ସ୍ଥାନରେ ରହଣି କାଳରେ ସେ ସ୍ଥାନର ଦାରିଦ୍ର୍ୟକୁ ନିକଟରୁ ପ୍ରତ୍ୟକ୍ଷ କରିଥିଲେ । ତାଙ୍କର ଏକାଧିକ ଭ୍ରମଣ କାହାଣୀ ରହିଛି । ସୌଭାଗ୍ୟ କ୍ରମେ ତାଙ୍କ ଭ୍ରମଣ କାହାଣୀର ଓଡ଼ିଆ ଅନୁବାଦ ୧୯୫୦ରେ ରମେଶ ଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା କରାଯାଇଛି ।

ବ୍ୟବହାର କରି ଭାରତୀୟମାନଙ୍କ ଭଳି ଖାଆନ୍ତି । ସେମାନଙ୍କ ଘରର ଦୁଆର ପ୍ରାୟ ସବୁବେଳେ ବନ୍ଦ ଥାଏ । କାରଣ ସେମାନଙ୍କ ଭିତରେ ଆତ୍ମହୀନମନ୍ୟତା ଥାଏ ପ୍ରଚୁର । କାଳେ ହାତରେ ଖାଇଲେ ସେମାନେ ଭଦ୍ର ସମାଜର ଉପଯୋଗୀ ହୋଇପାରିବେ ନାହିଁ । ଦେଶକୁ ଫେରିଯିବାର ଆଶା ଛାଡ଼ିଦେଇଥିବା ଏହି ଶ୍ରମିକମାନେ ଯେଉଁ ଦେଶରେ ଅଛନ୍ତି, ସେହି ଦେଶର ଚାଲିଚଳଣିକୁ ଅନ୍ଧ ଭାବରେ ଅନୁକରଣ କରି ଚାଲନ୍ତି ଓ ତାହାକୁ ହିଁ ସଭ୍ୟତା ବୋଲି ଧରିନିଅନ୍ତି । କେହି କେହି ବିଦେଶୀ ଆଦବ କାଇଦା ଓ ସାମାନ୍ୟ ମଜୁରୀ ପାଇବା ପରେ ଦେଶକୁ ଫେରିବାକୁ ଚାହାନ୍ତି ନାହିଁ, କାରଣ ଦେଶରେ ସେମାନଙ୍କ ପାଇଁ ଆଶ୍ରୟ ନାହିଁ ବରଂ ହିଂସା ଓ ପରଶ୍ରୀକାତରତା ହିଁ ଅଛି ବୋଲି ସେମାନେ ସିଧାସଳଖ ମତ ପ୍ରକାଶ କରିଥାଆନ୍ତି ।

ଅଳ୍ପ କେତେକ ଭାରତୀୟ ଲଣ୍ଡନରେ ସ୍ୱଚ୍ଛନ୍ଦ ଜୀବନଯାପନ କରନ୍ତି । ସେମାନେ ସମ୍ମାନ ପାଆନ୍ତି ନାହିଁ ମାତ୍ର କିଛି ସୁଖ ସ୍ୱାଚ୍ଛନ୍ଦ୍ୟ ପାଆନ୍ତି । ଅଳ୍ପ ଖର୍ଚ୍ଚରେ ଅଧିକ ଆରାମ ପାଇବା ପରେ ଆଉ ଦେଶପାଇଁ ଭାବପ୍ରବଣ ହେବା ମଧ୍ୟ ସେମାନେ ଉଚିତ ମଣନ୍ତି ନାହିଁ ବରଂ ଭାରତର ଗାଁଗଣ୍ଡାରୁ ବିଦେଶ ପଳାଇ ଯାଉଥିବା ଲୋକେ ସେହି ଯଥାସମ୍ଭବ ସ୍ୱାଚ୍ଛନ୍ଦ୍ୟରେ ଅଭିଭୂତ ହୋଇପଡ଼ନ୍ତି ଓ ନିଜକୁ ନିଜ ଦେଶର ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ବିଚାର କରି ଆରାମଦାୟକ ଜୀବନରେ ଅଭ୍ୟସ୍ତ ହୋଇଯାଆନ୍ତି ।

**ସ୍ୱାଧୀନତା ଆନ୍ଦୋଳନ ଓ ଭାରତୀୟ କମ୍ୟୁନିଷ୍ଟ ପାର୍ଟି :**

ଋଷ୍ ବିପ୍ଳବର ଅପାର ସଫଳତା ପରେ ୧୯୨୦ ମସିହା ବେଳକୁ ଭାରତରେ କମ୍ୟୁନିଷ୍ଟ ପାର୍ଟିର ଉତ୍‌ଥାନ ହୋଇଥିଲା । କିନ୍ତୁ ସ୍ୱାଧୀନତା ପର୍ଯ୍ୟନ୍ତ କମ୍ୟୁନିଷ୍ଟ ସୋସିଆଲିଷ୍ଟମାନେ କଂଗ୍ରେସ ସହିତ ଏକତ୍ର ରହି ଜାତୀୟ ମୁକ୍ତି ସଂଗ୍ରାମ ଚଳାଉଥିଲେ । "The left composed partly of Socialist sections and Militant anti Imperialists began to exercise immense influence on the Congress Workers & Masses." (Indian Freedom Struggle & Communist Party in India—M. Farroqi, P.-22. Communist Party Publication, 1997). ପ୍ରଥମ ବିଶ୍ୱଯୁଦ୍ଧ ପରେ କୃଷକ ଓ ଶ୍ରମିକମାନଙ୍କ ମଧ୍ୟରେ ଶ୍ରେଣୀ ଚେତନା ସୃଷ୍ଟି ହୋଇଥିଲା । ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନ ମୁସଲମାନମାନଙ୍କର ଖିଲାଫତ ଆନ୍ଦୋଳନ ସହିତ ମିଶି ହିନ୍ଦୁ ମୁସଲମାନ ଏକତା ସ୍ଥାପନ ଦିଗରେ ସହାୟକ ହୋଇଥିଲା । ମାଲବାରର ଶ୍ରମିକ ଆନ୍ଦୋଳନ ଓ ଚୌରିଚୌରା ଆନ୍ଦୋଳନ ଭିତରେ ହିଂସାତ୍ମକ ବିଦ୍ରୋହ ରୂପ ପରିଗ୍ରହ କରିଥିଲା । ଗାନ୍ଧିଜୀ ଏଥିରେ

କ୍ଷୁବ୍ଧ ହୋଇ ଆନ୍ଦୋଳନ ବନ୍ଦ କରିବାର ଡାକରା ଦେଇଥିଲେ, ଯାହାକି ବିପ୍ଲବୀ ଓ ପ୍ରଗତିଶୀଳ ଯୁବଗୋଷ୍ଠୀଙ୍କୁ ଖୁବ୍ ନିରୁତ୍ସାହିତ କରିଥିଲା । ସେମାନେ ଗାନ୍ଧିଜୀଙ୍କ ଆଦର୍ଶ ଛାଡ଼ି ମାର୍କସ ଓ ଲେଲିନଙ୍କ ପ୍ରବର୍ତ୍ତିତ ସାମ୍ୟବାଦୀ ଦର୍ଶନ ପ୍ରତି ଆଗ୍ରହୀ ହୋଇଥିଲେ । ଏହି ଚେତନାର ସମର୍ଥକ ଭାବରେ ଆମେ ନେତାଜୀ ସୁଭାଷ ବୋଷଙ୍କୁ ଜାଣୁ । ୧୯୧୮ ମସିହାରେ ବମ୍ବେ ସୂତାକଳରେ ଧର୍ମଘଟ ହେଲା ଓ ଏଥିରେ ବିପୁଳ ସଂଖ୍ୟାରେ ଶ୍ରମିକମାନେ ଯୋଗ ଦେଇଥିଲେ । ୧୯୨୦ ମସିହାର ପ୍ରଥମ ଛଅ ମାସରେ ଦେଶର ବିଭିନ୍ନ ସ୍ଥାନରେ ପ୍ରାୟ ୨୦୦ ଧର୍ମଘଟ ହୋଇଥିଲା । ଏହିବର୍ଷ ଲାଲା ଲଜପତ୍ ରାୟଙ୍କ ନେତୃତ୍ୱରେ ଅଖିଳ ଭାରତୀୟ ଟ୍ରେଡ୍ ୟୁନିୟନ କଂଗ୍ରେସ ଗଠିତ ହୋଇଥିଲା । ୧୯୧୯ ମସିହାରେ ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ଫଳରେ ଗଣାଯାଇଥିଲା ଯେ ଭାରତରେ ଉପନିବେଶବାଦୀ ଓ ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକର ପତନ ଆସନ୍ନ । ଦେଶର ବହୁ ଶିକ୍ଷିତ ଚିନ୍ତାଶୀଳ ଯୁବକ ଏହି ପରିବର୍ତ୍ତନର ସମ୍ବାଦ ରଖୁଥିଲେ ଓ ସେହି ନବପ୍ରତିଷ୍ଠିତ ସାମ୍ୟବାଦୀ ଚେତନାରେ ଉଦ୍‌ବୁଦ୍ଧ ମଧ୍ୟ ହୋଇଥିଲେ ।

**ଓଡ଼ିଶାରେ ମାର୍କସବାଦୀ ଚେତନାର ପ୍ରସାର :**

ପ୍ରଥମେ ପଣ୍ଡିତ ଗୋପବନ୍ଧୁ ଦାସ ଅକ୍ଟୋବର ବିପ୍ଳବ ବିଷୟରେ ସମାଜରେ ଲେଖିଥିଲେ । ୧୯୨୭ର ଏହି ବିପ୍ଳବ ପରବର୍ତ୍ତୀ କାଳରେ ସମଗ୍ର ବିଶ୍ୱରେ ଆଲୋଡ଼ନ ସୃଷ୍ଟି କରିଥିଲା । ଉତ୍କଳ ସମ୍ମିଳନୀକୁ ଜାତୀୟ କଂଗ୍ରେସର ମହାସ୍ରୋତ ସହିତ ସାମିଲ କରିବା ଥିଲା ଗୋପବନ୍ଧୁଙ୍କ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀର ଗୋଟିଏ ଦୃଷ୍ଟାନ୍ତ । ୨-୭-୧୯୨୪ 'ସମାଜ'ର ସମ୍ପାଦକୀୟରେ ସେ ଲେଲିନଙ୍କ ଆଦର୍ଶ ସମ୍ପର୍କରେ ବହୁ ଉଚ୍ଚକୋଟିର ମନ୍ତବ୍ୟ ଦେଇଛନ୍ତି । (ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା, ପୃଷ୍ଠା-୧୭୫) । ୨-୧-୧୯୨୬ରେ ସେ କମ୍ୟୁନିଷ୍ଟ ନୀତି ସପକ୍ଷରେ ମତ ଦେଇଥିଲେ । ଏହି ସମୟରେ ତାଙ୍କଦ୍ୱାରା 'କଲିକତା ଓଡ଼ିଆ ସମାଜ' ଓ 'କଲିକତା ଶ୍ରମିକ ମଣ୍ଡଳୀ' ଗଠିତ ହୋଇଥିଲା । ଏହା କଲିକତାରେ ଥିବା ଓଡ଼ିଆ ଶ୍ରମିକମାନଙ୍କୁ ସଂଗଠିତ କରିବାର ଦାୟିତ୍ୱ ନେଇଥିଲା । ଏହା ୬ ବର୍ଷ ଧରି କାର୍ଯ୍ୟ କରି ଶ୍ରମିକ ସ୍ୱାର୍ଥରକ୍ଷାରେ ସମର୍ଥ ହୋଇଥିଲା । ଗୋପବନ୍ଧୁ କମ୍ୟୁନିଷ୍ଟ ନଥିଲେ, ତଥାପି ପରିବର୍ତ୍ତିତ ସମାଜ ବ୍ୟବସ୍ଥା ଓ ସାମ୍ୟବାଦୀ ଆଭିମୁଖ୍ୟ ସମ୍ପର୍କରେ ସେ ସଚେତନ ଥିଲେ ।

ଭାରତୀୟ ଜାତୀୟ କଂଗ୍ରେସରେ ସେହି ସମୟରେ ବାମପନ୍ଥୀ ଚେତନାର ଅଭ୍ୟୁଦୟ ହୋଇଥିଲା । ଏହି ମତରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ କଂଗ୍ରେସରେ ଥିଲେ ଓ ଜାତୀୟ ମୁକ୍ତି ଆନ୍ଦୋଳନକୁ ନୂଆ ମୋଡ଼ ଦେବାକୁ ପ୍ରୟାସ କରିଥିଲେ ।

ସାମ୍ୟବାଦୀ ରାଷ୍ଟ୍ର ସୋଭିଏତ ଋଷର ଶାସନ ଓ ସମାଜ ବ୍ୟବସ୍ଥା ସେମାନଙ୍କ ଆଗ୍ରହକୁ ବହୁଗୁଣିତ କରୁଥିଲା । ଯୁବକ ବଂଶୀଧର ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ ହୋଇଥିଲେ । ହୁଏତ ତାଙ୍କର ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀରେ ନିପୀଡ଼ିତ ଜନତା ପ୍ରତି ଆଗ୍ରହ କ୍ରମେ ଦାନା ବାନ୍ଧିଥିବ, ଯାହାକୁ ରୂପ ଦେବାପାଇଁ ସେ ସୁଯୋଗର ଅପେକ୍ଷାରେ ଥିବେ; କିନ୍ତୁ ଯେଉଁ ସମୟରେ ସେ ବଞ୍ଚୁଥିଲେ, ସେ ସମୟରେ ଓଡ଼ିଶାରେ ତାଙ୍କର ଚିନ୍ତାଧାରା ଠିକ୍ ଭାବରେ ଗୃହୀତ ହୋଇନଥିଲା । ଗୋପବନ୍ଧୁଙ୍କର ଦେହାନ୍ତ ମଧ୍ୟ ତାଙ୍କର ଆତ୍ମବଳ ଭାଙ୍ଗି ଦେଇଥିଲା । ହୁଏତ ଶ୍ରମିକ ସ୍ୱାର୍ଥରକ୍ଷା ଭଳି ବ୍ୟାପାର ଓଡ଼ିଶାରେ ଏତେ ଗୁରୁତ୍ୱପୂର୍ଣ୍ଣ ବିବେଚିତ ହୋଇନଥିଲା । କାରଣ ସେ ସମୟରେ ଓଡ଼ିଶାରେ ଶ୍ରମିକ କହିଲେ କେବଳ କୃଷକମାନଙ୍କୁ ହିଁ ବୁଝାଇଥିଲା ।

**ସାମ୍ୟବାଦର ମୂଳକଥା :**

୧୯୨୮ ମସିହାରେ ବଂଶୀଧର ଦେଶ ଛାଡ଼ିଲେ । ୧୯୨୬ ମସିହାରେ ବ୍ରିଟେନର ଫିଲିପ ସ୍ପାର୍ଟ ଭାରତ ଆସିଥିଲେ ଓ ସେହିବର୍ଷ ଡିସେମ୍ବର ମାସରେ ସେ କେତେକ ୟୁନିୟନ ଗଠନ କରିଥିଲେ । କେତୋଟି ଖବରକାଗଜ ବାହାର କରାଇଲେ । ସେ କେତେକ ଯୁବପରିଷଦ ମଧ୍ୟ ସୃଷ୍ଟି କରିଥିଲେ । ୧୯୨୮ ଡିସେମ୍ବର All India Workers and Peasants' Party ଗଠିତ ହେଲା । ବମ୍ବେରେ କମ୍ୟୁନିଷ୍ଟ ପାର୍ଟି ତରଫରୁ ଗୋଟିଏ Industrial Strike କରାଯାଇଥିଲା ।

କେବଳ ଭାରତରେ ଯେ ଶ୍ରମିକ ଶକ୍ତି ଏକଜୁଟ ହୋଇ ଶୋଷଣର ତୀବ୍ର ପ୍ରତିବାଦ କରିଥିଲା ତାହା ନୁହେଁ, ସମଗ୍ର ବିଶ୍ୱରେ ଶ୍ରମିକ ସପକ୍ଷରେ ମତ ଦାନା ବାନ୍ଧିଥିଲା ଓ କମ୍ୟୁନିଷ୍ଟ ପାର୍ଟି ଏହି ଶ୍ରମିକର ସ୍ୱାର୍ଥ ରଖିବା ପାଇଁ କାର୍ଯ୍ୟକ୍ରମ ହାତକୁ ନେଇଥିଲା । ୧୯୩୨-୩୩ ସମୟ ହେଉଛି ମିରଟ୍ କନ୍ସ୍ପିରେସିର ସମୟ । ଏହା ତିନିବର୍ଷରୁ ଊର୍ଦ୍ଧ୍ୱ ବିଚାରାଧୀନ ଥିଲା ଓ ୨୭ ଜଣଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇଥିଲା । ସେମାନଙ୍କ ଭିତରୁ ଅନେକ ଥିଲେ ଜାତୀୟବାଦୀ ତଥା ଟ୍ରେଡ଼ ୟୁନିୟନର କର୍ମକର୍ତ୍ତା) ଶ୍ରମିକ ସଂଘର କର୍ମକର୍ତ୍ତା ଭାବରେ ସୁରତ ଅଲ୍ଲି ଏଥିପାଇଁ ଖୁବ୍ ଦୁଃଖ ପ୍ରକାଶ କରିଥିଲେ ।

ଭାରତ ସ୍ୱାଧୀନତା ଲାଭ କରିବା ପଛରେ ଏହିଭଳି ଅନେକ ସ୍ୱାର୍ଥ ତ୍ୟାଗର ଘଟଣା ରହିଛି, ଯାହା ବର୍ତ୍ତମାନ ପର୍ଯ୍ୟନ୍ତ ଲିପିବଦ୍ଧ ହୋଇ ନାହିଁ ବା ଇତିହାସର ପରିସରଭୁକ୍ତ ହୋଇପାରି ନାହିଁ । ସୁରତ ଅଲ୍ଲି ନିଜର ବ୍ୟକ୍ତିଗତ ସୁଖ-ସନ୍ତୋଷକୁ ପାଦରେ ଆଡ଼େଇ ବିଶ୍ୱର ଶ୍ରମିକ ଜନତା ପ୍ରତି ଯେଉଁ ଆତ୍ମୀୟତା ପ୍ରକାଶ କରିଥିଲେ, ତାହା

ଚିରଦିନ ଇତିହାସର ଅନ୍ଧକାରେରେ ରହିଗଲା । ଯେଉଁ ଶ୍ରମିକମାନଙ୍କୁ ସମ୍ମାନ ଦେଇ କାର୍ଲମାର୍କସ୍, ଭି.ଆଇ. ଲେନିନ, ମାଓ ସେ ତୁଙ୍ଗ୍ ପ୍ରଭୃତି ବିଶ୍ୱରେ ସମ୍ମାନିତ, ସେହି ଶ୍ରମିକର ସ୍ୱାର୍ଥରକ୍ଷା ପାଇଁ ସୁରତ ଅଲ୍ଲି ନାମକ ଏକ ଭାରତୀୟ ଭାରତ ବାହାରେ କିଭଳି କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ, ତାହା ବାସ୍ତବରେ ପ୍ରଶଂସାର ଯୋଗ୍ୟ ।

**ଲଣ୍ଡନରେ ସୁରତ ଅଲ୍ଲି :**

ଲଣ୍ଡନରେ ପପ୍‌ଲାର୍ କାଉଣ୍ଟିଂ ଟାଉନ୍‌ରେ ବିଶ୍ୱ ନାବିକ ଆସୋସିଏସନର ଦପ୍ତରରେ ଅବସ୍ଥାପିତ ହେବା ପରେ ଭାରତର ସ୍ୱାଧୀନତା ଆନ୍ଦୋଳନ ସହିତ ତାଙ୍କର ଘନିଷ୍ଠ ଯୋଗାଯୋଗ ସ୍ଥାପିତ ହେଲା । ୧୯୧୭ ମସିହାରେ ସ୍ଥାପିତ ଏହି ସଂସ୍ଥା ନବସଂସ୍ଥାପିତ ସୋଭିଏତ୍ ଦେଶ ଉପରେ ଇଂଲଣ୍ଡ ଓ ଫ୍ରାନ୍‌ସର ଆକ୍ରମଣ ଅଭିଯାନକୁ ସୈନ୍ୟବାହିନୀ ଓ ଯୁଦ୍ଧ ଅସ୍ତ୍ର ଯୋଗାଣ ବନ୍ଦ କରିଦେଇ ଭଣ୍ଡୁର କରି ଦେଇଥିଲା । ସୁରତ ଅଲ୍ଲି ବିଲାତର Labour Party ସଂସ୍ପର୍ଶରେ ଆସିଲେ ଓ Labour Party ଜାତୀୟ କମିଟିର ସଭ୍ୟ ହୋଇଥିଲେ । ସେ ପପ୍‌ଲାର କାଉଣ୍ଟିଂ ପାର୍ଟିର ସେକ୍ରେଟାରୀ ନିର୍ବାଚିତ ହୋଇଥିଲେ ।

ସେତେବେଳେ ବିଲାତର କମ୍ୟୁନିଷ୍ଟ ପାର୍ଟି ଶ୍ରମିକ ଆନ୍ଦୋଳନ କ୍ଷେତ୍ରରେ ଲେବର ପାର୍ଟିର ସହଯୋଗୀ ଥିଲେ । ସେହି ସୂତ୍ରରେ ସୁରତ ଅଲ୍ଲି ବିଲାତର ପ୍ରଧାନ ପ୍ରଧାନ କମ୍ୟୁନିଷ୍ଟ ନେତାଙ୍କ ସଂସ୍ପର୍ଶରେ ମଧ୍ୟ ଆସିଲେ । ସେହି ବିଶିଷ୍ଟ କମ୍ୟୁନିଷ୍ଟ ନେତାମାନେ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନରେ ପ୍ରତ୍ୟକ୍ଷ ତଥା ପରୋକ୍ଷ ଭାବରେ ସଂଶ୍ଲିଷ୍ଟ ଥିଲେ । ସେମାନେ ହେଲେ—ବ୍ରାଡ଼ଲେ, ଫିଲିପ୍ସ ସ୍ପ୍ରାଟ, ରଜନୀ ପାମିଦତ୍ତ, ହ୍ୟାରି ପୋଲିଟ୍ ଇତ୍ୟାଦି ।

ପପ୍‌ଲାରରେ ତାଙ୍କର ବାସଗୃହ ମଧ୍ୟ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରାଣକେନ୍ଦ୍ରରେ ପରିଣତ ହୋଇଥିଲା । ସେଠାକୁ ଅଟଲି, ହର୍ବାଟ୍ ମୋରିସନ, ବିରନ୍, ପେଥକ୍ ଲରେନ୍‌ସ, ଷ୍ଟାଫୋର୍ଡ କ୍ରିପସ, ଆଲେକଜାଣ୍ଡାର ଇତ୍ୟାଦି ଶ୍ରମିକ ପାର୍ଟିର ନେତାମାନଙ୍କର ଯିବାଆସିବା ଥିଲା ।

ସାର୍ ଷ୍ଟାଫୋର୍ଡ କ୍ରିପ୍‌ସ ଜବାହାରଲାଲଙ୍କ ସମବୟସ୍କ । ସେ ଥିଲେ ଶ୍ରମିକ ଦଳର ବାମପନ୍ଥୀ ଗୋଷ୍ଠୀର ସଭ୍ୟ । ସାମ୍ରାଜ୍ୟବାଦର ଘୋର ବିରୋଧୀ ଥିଲେ । ୧୯୩୯ ମସିହା ସେପ୍ଟେମ୍ବର ମାସରେ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ କ୍ରିପ୍‌ସ ଏକାଧିକ ବାର ଭାରତ ଆସିଥିଲେ । ପ୍ରଥମ ଥର ୧୯୩୯ ମସିହା ଡିସେମ୍ବରରେ ସେ ନେହେରୁଙ୍କ

ସହିତ ବିଶ୍ୱର ସାଂପ୍ରତିକ ପରିସ୍ଥିତି ସମ୍ପର୍କରେ ଆଲୋଚନା କରିଥିଲେ । ୧୯୪୨ ମସିହା ମାର୍ଚ୍ଚରେ ସେ ଆସି ଭାରତୀୟମାନଙ୍କୁ ଦେଶରକ୍ଷାର ଭାର ପ୍ରଦାନ ସପକ୍ଷରେ ଯୁକ୍ତି କରିଥିଲେ । ମାର୍ଚ୍ଚ ୨୬ ତାରିଖରେ ସେ ନୂଆଦିଲ୍ଲୀରେ ଭାରତୀୟ ନେତାମାନଙ୍କ ସହିତ ଆଲୋଚନା କରିଥିଲେ । ଆଲୋଚନାର ମୁଖ୍ୟ ବିଷୟ ଥିଲା ଯେ ଯୁଦ୍ଧ ପରେ କାନାଡା ଓ ଅଷ୍ଟ୍ରେଲିଆ ପରି ଭାରତ ବ୍ରିଟିଶ ସମ୍ରାଟଙ୍କ ଅଧୀନରେ ଏକ ଡୋମିନିୟନ ଭାବରେ ବିବେଚିତ ହେବ । ସଂଖ୍ୟାନୁପାତିକ ଭୋଟ୍‌ଦ୍ୱାରା ନିର୍ବାଚିତ ଏକ କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲି ବା ସମ୍ବିଧାନ ପ୍ରଣୟନକାରୀ ସଭା ଭାରତର ସମ୍ବିଧାନ ପ୍ରଣୟନ କରିବେ । ଏ ସଭାର ସଦସ୍ୟମାନେ ରାଜ୍ୟ ବିଧାନସଭା ଦ୍ୱାରା ନିର୍ବାଚିତ ହେବେ । କୌଣସି ପ୍ରଦେଶ ଯଦି କେନ୍ଦ୍ରରୁ ସ୍ୱତନ୍ତ୍ର ରହିବାକୁ ଚହେଁ, ତା'ହେଲେ ପ୍ରଦେଶର ସେ ଅଧିକାର ସ୍ୱୀକୃତ ହେବ । ଯୁଦ୍ଧ କାଳରେ ବ୍ରିଟିଶ ସରକାରଙ୍କ ନିୟନ୍ତ୍ରଣରେ ପରିଚାଳିତ ଦେଶରକ୍ଷା ଉଦ୍ୟମରେ ଭାରତବାସୀ ପୂର୍ଣ୍ଣ ସହଯୋଗ କରିବେ । ମାର୍ଚ୍ଚ ୨୭ ତାରିଖରେ କ୍ରିପ୍‌ସ ମହାତ୍ମା ଗାନ୍ଧିଙ୍କୁ ସାକ୍ଷାତ କରିଥିଲେ । ଏହା ପୂର୍ବରୁ ସେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ସାର୍ ଉଇନ୍‌ଷ୍ଟନ ଚର୍ଚ୍ଚିଲଙ୍କ ସହିତ କଥାବାର୍ତ୍ତା କରିଥିଲେ ଓ ଭାରତର ଭାଇସରାୟ ଲିନ୍‌ଲିଥ୍‌ଗୋଙ୍କ ସହିତ ମଧ୍ୟ ଯୋଗାଯୋଗ କକରିଥିଲେ । ମାତ୍ର କ୍ରିପ୍‌ସଙ୍କର ଏହି ଚିନ୍ତାଧାରା କୌଣସି ମତେ ଗାନ୍ଧିଜୀ ପ୍ରଭୃତିଙ୍କର ଗ୍ରହଣଯୋଗ୍ୟ ହୋଇନଥିଲା ।

କ୍ରିପ୍‌ସ ମନେ କରିଥିଲେ ନେହେରୁଙ୍କ ସହିତ ତାଙ୍କର ସମ୍ପର୍କ ହୁଏତ ତାଙ୍କ କାର୍ଯ୍ୟକୁ ସହଜସାଧ କରିବ; ମାତ୍ର ଏହା ଭୁଲ୍ ପ୍ରମାଣିତ ହୋଇଥିଲା । ଏହି ନେତୃବର୍ଗ ସହିତ ସଂପୃକ୍ତି ଫଳରେ ସୁରତ ଅଲ୍ଲି ଭାରତର ସ୍ୱାଧୀନତା ସଂଗ୍ରାମର ଅଗ୍ରଗତି ସଂମ୍ପର୍କରେ ବିଶେଷ ଖବର ପାଉଥିଲେ । ଦରିଆପାରି ଭାରତୀୟମାନେ କିଭଳି ଦେଶପାଇଁ ବିବ୍ରତ ହେଉଥିଲେ, ସେ ଖବର ମଧ୍ୟ ତାଙ୍କ ପାଖରେ ଥିଲା । ଲେବର ପାର୍ଟି ଓ କମ୍ୟୁନିଷ୍ଟ ପାର୍ଟି ଉଭୟର ନେତୃବର୍ଗଙ୍କ ପାଇଁ ତାଙ୍କର ଦ୍ୱାର ଥିଲା ଅବାରିତ । ତେଣୁ ସେ କଳ୍ପନା କରିଥିଲେ ଯେ ଭାରତର ମୁକ୍ତିସଂଗ୍ରାମ ଖୁବ୍ ଶୀଘ୍ର ପରିଣତିରେ ପହଞ୍ଚିବ ଓ ଖୁବ୍ ଶୀଘ୍ର ସର୍ବହରାର ସାମ୍ରାଜ୍ୟ ପ୍ରତିଷ୍ଠିତ ହେବ । ତେଣୁ ଭାରତର ଯେଉଁ ଭବିଷ୍ୟତକୁ ସେ ସ୍ୱପ୍ନରେ ଦେଖୁଥିଲେ, ତା'ର ବାସ୍ତବ ରୂପ ଦେଖିବା ପାଇଁ ସୁରତ ଅଲ୍ଲି ପ୍ରାଣପାତ ଉଦ୍ୟମ କରିଥିଲେ । ସତେ ଯେପରି ତାଙ୍କ ଦପ୍ତର ବିଲାତରେ ଭାରତୀୟ ମୁକ୍ତିସଂଗ୍ରାମର 'ମିନି ଦୂତାବାସ' ପାଲଟି ଯାଇଥିଲା ।

ବିଶ୍ୱ ଶ୍ରମିକ ଆସୋସିଏସନର ସାଂଗଠନିକ କାର୍ଯ୍ୟ କରିବା ପାଇଁ ଏକାଧିକ ଥର ସୁରତ ଅଲ୍ଲିଙ୍କୁ ଜାହାଜରେ ପୃଥିବୀ ପରିକ୍ରମା କରିବାକୁ ହୋଇଛି । ନିଉୟର୍କ,

ଲସ୍‌ଏଞ୍ଜେଲସ୍, ସାନ୍‌ଫ୍ରାନ୍‌ସିସକୋ, ପୁଣି ଫିଲାଡେଲ୍‌ଫିଆ, ବାଲଟିମୋର, ୟୁକୋହାମା (ଟୋକିଓର ଏକ ବନ୍ଦର) । ଏ ସବୁ ସ୍ଥାନରେ ନାବିକମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ କାମ କରିଛନ୍ତି । କେଉଁଠି ସେମାନଙ୍କ ପିଲାଙ୍କ ପାଇଁ ସ୍କୁଲ ହେବାକୁ ସୁପାରିଶ କରିଛନ୍ତି ତ କେଉଁଠି ସେମାନଙ୍କର Service security ପାଇଁ କର୍ତ୍ତୃପକ୍ଷଙ୍କୁ ଜଣାଇଛନ୍ତି । ଅସଙ୍ଗଠିତ ଏହି ନାବିକମାନଙ୍କୁ ସଙ୍ଗଠିତ କରି ସେମାନଙ୍କ ଭିତରେ ଭ୍ରାତୃଭାବନା ଜାଗ୍ରତ କରିବାରେ ସେ ନିଜର ସାଂଗଠନିକ ଶକ୍ତିର ପରିଚୟ ଦେଇଛନ୍ତି । ବିଶେଷ କରି ଭାରତୀୟ ନାବିକ ସଂଘର By-law ମଧ୍ୟ ତିଆରି କରିଛନ୍ତି । ସେମାନଙ୍କ କାର୍ଯ୍ୟଦକ୍ଷତା ବୃଦ୍ଧି ଦିଗରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ ।

**ବିଲାତରେ କେତୋଟି ସ୍ମରଣୀୟ ଘଟଣା :**

ସୁରତ ଅଲ୍ଲି ପ୍ରଭାବଶାଳୀ ବିଶ୍ୱ ଶ୍ରମିକ ସଂସ୍ଥାର ଗୁରୁତ୍ୱପୂର୍ଣ୍ଣ ପଦବୀ ଅଳଙ୍କୃତ କରିବାର ସମୟ ପ୍ରାୟ ୧୯୩୪-୩୫ । ସେତେବେଳକୁ ଅସହଯୋଗ ଆନ୍ଦୋଳନ ପ୍ରାୟ ସରି ଆସିଥାଏ । ନିକଟ ଭବିଷ୍ୟତରେ ମୁକ୍ତି ଯେ ଅବଶ୍ୟମ୍ଭାବୀ ଏ ଧାରଣା ଭାରତୀୟମାନଙ୍କ ମନରେ ଦୃଢ଼ ହେଉଥାଏ । ଦରିଆପାରିର ଭାରତୀୟମାନଙ୍କୁ ଏକାଠି କରି ଏହି ଆନ୍ଦୋଳନ ସମ୍ପର୍କରେ ସଚେତନ କରିବା ପାଇଁ ସୁରତ ଅଲ୍ଲି ପ୍ରଚେଷ୍ଟା କରିଥିଲେ । ପ୍ରାୟ ଷୋହଳ ବର୍ଷର ଘଟଣାବହୁଳ ଜୀବନରେ ଅନେକ ସ୍ମରଣୀୟ ଅଧ୍ୟାୟ ଥିବ, ଯାହା ଆମର ଅଜ୍ଞାତ । (ତଥାପି ତାଙ୍କର ଗୋଟିଏ ସାକ୍ଷାତକାର ଓ ଅନ୍ୟ କେତୋଟି ଗୁରୁତ୍ୱପୂର୍ଣ୍ଣ ପୁସ୍ତକ ମଧ୍ୟରୁ କେତେକ ଘଟଣା ଉଲ୍ଲେଖ କରୁଛି) ।

ଥରେ କମଳା ନେହେରୁ ଓ ଲାଲା ଲଜପତ୍ ରାୟଙ୍କ ସ୍ତ୍ରୀଙ୍କ ଉପରେ ପୋଲିସ୍ ଲାଠିଚାଳନା କରିବାର ଖବର ଲଣ୍ଡନରେ ପହଞ୍ଚିଲା । କମଳା ନେହେରୁ ଓ ଶ୍ରୀମତୀ ଲଜପତ୍ ରାୟ ସେ ସମୟରେ ପ୍ରାୟ (୩୯-୪୦) ବିଦେଶ ସରକାରଙ୍କ ବିପକ୍ଷରେ ଜନମତ ସୃଷ୍ଟି ପାଇଁ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାଗ ନେଉଥିଲେ । ଏ ଖବର ପାଇବା ପରେ ସୁରତ ଅଲ୍ଲି ଓ ଅନ୍ୟ ଭାରତୀୟମାନେ ପ୍ରତିବାଦ ସଭା କରିଥିଲେ । ସେଠାରେ ଭାଷଣ ଦେଇ ସୁରତ ଅଲ୍ଲି କହିଥିଲେ ଯେ ଭାରତୀୟ ନାରୀର ଆଖି ଲୁହ ବଡ଼ ଭୟଙ୍କର । ଶୈବ୍ୟା ଆଖିର ଲୁହ ବିଶ୍ୱାମିତ୍ରଙ୍କ ଦର୍ପ ଚୂର୍ଣ୍ଣ କଲା । ସୀତା ଆଖିର ଲୁହରେ ସ୍ୱର୍ଣ୍ଣଲଙ୍କା ଛାରଖାର ହୋଇଗଲା । ଦ୍ରୌପଦୀ ଆଖିର ଲୁହ କୌରବ ବଂଶ ନିପାତ କରିଥିଲା । ତାଙ୍କର ଏ ଭାଷଣ ଶୁଣିବା ପରେ ସେଠାରେ ସମବେତ ଜନତା ତାଙ୍କୁ ହିନ୍ଦୁ ବୋଲି ଜାଣିପାରିଥିଲେ । ଜାଣିବା ପରେ ମଧ୍ୟ ସୁରତ ଅଲ୍ଲିଙ୍କର କର୍ତ୍ତୃପକ୍ଷ ତଥା ସମ୍ବାଦପତ୍ର ସହିତ ଘନିଷ୍ଠ ସମ୍ପର୍କ ଯୋଗୁ ସେମାନେ ଏ କଥା ଉପରେ ବିଶେଷ ଗୁରୁତ୍ୱ ଦେଇ

ନଥିଲେ । ପୁଣି ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଯୋଗୁ ସୁରତ ଅଲ୍ଲି ହିନ୍ଦୁ ନା ମୁସଲମାନ ଏ ବିତର୍କ ବିଶେଷ ତେଜି ପାରିଲା ନାହିଁ ।

୧୯୪୯ ମସିହାରେ ଗୋଆ ଡାମନ ଡିଉ ସ୍ୱାଧୀନ ହେବାକୁ ଇଚ୍ଛା କରିଥିଲେ । ସେତେବେଳେ କୃଷ୍ଣ ମେନନ୍ ଥିଲେ British High Commissioner । ସେ ସମୟରେ ନାସର ଟିଟୋ ଓ ନେହେରୁ ପ୍ରଥମେ Non alignment Movement ଆରମ୍ଭ କରିଥିଲେ । କୃଷ୍ଣ ମେନନ୍ ଦିଲ୍ଲୀକୁ ଖବର ଦେଇ, ଲଣ୍ଡନରେ ପୋପ୍ ଓ କାଇରୋରେ ନାସରଙ୍କ ସହିତ ସାକ୍ଷାତ କରି ପର୍ତ୍ତୁଗୀଜ ଜାହାଜ ଯେଉଁଳି ଭାରତ ଯିବା ଡେରି ହୁଏ, ତା'ର ବନ୍ଦୋବସ୍ତ କରି ଆସିଥିଲେ । ଏ ଦିଗରେ ସୁରତ ଅଲ୍ଲି ତାଙ୍କୁ ସାହାଯ୍ୟ କରିଥିଲେ ।

୧୪ ଜୁଲାଇ ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହେଲା । ଅଗଷ୍ଟରେ ଗାନ୍ଧିଜୀ ଆରେଷ୍ଟ ହେଲେ ଓ ତାଙ୍କ ସହିତ ଭାରତର ନାମୀ ନେତୃବୃନ୍ଦ ମଧ୍ୟ କାରାବରଣ କଲେ । ତେଣୁ ନୂତନ ନେତା ସୃଷ୍ଟି ହେବା ପୂର୍ବରୁ ସାଧାରଣ ନେତା ସହଜ ଭାବରେ ନେତୃତ୍ୱ ଗ୍ରହଣ କରିଥିଲେ ଓ କ୍ରମେ ସାଧାରଣ ଜନତା ଭିତରେ ଆଶା ଦାନା ବାନ୍ଧିଥିଲା ଯେ ଭାରତବର୍ଷ ଖୁବ୍ ଶୀଘ୍ର ସ୍ୱାଧୀନ ହେବ ।

ଏହି ସମୟରେ ମଧ୍ୟ ଭଗତ ସିଂହଙ୍କ ଭଳି ହିଂସାରେ ବିଶ୍ୱାସ କରୁଥିବା ଯୁବ ନେତୃତ୍ୱମାନେ ଭାରତୀୟ ଜନସାଧାରଣଙ୍କ ହୃଦୟ ଜୟ କରିପାରୁଥିଲେ । ଭାରତୀୟ ଜାତୀୟ କଂଗ୍ରେସ ତରଫରୁ ମଧ୍ୟ ଭଗତ ସିଂହଙ୍କର ଫାଶୀଦିବସ ୧୯୨୯ ଅଗଷ୍ଟ ୧୮ ତାରିଖ Political Suffer's Day ଭାବରେ ପାଳିତ ହୋଇଥିଲା । ବିଦେଶରେ ଥିବା ଭାରତୀୟମାନେ ମଧ୍ୟ ୧୯୪୨ ପରବର୍ତ୍ତୀ ସମୟରେ ଆହୁରି ସମବେତ ହୋଇ ସ୍ୱାଧୀନତା ପାଇଁ ନିଜନିଜର କର୍ତ୍ତବ୍ୟ ସମ୍ପାଦନ କରି ଚାଲିଥିଲେ । ସୁରତ ଅଲ୍ଲି ଏହି ସମୟରେ ଲଣ୍ଡନରେ ଥାଇ ମଧ୍ୟ ସ୍ୱାଧୀନତାର ରୂପ ଦେଖୁଥିଲେ । କଂଗ୍ରେସ ନେତୃତ୍ୱ ପ୍ରତି ତାଙ୍କର ଦୃଢ଼ ସମର୍ଥନ ଥିଲା ଓ ମହାତ୍ମା ଗାନ୍ଧିଙ୍କୁ ସେ ଶତାବ୍ଦୀର ଶ୍ରେଷ୍ଠ ଭାରତୀୟ ଭାବରେ ସମ୍ମାନ କରୁଥିଲେ । ତେଣୁ ସତ୍ୟାଗ୍ରହ ସପକ୍ଷରେ ସେ ବିଭିନ୍ନ ସଭାସମିତି କରାଇ ବିଦେଶରେ ଥିବା ଭାରତୀୟଙ୍କ ପ୍ରାଣରେ ଦେଶଭକ୍ତିର ଭାବନା ସୃଷ୍ଟି କରାଇଥିଲେ । ଗାନ୍ଧିଜୀଙ୍କ ନେତୃତ୍ୱକୁ ମାର୍କସବାଦୀ ଚିନ୍ତାନାୟକମାନେ ସମାଲୋଚନା କରୁଥିଲେ, ଯାହା ସୁରତ ଅଲ୍ଲି ଗ୍ରହଣ କରିପାରି ନଥିଲେ । କଂଗ୍ରେସ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଥିବା ଏହି ବ୍ୟକ୍ତି ମାର୍କସଙ୍କ ଦୃଷ୍ଟିଭଙ୍ଗୀ ପ୍ରତି ମଧ୍ୟ ଆକୃଷ୍ଟ ଥିଲେ । ଏହି ଦୁଇଟି ପରସ୍ପର ବିପରୀତମୁଖୀ ଚିନ୍ତାଧାରାର ସମନ୍ୱୟରେ ତାଙ୍କର ରାଜନୀତିକ ଜୀବନ ତଥା ସାଂଗଠନିକ ବ୍ୟକ୍ତିତ୍ୱ ଗଢ଼ିଉଠିଥିଲା ।

ଜବାହାରଲାଲ ନେହେରୁ ନିଜର ରାଜନୀତିକ ଜୀବନର ପ୍ରାରମ୍ଭିକ କାଳରେ ସାମ୍ରାଜ୍ୟବାଦର ଘୋର ବିରୋଧୀ ଥିଲେ । ୧୯୩୫-୩୬ରେ ୟୁରୋପ ଯାଇଥିଲେ ନିଜ ପତ୍ନୀଙ୍କ ଶାରିରୀକ ଅସୁସ୍ଥତା ଯୋଗୁଁ । ୧୯୩୬ରେ କମଳା ନେହେରୁଙ୍କ ମୃତ୍ୟୁ ହୋଇଥିଲା । ୧୯୩୫ରେ ଇନ୍ଦିରାଙ୍କର ତତ୍କାଳୀନ ବ୍ରିଟିଶ ହାଇକମିଶନରଙ୍କ ପୁତ୍ର ଫିରୋଜଙ୍କ ସହିତ ପ୍ରେମ ସଂମ୍ପର୍କ ଗଢ଼ିଉଠିଥିଲା ।

ସୁରତ ଅଲ୍ଲିଙ୍କ ଭଳି ଭାରତୀୟମାନଙ୍କୁ ନେହେରୁ ନିଜର ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ କରିପାରିଥିଲେ । ତେଣୁ ତାଙ୍କର ବିଦେଶ ଗସ୍ତ ସମୟରେ ସେ ସ୍ୱାଧୀନତାକାମୀ ପ୍ରବାସୀ ଭାରତୀୟମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିଲେ । ଫିରୋଜଙ୍କ ସୁରତ ଅଲ୍ଲିଙ୍କର ସମ୍ପର୍କ ଥିଲା । ତେଣୁ ସୁରତ ଅଲ୍ଲି ଉଭୟଙ୍କ ପ୍ରେମ ସମ୍ପର୍କରେ ପ୍ରଥମେ ଅବଗତ ହୋଇଥିଲେ । ୧୯୪୨ ମାର୍ଚ୍ଚ ୨୬ ତାରିଖରେ ଗାନ୍ଧିଜୀଙ୍କ ହସ୍ତକ୍ଷେପ ଫଳରେ ଇନ୍ଦିରାଙ୍କର ଶୁଭ-ବିବାହ ଅନୁଷ୍ଠିତ ହୋଇଥିଲା । ପରବର୍ତ୍ତୀ ସମୟରେ ନବବିବାହିତ ଦମ୍ପତିଙ୍କୁ ଭାରତୀୟ ନାବିକ ସଂଘ ତରଫରୁ ଯେଉଁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା, ସୁରତ ଅଲ୍ଲି ଥିଲେ ତା'ର ମୁଖ୍ୟ ଆୟୋଜକ । ଫିରୋଜ ଗାନ୍ଧି ଥିଲେ ସଚ୍ଚା ପାର୍ସୀ ଓ ଖୁବ୍ ଧୀରସ୍ଥିର ସ୍ୱଭାବର ଭଦ୍ରଲୋକ । ସେ କେବେ ମଦ୍ୟ ସ୍ପର୍ଶ କରୁନଥିଲେ । ଉଭୟଙ୍କର ଦୀର୍ଘଦିନ ପତ୍ରାଳାପ ଜାରି ରହିଥିଲା । କେବେ ସେଥିରେ ଇନ୍ଦିରାଗାନ୍ଧିଙ୍କ ଦାମ୍ପତ୍ୟ ଜୀବନର ଘଟଣା ମୁଖ୍ୟ ଥିଲା ତ କେବେ ଭାରତର ସ୍ୱାଧୀନତା ଆନ୍ଦୋଳନର ଘଟଣା ସ୍ଥାନିତ ହେଉଥିଲା ।

**ଲଣ୍ଡନର ବିଶିଷ୍ଟ ବ୍ୟକ୍ତି ସୁରତ ଅଲ୍ଲି :**

ପ୍ରଥମ ବିଶ୍ୱଯୁଦ୍ଧ ପରେ ବିଶ୍ୱର ସୁରକ୍ଷା ଓ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ନିମନ୍ତେ ୧୯୧୮ରେ ଜାତିସଂଘ ଗଠିତ ହେଲା । ଆମେରିକାର ରାଷ୍ଟ୍ରପତି ଉଡ୍ରୋଉଇଲସନ୍ ଏଥିପାଇଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ହେଁ, ଯୁକ୍ତରାଷ୍ଟ୍ର ଆମେରିକା ଏହାର ସଭ୍ୟ ହେଲା ନାହିଁ । ତେଣୁ ବିଶ୍ୱର ଶାନ୍ତିଭଙ୍ଗ କରୁଥିବା ରାଷ୍ଟ୍ରମାନଙ୍କ ବିରୁଦ୍ଧରେ ଜାତିସଂଘ ବିଶେଷ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରିଲା ନାହିଁ । ଜାପାନ ଓ ଇଟାଲୀ ମଧ୍ୟ ଜାତିସଂଘ ତ୍ୟାଗ କଲେ । ୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ବେଳକୁ ଜାତିସଂଘ ସମ୍ପୂର୍ଣ୍ଣ ନିଷ୍କ୍ରିୟ ହୋଇଗଲା ।

୧୯୩୮ରେ ଜର୍ମାନୀ ଅଷ୍ଟ୍ରିଆ ଅଧିକାର କଲା । ହିଟ୍‌ଲର ଶାସନ ଭାର ଗ୍ରହଣ କରିବା ପରେ ଭର୍ସାଲିସ୍ ସନ୍ଧିକୁ ଇଚ୍ଛାକୃତ ଭାବରେ ଅମାନ୍ୟ କଲେ । ଅର୍ଥନୀତିକ ଓ ସାମରିକ ଗୁରୁତ୍ୱ ଦୃଷ୍ଟିରୁ ଜର୍ମାନୀ ଚେକୋସ୍ଲୋଭାକିଆର ସୁଦେତାନ ଅଞ୍ଚଳ ଅଧିକାର

କଲା । ଏହାକୁ ପ୍ରତିରୋଧ ନ କରି ୧୯୩୮ରେ ବ୍ରିଟେନ ଓ ଫ୍ରାନ୍‌ସ ଜର୍ମାନୀ ସହିତ ଚୁକ୍ତି କଲେ ।

ଏହି ସମୟରେ ସୁରତ ଅଲ୍ଲି ଲଣ୍ଡନର ଅନ୍ୟତମ ଗଣମାନ୍ୟ ବ୍ୟକ୍ତି । ବିଦେଶରେ ଶ୍ରମିକ ଆନ୍ଦୋଳନର ସର୍ବମାନ୍ୟ ନେତା । ୧୯୩୯ ସେପ୍ଟେମ୍ବରରେ ଜର୍ମାନୀ ପ୍ରଥମେ ପୋଲାଣ୍ଡ ଆକ୍ରମଣ କଲା । ୩ ତାରିଖରେ ବ୍ରିଟେନ ଓ ଫ୍ରାନ୍ସ ଜର୍ମନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ସୂତ୍ରପାତ ହେଲା । ୧୯୪୦ ମେ ମାସ ସୁଦ୍ଧା ହିଟ୍‌ଲରଙ୍କ ସେନାବାହିନୀ ପୋଲାଣ୍ଡ, ନରୱେ, ଡେନ୍‌ମାର୍କ, ହଲାଣ୍ଡ, ବେଲଜିୟମ ପ୍ରଭୃତି ଅଧିକାର କରି ଚାଲିଲେ । ୧୯୪୦ ଜୁନ୍ ୧୪ ତାରିଖରେ ଜର୍ମାନ୍ ସେନାବାହିନୀ ଫ୍ରାନ୍‌ସର ରାଜଧାନୀ ପ୍ୟାରିସ୍ ଅଧିକାର କରିନେଲେ । ଫରାସୀ ସରକାର ନିଜ ଦେଶର ପ୍ରାୟ ଅଧେ ଜର୍ମାନୀକୁ ହସ୍ତାନ୍ତର କରି ସନ୍ଧି କଲେ ।

ସେହିବର୍ଷ ଅଗଷ୍ଟ ମାସରେ ଜର୍ମାନୀ ବ୍ରିଟେନ ଉପରେ ବୋମା ପକାଇଲା । ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କ ନେତୃତ୍ୱରେ ବ୍ରିଟେନ ଜର୍ମାନୀ ଅକ୍ରମଣ ମୁକାବିଲା କଲା । ମାତ୍ର ହିଟ୍‌ଲରଙ୍କ ଜୟଯାତ୍ରା ଅବ୍ୟାହତ ରହିଲା । ଜର୍ମାନୀ ସେନା ଗ୍ରୀସ୍, ଯୁଗୋସ୍ଲୋଭିଆ, ବୁଲ୍‌ଗେରିଆ ଓ ଉତ୍ତର ଆଫ୍ରିକାର ଅନେକ ଅଞ୍ଚଳ ଅଧିକାର କରିନେଲା । ଏହି ସମୟରେ ସମଗ୍ର ବ୍ରିଟେନ ପାଇଁ ଜର୍ମାନୀ ଓ ହିଟ୍‌ଲର ଆତଙ୍କର କାରଣ ପାଲଟି ଯାଇଥିଲା । ପ୍ରତ୍ୟେକ ଚିନ୍ତାଶୀଳ ମଣିଷ ହିଟ୍‌ଲରର ଅମାନୁଷିକ ଆଚରଣ ଓ ସ୍ପର୍ଦ୍ଧାର ନିନ୍ଦା କରିଥିଲା । ଲଣ୍ଡନର ସମ୍ବାଦପତ୍ରମାନଙ୍କରେ ଏହି ଯୁଦ୍ଧର ଭୟାବହତାର ବ୍ୟାନକ ନିନ୍ଦା କରାଯାଇଥିଲା । ବିଶିଷ୍ଟ ନାଗରିକମାନଙ୍କର ମତାମତ ନିଆଯାଇ ଜନସାଧାରଣଙ୍କୁ ଯୁଦ୍ଧର ଭୟାବହତା ସମ୍ପର୍କରେ ସୂଚନା ଦିଆଯାଇଥିଲା । ଲଣ୍ଡନର ଏକ ସମ୍ବାଦପତ୍ର ପ୍ରତିନିଧି ଦିନେ ସକାଳୁ ସୁରତ ଅଲ୍ଲିଙ୍କୁ ଫୋନ୍ କରି ହିଟ୍‌ଲରଙ୍କର ଏହି ଅଭୁତପୂର୍ବ ବିଜୟ ସମ୍ପର୍କରେ ତା'ର ପ୍ରତିକ୍ରିୟା ଜାଣିବାକୁ ଚାହିଁଥିଲେ । ଉତ୍ତରରେ ସୁରତ ଅଲ୍ଲି କହିଥିଲେ, "Hitler is digging his own graves" ଏହା ତା' ପରଦିନ ଲଣ୍ଡନର ସେହି ଖବରକାଗଜରେ ମୁଖ୍ୟ ସମ୍ବାଦ ହୋଇ ପ୍ରକାଶିତ ହୋଇଥିଲା । ତା'ପରେ ସୁରତ ଅଲ୍ଲିଙ୍କ ପାଖକୁ ଶତାଧିକ ବ୍ୟକ୍ତି ଫୋନି କରି ଏଭଳି ମତାମତ ଦେବାର ଯଥାର୍ଥ୍ୟ ସମ୍ପର୍କରେ ତାଙ୍କୁ ପ୍ରଶ୍ନ କରିଥିଲେ । ସୁରତ ଅଲ୍ଲିଙ୍କର ଯୁକ୍ତି ଥିଲା ଯେ ଅମାନୁଷିକତାକୁ ନେଇ ହାସଲ କରାଯାଉଥିବା ବିଜୟ ପ୍ରକୃତ ବିଜୟ ନୁହେଁ ଓ ଏହାର ପ୍ରଭାବ ଦୀର୍ଘସ୍ଥାୟୀ ହେବା ସମ୍ଭବ ନୁହେଁ । ପ୍ରକୃତରେ ସୁରତ ଅଲ୍ଲିଙ୍କର ଏହି ଭବିଷ୍ୟତ ବାଣୀ ଅଳ୍ପ ଦିନରେ ସତ୍ୟ ବୋଲି ପ୍ରମାଣିତ ହୋଇଥିଲା ।

୧୯୪୧ରେ ହିଟ୍‌ଲର ରୁଷ୍ ଆକ୍ରମଣ କରିବାରୁ ରୁଷିଆ ମିତ୍ରଶକ୍ତି ପାଖରେ ଯୁଦ୍ଧରେ ଯୋଗଦେଲା । ପ୍ରଶାନ୍ତ ମହାସାଗରର ହାୱାଇ ଦ୍ୱୀପରେ ଥିବା ଯୁକ୍ତରାଷ୍ଟ୍ରର 'ପର୍ଲହାର୍ବର' ଉପରେ ଜାପାନ ଅକ୍ରମଣ କରିବା ପରେ ଯୁକ୍ତରାଷ୍ଟ୍ର ଆମେରିକା ଯୁଦ୍ଧରେ ଯୋଗଦେଲା । ୧୯୪୨ରେ ବ୍ରିଟେନ, ଫ୍ରାନ୍‌ସ, ଆମେରିକା, ସୋଭିଏତ୍ ରୁଷ୍ ପ୍ରଭୃତି ୨୬ଟି ଦେଶ ଫାଶିବାଦ ବିରୋଧରେ ସଂଗ୍ରାମ ଘୋଷଣା କଲେ । ଷ୍ଟାଲିନ୍‌ଗ୍ରାଡ୍‌ଠାରେ ରୁଷ୍‌ର ପ୍ରବଳ ପ୍ରତିରୋଧ ଯୋଗୁ ଜର୍ମାନୀ କ୍ଷତିଗ୍ରସ୍ତ ହେଲା । ପରବର୍ତ୍ତୀ କେତେ ଦିନରେ ରୁଷ୍ ଜର୍ମାନୀ ଅଧିକୃତ ଚେକୋସ୍ଲୋଭାକିୟା, ରୋମାନିଆ ପ୍ରଭୃତି ରାଜ୍ୟ ଅଧିକାର କରିନେଲା । ଯୁକ୍ତରାଷ୍ଟ୍ର ଆମେରିକା ଓ ବ୍ରିଟେନ ମିଳିତ ଭାବରେ ଇଟାଲିର ସିସିଲି ଅଧିକାର କଲେ । ସିସିଲିକୁ ଜର୍ମାନୀ ସାହାଯ୍ୟ କରୁଥିଲେ ମଧ୍ୟ ଇଟାଲୀ ପରାଜିତ ହୋଇ ଆତ୍ମସମର୍ପଣ କଲା । ଜର୍ମାନୀର ପରାଜୟ ଅବଶ୍ୟମ୍ଭାବୀ ହେଲା । ୧୯୪୫ରେ ରୁଷ୍ ସୈନ୍ୟ ବର୍ଲିନ୍ ଅଧିକାର କରିବା ପରେ ଜର୍ମାନୀ ବିନା ସର୍ତ୍ତରେ ଆତ୍ମସମର୍ପଣ କଲା । ଏହା ପରେ ସୁରତ ଅଲ୍ଲିଙ୍କର ନେତୃତ୍ୱ ଆହୁରି ପ୍ରତିଷ୍ଠିତ ହୋଇଥିଲା । ବିଭିନ୍ନ ସଭାସମିତିରେ ତାଙ୍କୁ ଯୋଗଦେବା ପାଇଁ ନିମନ୍ତ୍ରଣ ଆସୁଥିଲା । ତାଙ୍କର ମତାମତ ମଧ୍ୟ ଗୃହୀତ ହେଉଥିଲା । ଭାରତୀୟ ନାବିକ ସଂଘ ତାଙ୍କ ଉପରେ ଯେଉଁ ଭାର ନ୍ୟସ୍ତ କରିଥିଲା, ତାକୁ ଉପଯୁକ୍ତ ମର୍ଯ୍ୟାଦା ଦେଇ ତୁଲାଇବା ସହିତ ସେ ଭାରତୀୟ ସଚେତନ ଜନସାଧାରଣଙ୍କର ପ୍ରତିନିଧି ଭାବରେ ନିଜର ଦାୟିତ୍ୱ ନିର୍ବାହ କରିଥିଲେ । କ୍ରମେ ଲଣ୍ଡନ ସହରରେ ତାଙ୍କର ସୁନାମ ପରିବ୍ୟାପ୍ତ ହୋଇଥିଲା ।

ମାହାଙ୍ଗା ଗ୍ରାମର ବିନୟ ବଲ୍ଲଭ ରାୟ ଥିଲେ ହାଇକୋର୍ଟର ପେସ୍କାର । ଚୈତନ୍ୟପନ୍ଥୀ ଏହି ଭଦ୍ରବ୍ୟକ୍ତି ବେକରେ ତୁଳସୀ ମାଳ ପକାନ୍ତି ଓ ଠେଙ୍ଗା ଧରି ଚାଲନ୍ତି । (ସେ ଲେଖିକା ଉଷା ରାୟଙ୍କ ଶ୍ୱଶୁର) ତାଙ୍କର କନ୍ୟା ରମାରାଣୀ ରାୟ ୪୦ ଦଶକରେ Nurshing Trainingର ମୁଖ୍ୟ ପଦାଧିକାରୀ ଥାଆନ୍ତି । ସେ ପ୍ରାୟ ୧୯୪୫ ବେଳକୁ ନର୍ସିଂର ସ୍ୱତନ୍ତ୍ର ଶିକ୍ଷା ଲାଭ କରିବା ପାଇଁ ଲଣ୍ଡନ ଯାଇଥିଲେ । ସେଠାରେ ନିଜର ସୁବିଧା ଅସୁବିଧା ନେଇ ସେ ବାପାଙ୍କ ପାଖକୁ ବରାବର ଚିଠି ଲେଖୁଥିଲେ । ବାପା ବିନୟ ବଲ୍ଲଭ ତାଙ୍କୁ ସେତେବେଳେ ଲଣ୍ଡନରେ ରହୁଥିବା କେତେକ ବଂଗୀୟ ଭଦ୍ରଲୋକଙ୍କର ଠିକଣା ଦେଇଥିଲେ ଓ ସେମାନଙ୍କ ସହିତ ଯୋଗାଯୋଗ କରି ନିଜ ସମସ୍ୟାର ସମାଧାନ କରିବାକୁ ଉପଦେଶ ଦେଉଥିଲେ । ରମାରାଣୀ କିନ୍ତୁ ବାପାଙ୍କୁ ଚିଠି ଲେଖିଥିଲେ ଯେ ବଙ୍ଗୀୟମାନଙ୍କୁ ଭେଟିବା ବିଶେଷ ଦରକାର ପଡ଼ିବ ନାହିଁ, କାରଣ ଲଣ୍ଡନରେ ଜଣେ ଶ୍ରମିକ ନେତା ଅଛନ୍ତି ସେ ଓଡ଼ିଶାର ଲୋକ । ତାଙ୍କ ନାମ ସୁରତ

ଅଲ୍ଲି । ସେ ଚାହିଁଲେ ବହୁ ଅସାଧ୍ୟ ସାଧନ କରିପାରିବେ । ଲଣ୍ଡନରେ ତାଙ୍କର ଯଥେଷ୍ଟ ପ୍ରତିଷ୍ଠା ରହିଛି । ସୁରତ ଅଲ୍ଲି ୧୯୫୧ରେ ଓଡ଼ିଶା ଫେରିବା ପରେ ଏକଥା ବିନୟ ବଲ୍ଲଭ ରାୟଙ୍କ ମୁହଁରୁ ସେକ୍ ମତଲୁବ ଅଲ୍ଲି ବାରମ୍ବାର ଶୁଣିଛନ୍ତି । ତାଙ୍କ କନ୍ୟାଙ୍କୁ ବିଦେଶ ଭୂଇଁରେ ସାହାଯ୍ୟ କରିଥିବା ଏହି ବ୍ୟକ୍ତିଙ୍କୁ ସେ କୃତଜ୍ଞତା ମଧ୍ୟ ଜଣାଇଛନ୍ତି ।

**ଲଣ୍ଡନରେ ବ୍ୟକ୍ତିଗତ ଜୀବନ :**

ଲଣ୍ଡନର ପପ୍‌ଲାର ଷ୍ଟ୍ରିଟ୍‌ରେ ଏକ ଦୁଇମହଲା ଘରେ ସୁରତ ଅଲ୍ଲି ରହୁଥିଲେ । ସେ ନିଜର ପଡ଼ୋଶୀମାନଙ୍କ ସହିତ ବେଶ୍ ସମ୍ପର୍କ ରଖିଥିଲେ । ନିଃସଙ୍ଗତା ଭିତରେ ବଞ୍ଚୁଥିବା ଏହି ଭାରତୀୟ ଜଣକ ପଡ଼ୋଶୀ ଶିଶୁମାନଙ୍କୁ ବହୁତ ଭଲ ପାଉଥିଲେ ଓ ସେମାନଙ୍କ ସହିତ ବେଶ୍ ସମୟ କଟାଉଥିଲେ । ସ୍ୟାଲିରିଡ଼ର ନାମ୍ନୀ ଜଣେ ତରୁଣୀ ସେ ସମୟରେ ସୁରତ ଅଲ୍ଲୀଙ୍କର ଖୁବ୍ ନିକଟକୁ ଆସିପାରିଥିଲେ । ସେ ସକାଳୁ ସାଇକେଲ୍‌ରେ ଯାଇ ଘରେ ଘରେ କ୍ଷୀର ପହଞ୍ଚାଇ ଦେଉଥିଲେ ଓ ତହିଁରୁ ଲାଭ କରୁଥିବା କିଞ୍ଚିତ୍ ଅର୍ଥ ସାହାଯ୍ୟରେ ପାଠପଢ଼ା ଜାରି ରଖିଥିଲେ । ସୁରତ ଅଲ୍ଲି ଏହି ଅସମ୍ଭବ ଆତ୍ମବିଶ୍ୱାସସମ୍ପନ୍ନା ନାରୀଙ୍କୁ ବେଶ୍ ଶ୍ରଦ୍ଧା କରୁଥିଲେ ଓ ତାଙ୍କୁ ରାମାୟଣ ମହାଭାରତର କାହାଣୀମାନ କହୁଥିଲେ । ହୁଏତ ସେ ସମୟରେ ସ୍ୟାଲି ତାଙ୍କୁ ପ୍ରେମ କରୁଥିଲେ; ମାତ୍ର ସୁରତ ଅଲ୍ଲିଙ୍କ ମନର ଉର୍ବର ଭୂଇଁରେ ପ୍ରେମର ଚାରାଗଛ ଝାଉଁଳି ପଡ଼ିଥିଲା । ତେଣୁ ଉଭୟଙ୍କର ସମ୍ପର୍କ ବେଶିଦିନ ଆଗେଇ ପାରି ନଥିଲା । ସୁରତ ଅଲ୍ଲି ପଛରେ ଛାଡ଼ିଯାଇଥିବା ପରିବାରକୁ ଫେରିବା ପାଇଁ ମନସ୍ଥ କଲା ବେଳକୁ ସ୍ୟାଲି କୌଣସି ଏକ ସ୍କୁଲରେ ଶିକ୍ଷୟତ୍ରୀ ଭାବେ କାର୍ଯ୍ୟ କରୁଥିଲେ । ସୁରତ ଅଲ୍ଲି ନିଜର ସେଠାରେ ଥିବା ସମସ୍ତ ଆସବାବ ସ୍ୟାଲିଙ୍କ ଜିମାରେ ଛାଡ଼ି ଦେଶକୁ ଫେରିଥିଲେ । ସ୍ୟାଲି ଖୁବ୍ ଭଲ ପରିବାରର, ଉତ୍ତମ ସ୍ୱଭାବର ଝିଅ ଥିଲେ ବୋଲି ବଂଶୀଧର ବାରମ୍ବାର କହନ୍ତି, ଯେ କି ତାଙ୍କର ଶରୀର ଅସୁସ୍ଥ ଥିବା ସମୟରେ ତାଙ୍କର ପରିଚର୍ଯ୍ୟା ମଧ୍ୟ କରିଥିଲେ ।

**ଲଣ୍ଡନର ଜନଜୀବନ ସମ୍ପର୍କରେ ତାଙ୍କର ଧାରଣା :**

ଲଣ୍ଡନର ଜନଜୀବନ ସମ୍ପର୍କରେ ସୁରତ ଅଲ୍ଲିଙ୍କ ଧାରଣା ଥିଲା ଏହିପରି । ଲଣ୍ଡନବାସୀମାନେ ବେଶ୍ ଦେଶଭକ୍ତ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଦେଶର ଆବଶ୍ୟକୀୟ ଦ୍ରବ୍ୟର ଅଭାବ ପଡୁଥାଏ । ଲଣ୍ଡନର ପ୍ରତ୍ୟେକ ପରିବାରରେ ଆମର ପାଣି ପାଇପ୍ ଭଳି ଗ୍ୟାସ୍ ପାଇପ୍‌ମାନ ଖଞ୍ଜାହୋଇଥାଏ; ମାତ୍ର ଗ୍ୟାସ୍ ବ୍ୟବହାର ଉପରେ କଟକଣା ଜାରି କରାଯାଇଥାଏ । ବଂଶୀଧର ଓରଫ ସୁରତ ଅଲ୍ଲି ଦେଖନ୍ତି ଯେ ତାଙ୍କର ଗୃହସ୍ୱାମିନୀ ବୃଦ୍ଧା

ଜଣକ ସରକାରଙ୍କୁ ଖୁବ୍ ଗାଳି ଦିଅନ୍ତି । ଯୁଦ୍ଧ ପାଇଁ ବିବ୍ରତ ହୋଇପଡ଼ନ୍ତି; ମାତ୍ର କେବେ ଗ୍ୟାସ୍ ଖୋଲି ରୋଷେଇ କରନ୍ତି ନାହିଁ ବରଂ ଷ୍ଟୋଭ୍‌ରେ ରାନ୍ଧନ୍ତି, ନଚେତ୍ ବାହାରୁ କ'ଣ ଟିକେ ଖାଦ୍ୟ ମଗାଇ ଖାଇଦିଅନ୍ତି । ଦେଶକୁ ଫେରିବା ପରେ ବଂଶୀଧର ବାରମ୍ବାର ସେହି ବୟସ୍କା ନାରୀଙ୍କର ଉଦାହରଣ ଦିଅନ୍ତି । ସେମାନଙ୍କର ନାଗରିକ ଜ୍ଞାନ କେତେ ଉନ୍ନତ ଓ ସେମାନେ କିଭଳି ରାଷ୍ଟ୍ରମୁଖ୍ୟଙ୍କ ଆଦେଶ ମାନିବା ପାଇଁ ପ୍ରସ୍ତୁତ, ସେ କଥା କହି ସେ ଯୋଡ଼ିଦିଅନ୍ତି ଯେ ଆମ ଦେଶ ହୋଇଥିଲେ ସମସ୍ତେ ଦୁଆର ଝରକା ବନ୍ଦ କରି ଗ୍ୟାସ୍ ଜାଳି ବିଭିନ୍ନ ପ୍ରକାର ଖାଦ୍ୟ ତିଆରି କରି ଦିବ୍ୟ ଭୋଜନ ପକାଉଥାନ୍ତେ ।

ସେହିପରି ଲଣ୍ଡନରେ ଛାତ୍ରମାନେ କିଭଳି ଶ୍ରମକୁ ମର୍ଯ୍ୟାଦା ଦିଅନ୍ତି, ଛୁଟିଦିନମାନଙ୍କରେ କେଉଁ ଲାଇବ୍ରେରୀ, କ୍ଷୀର ବୁଥ୍, ଦୋକାନ ବା କ୍ରେଚ୍‌ରେ କାମ କରି ନିଜପାଇଁ ଅର୍ଥ ସଂଗ୍ରହ କରନ୍ତି, ତାହା ସେ ବାରମ୍ବାର ନିଜ ଛାତ୍ରମାନଙ୍କୁ କହିଥାନ୍ତି ।

**ସ୍ୱାଧୀନତା ପରବର୍ତ୍ତୀ ସମୟ :**

୧୯୪୯ ମସିହାରେ ଖଣ୍ଡସାହୀ ଗ୍ରାମର ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ପ୍ରଫେସର ବ୍ରହ୍ମାନନ୍ଦ ମିଶ୍ର ଉଚ୍ଚତର ଗବେଷଣା ପାଇଁ ଲଣ୍ଡନ ଯାଇଥିଲେ । ସେଠାରେ ସେ ବଂଶୀଧରଙ୍କୁ ଦେଖୁଛନ୍ତି ଅଥଚ କଥାବାର୍ତ୍ତା କରିବାର ସୁଯୋଗ ହେଉ ନାହିଁ ବୋଲି ସେ ଏକାଧିକ ପତ୍ର ଲେଖୁଥିଲେ । ବ୍ରହ୍ମାନନ୍ଦ ମିଶ୍ରଙ୍କର ପିଏଚ୍.ଡି. ନିବନ୍ଧ ତାଙ୍କ ଗାଇଡ୍‌ଙ୍କ ଦ୍ୱାରା ଗୃହୀତ ହେଲା ନାହିଁ, କାରଣ ସେ Sound Wave ଭଳି Matter Wave ଅଛି ବୋଲି ପ୍ରମାଣ କରିଥିଲେ । (ଗିରିଜା ଭୂଷଣ ପଟ୍ଟନାୟକଙ୍କଠାରୁ ସଂଗୃହୀତ ତଥ୍ୟ) ସେଥିପାଇଁ ବ୍ରହ୍ମାନନ୍ଦ ବାବୁ ଖୁବ୍ ଭାଙ୍ଗି ପଡ଼ିଥିଲେ । ସେ ଦୁଃଖରେ ଲଣ୍ଡନର ଟେମସ ନଦୀ କୂଳରେ ବୁଲୁଥିଲେ । ସେଠାରେ ସେ ବଂଶୀବାବୁଙ୍କୁ ଭେଟିଥିଲେ । ବଂଶୀବାବୁ ତାଙ୍କ କଥା ଶୁଣିବା ପରେ ସେ କିଭଳି ପିଏଚ୍.ଡି. ପାଇବେ ସେଥିପାଇଁ କିଛି ସାହାଯ୍ୟ ମଧ୍ୟ କରିଥିଲେ ।

ବ୍ରହ୍ମାନନ୍ଦ ବାବୁ ପ୍ରାୟ ୧୯୫୧ ବେଳକୁ ବିଦେଶରୁ ଫେରିଲେ । ସେ ଫେରିବା ପରେ ବଂଶୀବାବୁଙ୍କ ସମ୍ପର୍କରେ ଏକାଧିକ ତଥ୍ୟ ଓଡ଼ିଶାରେ ବିଶେଷକରି ତାଙ୍କ ପରିବାରରେ ପହଞ୍ଚିଲା । ଅବଶ୍ୟ ସତ୍ୟ ମିଥ୍ୟା ଉଭୟ ଘଟଣା କଳ୍ପନା ରଙ୍ଗରେ ଅନୁରଞ୍ଜିତ ହୋଇଥିଲା, ତଥାପି ବ୍ରହ୍ମାନନ୍ଦ ବାବୁ ହିଁ ବଂଶୀଧରଙ୍କ ବିଷୟରେ ପ୍ରଥମେ ଖବର ଦେଇଥିଲେ ଓ ବଂଶୀଧର ଦେଶକୁ ଫେରିବାର ପଥ ସୁଗମ କରି ଦେଇଥିଲେ । ଥରେ ବ୍ରହ୍ମାନନ୍ଦ ବାବୁ ତାଙ୍କୁ ଠାବ କଲେ ଓ ଘରକଥା ତାଙ୍କୁ କହିବାରୁ ସେ ବିଶେଷ ଆଗ୍ରହ

ଦେଖାଇଲେ ନାହିଁ । ବାରମ୍ବାର ତାଙ୍କ ସହିତ ସେ ଯୋଗାଯୋଗ କରିଥିଲେ ଓ ବଂଶୀଧରଙ୍କର ବିଦେଶର ଠିକଣା ଗ୍ରାମକୁ ପଠାଇଥିଲେ ।

ଲଣ୍ଡନର ପପ୍‌ଲାର ଷ୍ଟ୍ରିଟ୍‌ରେ ସୁରତ ଅଲ୍ଲିଙ୍କର ଅନେକ ଭାରତୀୟ ବନ୍ଧୁମାନେ ନିଜର ବିଦେଶୀ ପତ୍ନୀମାନଙ୍କୁ ଧରି ରହୁଥିଲେ । ସେମାନଙ୍କ ସହିତ ସୁରତ ଅଲ୍ଲି ଭଲ ସମ୍ପର୍କ ରଖିଥିଲେ ମଧ୍ୟ କୌଣସି ଦିନ ନିଜର ପରିବାର ଅଛି ବା ସନ୍ତାନଟିଏ ଅଛି, ଏକଥା ସେମାନଙ୍କୁ କହିନଥିଲେ ।

ସତେ ଯେପରି ସେ ପାସୋରି ଯାଇଥିଲେ ଯେ ସେ ଯେଉଁ କାମ ପାଇଁ ଘରଛାଡ଼ି ପ୍ରବାସୀ ହୋଇଥିଲେ ସେ କାମ ଶେଷ ହୋଇଛି, ଅର୍ଥାତ୍ ଦେଶ ସ୍ୱାଧୀନ ହୋଇଛି, ଯେଉଁମାନେ ସ୍ୱାଧୀନ ଭାରତର ମଙ୍ଗ ଧରିଥିଲେ ବା ଧରିବାକୁ ପ୍ରସ୍ତୁତ ହୋଇଥିଲେ, ସେମାନଙ୍କ ପାଖରେ ବଂଶୀଧର ଓରଫ ସୁରତ ଅଲ୍ଲିଙ୍କ ବିଶେଷ ସମ୍ବାଦ ନଥିଲା, ଯଦିଚ ତାଙ୍କର ସହକର୍ମୀମାନେ ତାଙ୍କୁ ଭୁଲି ନଥିଲେ ।

**ବଂଶୀ ବାବୁଙ୍କ ପ୍ରତ୍ୟାବର୍ତ୍ତନର ଉଦ୍‌ଯୋଗ ପର୍ବ :**

୧୯୪୩ରେ କୃଷ୍ଣବଲ୍ଲଭୀଙ୍କର ଅଳ୍ପ ବୟସରେ ବିବାହ ଅନୁଷ୍ଠିତ ହେଲା । ସେ ସମୟରେ ତାହା ଥିଲା ଖଣ୍ଡସାହୀ ଗ୍ରାମର ଏକ ଆନନ୍ଦଦାୟକ ବ୍ୟାପାର । ସେହି ଶୁଭ କାର୍ଯ୍ୟରେ ସମସ୍ତେ ସହଯୋଗ କରିଥିଲେ । ଆନନ୍ଦ ସହିତ ସହାନୁଭୂତି ମଧ୍ୟ ମିଶି ରହିଥିଲା । ବାପା କେଉଁଠି ଅଛନ୍ତି ଜଣା ନାହିଁ । ଝିଅଟିର ବିବାହରେ ସମସ୍ତେ ସହଯୋଗ କରିବା ଦରକାର । ଏ ପ୍ରସଙ୍ଗ ପୂର୍ବରୁ ଆଲୋଚିତ ହୋଇଛି । ବଲ୍ଲୀ ଖଣ୍ଡସାହୀ ଗ୍ରାମରେ ଅନେକ ସମାଜ ସେବା କାର୍ଯ୍ୟ କରୁଥାଏ । ତା'ର ବିଶେଷ ବାନ୍ଧବୀ ଥାଆନ୍ତି ଖଣ୍ଡସାହୀ ଜମିଦାର ଗୋପବନ୍ଧୁ ମିଶ୍ରଙ୍କର ଏକମାତ୍ର କନ୍ୟା ଜାହ୍ନବୀ ଦେବୀ ଓରଫ ପେନୀ । ଏମାନେ ଗାଁରେ ବୁଲି ବୁଲି ସ୍ତ୍ରୀଲୋକମାନଙ୍କୁ ଏକାଠି କରି ସେମାନଙ୍କୁ ପାଠ ପଢ଼ାଉଥାଆନ୍ତି । ସୂତାକଟା ଶିଖାଉ ଥାଆନ୍ତି । ସେମାନଙ୍କର ସହଯୋଗ ଓ ଆଗ୍ରହ ଫଳରେ ଖଣ୍ଡସାହୀରେ 'ପଲ୍ଲୀମଙ୍ଗଳ ସମିତି' ନାମକ ଏକ ସମିତି ଗଢ଼ାହେଲା । ପ୍ରାୟ ୧୯୪୯ ହେବ । ସେହି ସମିତିର ଏକ ଉତ୍ସବକୁ ନିମନ୍ତ୍ରିତ ହୋଇ ଆସିଥାଆନ୍ତି ତତ୍କାଳୀନ ପୂର୍ତ୍ତମନ୍ତ୍ରୀ ୰ରାଜକୃଷ୍ଣ ବୋଷ । ଓଡ଼ିଶାର ରାଜନୀତି କ୍ଷେତ୍ରରେ ତାଙ୍କୁ ଅବା ନଜାଣେ କିଏ ? ସେ ଥିଲେ ଓଡ଼ିଶାର ପ୍ରଥମ ରାଜବନ୍ଦୀ । ତାଙ୍କ ସହିତ ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ରମାଦେବୀ ଓ ଶରତ ମହାରଣା ପ୍ରଭୃତି ଆସିଥାଆନ୍ତି । ସଭାସ୍ଥଳକୁ ତାଙ୍କୁ ପାଛୋଟି ଆଣିବା ପାଇଁ ସ୍କୁଲ ପିଲାମାନଙ୍କୁ ଦାୟିତ୍ୱ ଦିଆଯାଇଥାଏ । ସେ ସଭାରେ ବଲ୍ଲୀ ଖୁବ୍

ଓଜସ୍ୱିନୀ ଭାଷଣ ଦେଇଥିଲା । ରାଜକୃଷ୍ଣ ବାବୁ ବିସ୍ମିତ ହୋଇ ସେ କାହା ଝିଅ, କ'ଣ କରୁଛି ଇତ୍ୟାଦି ପଚାରି ବୁଝିଥିଲେ । ବଲ୍ଲୀ ରାଜକୃଷ୍ଣ ବାବୁଙ୍କୁ ଖୁବ୍ ଛଳେଇ କରି ନିଜ ବାପାଙ୍କ ବିଷୟ କହିଥିଲା । ତା' ବାପା ସ୍ୱାଧୀନତା ପାଇଁ ଦେଶତ୍ୟାଗୀ ହେଲେ । ସ୍ୱାଧୀନତା ପ୍ରାପ୍ତି ପରେ ଯେଉଁମାନେ କ୍ଷମତାରେ ରହିଲେ, ସେମାନେ ନିଜନିଜର କର୍ତ୍ତବ୍ୟ ପାସୋରି ଦେଲେ । ଏପରିକି ସହଯୋଗୀ ସ୍ୱାଧୀନତା ସଂଗ୍ରାମୀଙ୍କୁ ଭୁଲିଗଲେ ବୋଲି ସେ ଆବେଗରେ କହିପକାଇଥିଲା । ଝିଅଟିର ଏଭଳି ଅଭିମାନଭରା କଥା ରାଜକୃଷ୍ଣ ବାବୁଙ୍କୁ ବେଶ୍ ପ୍ରଭାବିତ କରିଥିଲା । ସେ ଏହି ଘଟଣା ସମ୍ପର୍କରେ ବ୍ୟାପକ ଅନୁସନ୍ଧାନ କରିଥିଲେ । ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ପାଖକୁ ଫୋନ୍ କରି ସେ ଏଭଳି ବ୍ୟକ୍ତିଙ୍କ ସନ୍ଧାନ ନେବାକୁ ଅନୁରୋଧ କରିଥିଲେ । ଏହି ସନ୍ଧାନର ପ୍ରଥମ ସୋପାନ ସ୍ୱରୂପ ନେହେରୁ ଲଣ୍ଡନର Indian Embassy ସହିତ ଯୋଗାଯୋଗ କଲେ । ଫଳରେ ଠିକଣାଟିଏ ମିଳିଲା ଓ ଏହି କାର୍ଯ୍ୟ ତ୍ୱରାନ୍ୱିତ ହେଲା । ସେ ସମୟରେ ବାସୁଦେବ ମିଶ୍ର (ବାସୁ ଭାଇନା), ଡାକ୍ତର ସତ୍ୟବାଦୀ ମିଶ୍ର (ମିଛୁ ଭାଇନା), ଶ୍ରୀନିବାସ ମିଶ୍ର (ଦୁଆରୀ) ସର୍ବୋପରି ଜାମାତା ଆର୍ତ୍ତତ୍ରାଣ (ଆର୍ତ୍ତ) ପ୍ରଭୃତି ଏ କାର୍ଯ୍ୟରେ ସହଯୋଗ କଲେ । ବାରମ୍ୱାର ଚିଠି ଲେଖାହୁଏ । ଇଂରାଜୀରେ ଏହି ଚିଠି ଲେଖାହୋଇ ଡାକଘରେ ପକାଯାଏ । ସେଠାରୁ ଆରମ୍ଭ ହୁଏ ଉତ୍ତରଟିଏ ପାଇବାର ରୁଦ୍ଧଶ୍ୱାସ ପ୍ରତୀକ୍ଷା । ବଲ୍ଲୀ କିନ୍ତୁ ଆଶା ନ ହରାଇ ଉଦ୍ୟମ ଚାଲୁ ରଖିଥାଏ । ହୁଏତ ତା'ର ଧୈର୍ଯ୍ୟ ପରୀକ୍ଷା ହେଉଛି ବା ତା' ନନାଙ୍କର ଫେରିବାର ଶୁଭଦିନ ଆହୁରି ବିଳମ୍ବ ଅଛି ।

ପ୍ରତୀକ୍ଷାର ଅସରନ୍ତି ଦିନ କାଟି, ଆଖିକୁ ପଥର କରି ବସିଥିବା ତା' ବୋଉ, ନିତି ପୁଅ ଆସିବ ବୋଲି ଦିନ ଗଣି ଗଣି ବୁଢ଼ୀ ହୋଇଯାଇଥିବା ଜେଜେମାଙ୍କୁ ସେ ଏହି ସମ୍ୱାଦ ଦେବ କି ନାହିଁ ବୋଲି ତା' ମନରେ ମଧ୍ୟ ସନ୍ଦେହ ଥାଏ । ସତରେ କ'ଣ ଉଷୁନା ଧାନ ଗଜା ହେବ? ନନା ବୋଲି କେବେ ତା' ଡାକ ଶୁଣି ନଥିବା ସେହି ନିଷ୍ଠୁର ଜନ୍ମଦାତା କ'ଣ ସତରେ ଫେରିବେ ନିଜର ଜନ୍ମମାଟିକୁ ।

ଲଣ୍ଡନରେ ମଧ୍ୟ ସୁରତ ଅଲ୍ଲିଙ୍କ ଅବସ୍ଥା ସେହିଭଳି ଦୋଦୁଲ୍ୟମାନ । ଚିଠି ପାଆନ୍ତି, ଅଥଚ କେଉଁ ଅପରାଧବୋଧ ଉତ୍ତର ଦେବାକୁ ବାଟ ଓଗାଳେ । ନିରବ ରହିଯାଆନ୍ତି ।

**ବିଶ୍ୱାସର ଦୃଢ଼ ଭିତ୍ତିଭୂମି :**

ଥରେ ବଲ୍ଲୀ ଓ ଆର୍ତ୍ତଙ୍କର ଖଣ୍ଡିଏ ଚିଠି ସୁରତ ଅଲ୍ଲି ପାଇଲେ । ତାହା ନ ଖୋଲି ନ ପଢ଼ି ସେ ସେଇମିତି ପକେଟରେ ରଖିଦେଲେ । ତାଙ୍କର ଜଣେ ଭାରତୀୟ ବନ୍ଧୁ ତାହା

ଦେଖିଲେ । ବାରମ୍ବାର ପଚାରିବା ପରେ ତାହା ଭାରତରୁ ଆସିଛି ଓ ତାଙ୍କ ଝିଅ ଦେଇଛି ବୋଲି ସୁରତ ଅଲ୍ଲି ଉତ୍ତର ଦେଇଥିଲେ । ସେହି ଭାରତୀୟ ବନ୍ଧୁ ଜଣକ ସୁରତ ଅଲ୍ଲିଙ୍କୁ ଗାଳିଦେଲେ ଓ ଜୋର କରି ପକେଟରୁ ଛଡ଼ାଇ ନେଇ ସେ ଚିଠିଟି ପଢ଼ିଲେ । ଚାରିମାସର ଝିଅକୁ ଛାଡ଼ି ସୁରତ ଅଲ୍ଲି ଆସିଛନ୍ତି ଶୁଣିବା ପରେ ସେ ଆଶ୍ଚର୍ଯ୍ୟ ହେଲେ ଓ ସୁରତ ଅଲ୍ଲିଙ୍କୁ ଚିଠି ଲେଖିବା ପାଇଁ ଏକରକମ ବାଧ କଲେ । ସେ ଦୁଇ ତିନି ଦିନ କ୍ରମାଗତ ଅନୁରୋଧ କରିବା ପରେ ସୁରତ ଅଲ୍ଲି ଚିଠି ଲେଖିବାକୁ ରାଜି ହେଲେ । ଏ କଥାଟି ଶ୍ରୀମତୀ ଦେବୀ କିନ୍ତୁ ଭିନ୍ନ ପ୍ରକାର କହନ୍ତି । ତାଙ୍କ ପରିବାରର ଆରାଧ ଦେବୀ ହିଁ ତାଙ୍କୁ ଫେରାଇ ଆଣିବା ପାଇଁ ଦାୟୀ । ଶ୍ରୀମତୀ ଦେବୀ ଏକମାତ୍ର ସେହି ଜଗଜ୍ଜନନୀଙ୍କ ଶରଣରେ ହିଁ ଦିନ କଟାଇଥିଲେ । ବଂଶୀଧର କହୁଥିଲେ ଯେ ସ୍ୱାଧୀନତା ପ୍ରାପ୍ତି ପରେ ସେ ରାତିରେ କ୍ରମାଗତ ଭାବରେ ଶୋଇପାରୁ ନଥିଲେ । ତାଙ୍କୁ କେହି ଜଣେ ନାରୀ ବାରମ୍ବାର କହୁଥିଲେ ଯେ "ତୁ ଫେରିଯା । ଯେଉଁଥିପାଇଁ ତୁ ଦେଶ ଛାଡ଼ିଥିଲୁ, ସେ କାମ ଶେଷ ହୋଇଛି, ତୋତେ ତୋ ପରିବାର ଅପେକ୍ଷା କରି ବସିଛି ।" ବଂଶୀଧର ଅନେକ ଥର ସକାଳୁ ନିଜ ଶରୀରରେ ବେତମାଡ଼ ଭଳି ଦାଗ ଦେଖି ଦୁର୍ଗାଦେବୀଙ୍କର ଏହା ନିର୍ଦ୍ଦେଶ ବୋଲି ଗ୍ରହଣ କରି ନେଇଥିଲେ । ଏ କଥା ହୁଏତ ଆମେମାନେ ବିଶ୍ୱାସ କରି ନପାରୁ । ମାତ୍ର ବିଜ୍ଞାନ ଉପରେ ଯେ ବିଶ୍ୱାସର ସ୍ଥାନ, ଏହା ତ ଆମେ ଅସ୍ୱୀକାର କରିପାରିବା ନାହିଁ । ଶ୍ରୀମତୀ ଦେବୀଙ୍କ ବିଶ୍ୱାସର ହିଁ ବିଜୟ ହୋଇଥିଲା । ବଂଶୀଧର ପୁଣି ଥରେ ପଚିଶ ବର୍ଷ ପରେ ଘରକଥା ମନେ ପକାଇଥିଲେ ।

**ଆଶାର ପ୍ରଥମ କିରଣ :**

ଦିନେ ସମସ୍ତଙ୍କ ଆଶାକୁ ଫଳବତୀ କରି ଚିଠି ସହିତ ଫଟୋଟିଏ ଆସି ପହଞ୍ଚିଲା । କିଏ କହିବ ଏହା ବଂଶୀଧରଙ୍କର ଫଟୋ କି ନାହିଁ । ଶ୍ରୀମତୀ ଦେବୀ ତ କେବେ ଦିନେ ଆଲୁଅରେ ସ୍ୱାମୀଙ୍କ ମୁହଁ ଦେଖିନାହାନ୍ତି । ଜନନୀ ଦ୍ୱିତୀୟା ଦେବୀ ତ କାନ୍ଦି କାନ୍ଦି ଅନ୍ଧୁଣୀ ହେଲେଣି । ଏ ପୁଣି ତାଙ୍କ ଧୋତୀ ସାର୍ଟ ପିନ୍ଧା ବଇଁଶୀ ନୁହେଁ, କୋର୍ଟ ଟାଇପିନ୍ଧା ବାବୁ ବଂଶୀଧର । କେତେକ ଲୋକ ଏକଥା ମଧ୍ୟ କହିଲେ, ଯେ ସମ୍ପତ୍ତି ଲୋଭରେ ଅନ୍ୟ କେହି ବଂଶୀଧର ନାମରେ ନିଜକୁ ପେଶ୍ କରିବା ମଧ୍ୟ ଅସମ୍ଭବ ନୁହେଁ । ଜନନୀ କିନ୍ତୁ କହିଲେ, "ଦେଖ ତା' ଗାଲରେ ଗୋଟେ କଟାଦାଗ ଅଛି ତ? ତେବେ ନିଶ୍ଚୟ ମୋ ପୁଅ ।" ଥରେ ପିଲାଦିନେ ଦୁଷ୍ଟାମି କଲାବେଳେ ବଂଶୀ ପନିକି ଉପରେ ପଡ଼ିଯାଇଥିଲା । ତା' ଗାଲରେ ଗୋଟେ ଗଭୀର ଦାଗ ହୋଇଯାଇଥିଲା । ସେହି ଦାଗ ଏତେଦିନ ପରେ ସନ୍ତାନ ସହିତ ଜନନୀ ମିଳନର ସୁବର୍ଣ୍ଣ ସେତୁ ପାଲଟି ଗଲା । ବିଦେଶୀ ସୁଟ୍ ବୁଟ୍ ପିନ୍ଧା

ବାବୁଙ୍କ ମୁହଁରେ ଝାପ୍ସା କଟାଦାଗ ଦେଖିବା ପରେ ସେ ଫଟୋ ଯେ ବଂଶୀଧରଙ୍କର ଏହା ଗୃହୀତ ହୋଇଗଲା । ଆଉ ବଲ୍ଲୀ, ପିଲାଦିନୁ ଯେ ନିଜ ନନାଙ୍କ ରୂପ ଦେଖିବାର ସୌଭାଗ୍ୟରୁ ବଞ୍ଚିତ ଥିଲା । ସେ ଅପେକ୍ଷା କଲା ସତରେ କ'ଣ ତା' ନନା ଆସିବେ ? କେବେ ଆସିବେ ?

ଯା ପରେ ବାରମ୍ବାର ଚିଠି ଆସିଲା । ଚିଠିରେ ଗ୍ରାମର ସମସ୍ତଙ୍କ ବିଷୟରେ ଅସୁମାରୀ ପ୍ରଶ୍ନ ଥିଲା । ତା' ସହିତ ଥିଲା ସ୍ୱାଧୀନତା ପରବର୍ତ୍ତୀ ଭାରତର ଭାଗ୍ୟ ସମ୍ପର୍କରେ କିଛି ତର୍ଜମା । (ସେ ପତ୍ର ମଧ୍ୟରୁ କେତେକ କେନ୍ଦ୍ରୀୟ ସଂଗ୍ରହାଳୟ ଭୁବନେଶ୍ୱରରେ ରହିଛି ।)

ଦୁର୍ଗାପୂଜା ଆସିଲା, ଗଲା, କାର୍ତ୍ତିକ ମାସ ହେଲା । ଦ୍ୱିତୀୟା ଦେବୀ ସାରା ମାସ ହବିଷ କରିବେ । ବଲ୍ଲୀ କିନ୍ତୁ ଭୟ କରୁଥାଏ ଯେ ଯଦି ପୁଅ ଆସିବା ଖବର ପାଇବ, ହୁଏତ ତା' ଜେଜେମାଙ୍କର ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇଯାଇପାରେ । ଏତେ ବଡ଼ ଆନନ୍ଦ ସେ ହୁଏତ ସହିପାରିବ ନାହିଁ । ତେଣୁ ସେ ବାରମ୍ବାର "ମା'ଲୋ ତୋ ପୁଅ ପରା ଆସୁଛି ବୋଲି ବୁଢ଼ୀଙ୍କୁ କହୁଥାଏ । ବୁଢ଼ୀ ହଁଟିଏ ମାରନ୍ତି । "ତୋତେ କ'ଣ ଥଟ୍ଟା କରିବାକୁ ଆଉ କେହି ମିଳିଲେ ନାହିଁ ?" ତଥାପି ବଲ୍ଲୀ ଏହି ପଦକ କହି ତାଙ୍କର ପ୍ରତିକ୍ରିୟାକୁ ଲକ୍ଷ୍ୟ କରେ । ଅବଶେଷରେ ସେହି ଦିନ ଆସିଲା । ବଂଶୀଧର ଲଣ୍ଡନରୁ ଜାହାଜରେ ଆସି କଲିକତାରେ ଓହ୍ଲାଇଲେ । ତାଙ୍କୁ ଆଣିବାକୁ ଯାଇଥିଲେ ସାନଭାଇ ଆଇନଜୀବୀ ଶ୍ରୀନିବାସ ମିଶ୍ର । ଜାହାଜରୁ ସେ ହାତ ବଢ଼ାଇ ନିଜ ବଡ଼ଭାଇଙ୍କୁ ଡଙ୍ଗାକୁ ଉଠାଇ ଆଣିଲେ । ସେଦିନ ସେମାନେ କଲିକତା କାଳୀଙ୍କ ମନ୍ଦିରକୁ ଗଲେ । ସେ ପ୍ରଥମେ କ୍ଲାଇବ ଷ୍ଟ୍ରିଟ୍‌ର ବିଶପ୍‌ଙ୍କ ପାଖକୁ ଯାଇ ନାମ ବଦଳାଇ ସୁରତ ଅଲ୍ଲିରୁ ବଂଶୀଧର ମିଶ୍ର ଭାବରେ Affidavit କରାଇଲେ ଓ କାଳୀ ମନ୍ଦିରର ବ୍ରାହ୍ମଣର ସଂକେତ ପଇତା ଲଗାଇ ସୁରତ ଅଲ୍ଲି ସତରେ ପାଲଟିଗଲେ ବଂଶୀଧର ମିଶ୍ର । ଜାହାଜରେ ତାଙ୍କର Goods check କରାଗଲା । ସେମାନେ ସେଦିନ କଲିକତା ହୋଟେଲରେ ରହିଲେ । ଏ ଖବର ପାଇ ସିଦ୍ଧାର୍ଥଶଙ୍କର ରାୟ (ବିଶିଷ୍ଟ ରାଜନୀତିଜ୍ଞ) ତାଙ୍କୁ ନିଜ ଘରକୁ ନିମନ୍ତ୍ରଣ କରିଥିଲେ । ସିଦ୍ଧାର୍ଥଶଙ୍କର ରାୟ ଥିଲେ ବଂଶୀଧରଙ୍କର ବ୍ୟକ୍ତିଗତ ବନ୍ଧୁ । ବିଦେଶ ଫେରନ୍ତା ବନ୍ଧୁଙ୍କୁ ଯେ ସେ କେବଳ ସମ୍ବର୍ଦ୍ଧନା ଦେଲେ ତା' ନୁହେଁ, ୧୯୭୪-୭୫ରେ ତାଙ୍କରି ସୁପାରିଶ ବଳରେ ବଂଶୀଧର ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ସେ କଥା ପରେ ଆଲୋଚନା କରାଯିବ । ଗୋଟିଏ ଦିନ ତାଙ୍କ ଆତିଥ୍ୟ ଗ୍ରହଣ କରି ବଂଶୀଧର ଶ୍ରୀନିବାସଙ୍କ ସହିତ ଟ୍ରେନ୍ ଚଢ଼ିଲେ । ପହଞ୍ଚିଲେ କଟକରେ ।

**କଟକରେ ବିଲାତ ଫେରନ୍ତା ବଂଶୀଧର :**

ସେତେବେଳକୁ ଶ୍ରୀନିବାସଙ୍କର ଓକିଲାତି ଆରମ୍ଭ ସମୟ । ଆୟ ଅଧିକ ନୁହେଁ, ମାତ୍ର ପିଲା ଚାରିଟି ହୋଇସାରିଥିଲେ । ଶ୍ରୀନିବାସ ଭୟ କଲେ ହୁଏତ ତାଙ୍କ ବିଦେଶ ଫେରନ୍ତା ଭାଇ ତାଙ୍କର ଛୋଟ ଘରେ ପିଲା ଗହଳିରେ ରହିବାକୁ ପସନ୍ଦ ନ କରିପାରନ୍ତି । ତେଣୁ ସେ ନିଜ ପିଲା ଓ ସ୍ତ୍ରୀଙ୍କୁ ତରବରରେ ଶ୍ୱଶୁର ଘରକୁ ପଠାଇ ଦେଲେ ଓ ଭାଇଙ୍କ ପାଇଁ ଯଥାସମ୍ଭବ ସ୍ୱାଚ୍ଛନ୍ଦ୍ୟର ବନ୍ଦୋବସ୍ତ କଲେ । ସାହେବୀ ଖାଦ୍ୟପେୟର ବ୍ୟବସ୍ଥା ମଧ୍ୟ କରାଗଲା । ଏ ଭିତରେ ବଲ୍ଲୀ ମଧ କଟକରେ କକେଇ (ଶ୍ରୀନିବାସ ମିଶ୍ର)ଙ୍କ ଘରକୁ ଯାଇ ପହଞ୍ଚିଥାଏ । ବଂଶୀଧରଙ୍କ ସମ୍ପର୍କରେ ତତ୍କାଳୀନ ଖବରକାଗଜମାନେ ଏତେ ବଡ଼ ବଡ଼ କଥା ଲେଖୁଥାଆନ୍ତି ଯେ ସମସ୍ତେ ସେହି ବ୍ୟକ୍ତିଙ୍କୁ ଦର୍ଶନ କରିବା ପାଇଁ ଉତ୍କଣ୍ଠିତ ହୋଇଥାଆନ୍ତି । Indian Express ଖବରକାଗଜରେ ସେଦିନ ମୁଖ୍ୟ ସମ୍ବାଦ ଥିଲା, "New Star reborn on Indian Political Screen." ଫଳରେ ଶ୍ରୀନିବାସଙ୍କ ଘରେ ବେଶ୍ ଗହଳି ହେଉଥାଏ । ଦିନକର କଥା, ବହୁତ ଝିଅପିଲା ବଂଶୀଧରଙ୍କୁ ଦେଖିବାକୁ ଗହଳି କରିଥାଆନ୍ତି । ସେମାନଙ୍କ ଭିତରେ ବଲ୍ଲୀ ମଧ ଥାଏ । ଶ୍ରୀନିବାସ ବାବୁ ଇଂରାଜୀରେ ପଚାରିଲେ, "ଆପଣ ଏମାନଙ୍କ ଭିତରୁ ନିଜ ଝିଅକୁ ଚିହ୍ନି ପାରିବେ ?" ବଂଶୀବାବୁ ଟିକିଏ ହସି ବଲ୍ଲୀଯାଏ ଆଗେ ଗଲେ ଓ ତା' ପିଠିରେ ହାତ ରଖି କହିଲେ, "Here is my daughter." ତା'ପରେ ସେ ବଲ୍ଲୀକୁ ପଚାରିଲେ ଯେ ସେ ଇଂରାଜୀ ବୁଝିପାରିବ କି ନାହିଁ । ଉତ୍ତରରେ ବଲ୍ଲୀ କହିଥିଲା ଯେ ସେ ଯେତିକି ଇଂରାଜୀ ପଢ଼ିଛି ସେଇଥିରେ ବୁଝିନେବ । ଏହା ଶୁଣି ବଂଶୀଧର କାନ୍ଦିପକାଇଥିଲେ । ପିତା ଭାବରେ ନିଜର ଦାୟିତ୍ୱ ସେ ତୁଲାଇ ପାରି ନାହାନ୍ତି ବୋଲି କ୍ଷୋଭର ସହିତ କହିଥିଲେ ଓ ଆଉ ଏଭଳି କହି ତାଙ୍କ ମନରେ କଷ୍ଟ ନ ଦେବାକୁ କନ୍ୟାକୁ ଅଶ୍ରୁଳ ନିବେଦନ ମଧ କରିଥିଲେ । ତା' ପରଠାରୁ ସଚେତନ ଭାବରେ ବଲ୍ଲୀ ତା' ନନାଙ୍କ ସହିତ ନିଜର ଯୋଗ୍ୟତା ବିଷୟରେ କଥାବାର୍ତ୍ତା କରି ନଥିଲା ।

**ଘର ଲେଉଟାଣି :**

ଅବଶେଷରେ ପ୍ରତ୍ୟାବର୍ତ୍ତନର ସେହି ପ୍ରତୀକ୍ଷିତ ଦିନ ଆସିଲା । ୧୯୫୧ ଏପ୍ରିଲ ଉଣେଇଶି ତାରିଖ । ଜୋବ୍ରାଠାରୁ ମୋଟର ଲଞ୍ଚରେ ବସି ବଂଶୀଧର ଘରକୁ ଫେରିଲେ । ବାଟସାରା ବିଭିନ୍ନ ସ୍ଥାନରେ ଲଞ୍ଚ ଅଟକାଇ ଲୋକେ ତାଙ୍କୁ ଫୁଲମାଳ ଦେଉଥିଲେ । ମାନପତ୍ର ଦେଉଥିଲେ । ହୁଏତ ସେମାନେ ଭାବୁଥିଲେ ଯେ ସେମାନଙ୍କର ସବୁ ମାନସିକ ଏହି ବିଦେଶ ଫେରନ୍ତା ବ୍ୟକ୍ତିଟି ପୂରଣ କରିଦେଇପାରେ । ଖରାବେଳ ସୁଦ୍ଧା ପହଞ୍ଚିବାକୁ

ଥିବା ଲଞ୍ଚଟି ଉପରଓଳା ପହଞ୍ଚିଲା । ମାଆ ଚଞ୍ଚଳ ହବିଷ କରି ଖାଇ ଦେଇଥିଲେ ଓ ସତରେ ଯଦି ପୁଅ ଫେରି ହବିଷ ଭାତ ଖୋଜିବ ଭାବି ଟିକିଏ ଭାତ ତାଳମା ପତ୍ର ଘୋଡ଼ାଇ ସାଇତି ରଖିଥିଲେ ।

ଖଣ୍ଡସାହୀ ଘାଟରେ ଲଞ୍ଚ ଲାଗିଲା । ଖଣ୍ଡସାହୀ ହାଇସ୍କୁଲର ପିଲାମାନେ ଓ ଶିକ୍ଷକମାନେ ବଂଶୀଧରଙ୍କ ପାଇଁ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ । ସଭା ଓ ସମ୍ବର୍ଦ୍ଧନାର ମୁଖ୍ୟ ଉଦ୍ୟୋକ୍ତା ଥିଲେ ସଚ୍ଚିଦାନନ୍ଦ ମିଶ୍ର ଓରଫ ସଚ୍ଚି ବେବର୍ତ୍ତା । ସଭାପତିତ୍ୱ କରିଥିଲେ ବୟୋବୃଦ୍ଧ ଅଗଣି ଦାଶ । ଅଗଣି ଦାଶ ଥିଲେ ଖଣ୍ଡସାହୀ ହାଇସ୍କୁଲର ସଭାପତି । ସମ୍ପାଦକ ଥିଲେ ଡାକ୍ତର ଅଭିରାମ ଦ୍ୱିବେଦୀ (ସୁରେନ୍ଦ୍ର ଦ୍ୱିବେଦୀଙ୍କ ବଡ଼ଭାଇ) । ସଂକୀର୍ତ୍ତନ ହେଉଥିଲା । ବାଜା ବାଜିଥିଲା । ଫୁଲମାଳ ମଧ୍ୟ ଦିଆଯାଇଥିଲା । ସ୍ୱତଃପ୍ରବୃତ୍ତ ଭାବରେ ଗ୍ରାମର ପିଲା ବୁଢ଼ା ସମସ୍ତେ ସେ ଦୃଶ୍ୟ ଉପଭୋଗ ପାଇଁ ଉପସ୍ଥିତ ହୋଇଥିଲେ ।

ପ୍ରଭୁ ରାମଚନ୍ଦ୍ରଙ୍କର ବନବାସର ଅବଧି ଥିଲା ଚଉଦ ବର୍ଷ । ମାତ୍ର ବଂଶୀଧରଙ୍କର ସ୍ୱେଚ୍ଛାକୃତ ନିର୍ବାସନର ଅବଧି ତା'ଠାରୁ ଦଶବର୍ଷ ଅଧିକ । ସେ ଯାଇଥିଲେ ପିତୃସତ୍ୟ ପାଳିବା ପାଇଁ; ମାତ୍ର ବଂଶୀଧର ଦେଶମାତୃକାର ସେବା ପାଇଁ ପରିବାରକୁ ତୁଚ୍ଛ କରି ଯାଇଥିଲେ । ଖଣ୍ଡସାହୀ ଗ୍ରାମର ଆରାଧ୍ୟ ଦେବତା ରାମେଶ୍ୱରଙ୍କ ପାଖକୁ ଯାଇ ତାଙ୍କୁ ପ୍ରଣାମ କରିବା ପରେ ବଂଶୀଧର ସିଧା ଆସିଥିଲେ ତାଙ୍କ ଘର ସାମନା କଦମ୍ବ ମୂଳକୁ । ସେଠାରେ ବସି ସେ ଶାନ୍ତିରେ ନିଶ୍ୱାସ ମାରିଥିଲେ । ତା'ପରେ ଘରକୁ ଯିବାର ପର୍ବ । ବୋଉ ତ କାନ୍ଦି କାନ୍ଦି ଅନ୍ଧୁଣୀ ହୋଇଥିଲା । ତାକୁ ପ୍ରଣାମ କଲା ବେଳର ଦୃଶ୍ୟ ସତରେ ଅବର୍ଣ୍ଣନୀୟ । ମାଆ ପୁଅଙ୍କର ସେ ମହାମିଳନ ଓ ଉଭୟଙ୍କର ଅଶ୍ରୁର ପ୍ଲାବନରେ ଭାସିଗଲା ଚବିଶ ବର୍ଷର ମାନ ଅଭିମାନ । ସେତେବେଳେ ସ୍କୁଲ ଛାତ୍ର ଥିବା ପଣ୍ଡିତ ପ୍ରବୋଧ କୁମାର ମିଶ୍ର କହନ୍ତି—"ମୁଁ ଦେଖିଛି ସେ ହୃଦୟ ବିଦାରକ ଦୃଶ୍ୟ । କୋର୍ଟ ସାର୍ଟ ପିନ୍ଧା ବିଲାତ ପୁଅ ଆଉ ବୟସ୍କା ଅଳ୍ପଉଚ୍ଚତା ବିଶିଷ୍ଟା ଜନନୀଙ୍କର କୋଳାକୋଳି ହେବାର ସେ ଯେଉଁ ମଧୁର ମୁହୂର୍ତ୍ତ, ତାହା ଆଜି ମଧ୍ୟ ମୋତେ ଶିହରିତ କରେ ।" ଆଉ ଶ୍ରୀମତୀ—ସେ ତ ଚାଳିଶ ବର୍ଷ ବୟସରେ ମଧ୍ୟ ଅବଗୁଣ୍ଠନବତୀ । ରୋଷେଇ ଘର କୋଣରେ ଠିଆହୋଇ ସେ ନିଜ ଭାଗ୍ୟର ଏଭଳି ଖେଳ ଦେଖୁଥିଲେ ସ୍ତମ୍ଭୀଭୂତ ହୋଇ । ଏଥର ଭିଡ଼ କ୍ରମେ ଅପସରି ଗଲା । ପତିପତ୍ନୀଙ୍କୁ ଏକାନ୍ତରେ ପରସ୍ପର ସହିତ କଥା କହିବାର ସୁଯୋଗ ଦେବା ପାଇଁ ହୁଏତ ସମସ୍ତେ ଆଗ୍ରହୀ ଥିଲେ । ମାତ୍ର କି କଥା ? କିଏ କହିବ ? ତେଣୁ ପତି-ପତ୍ନୀଙ୍କର ସମ୍ଭାଷଣ ପର୍ବରେ, କେବଳ ବଂଶୀଧର ଶ୍ରୀମତୀଙ୍କ ମଥାରେ ହାତଟି ରଖିଥିଲେ । ସତେ ଯେପରି କହୁଥିଲେ "ଆଉ ବ୍ୟସ୍ତ କ'ଣ ? ମୁଁ ଆସିଲିଣି

ପରା !" ଶ୍ରୀମତୀଙ୍କର ସେ ସମୟର ପ୍ରତିକ୍ରିୟା କ'ଣ ହୋଇଥିବ, ତାହା ସ୍ୱୟଂ ବିଶ୍ୱକର୍ତ୍ତାଙ୍କୁ ମଧ୍ୟ ଅଗୋଚର ।

ତା'ପରେ ସମୟ ତା' ବାଟରେ ଗଡ଼ି ଚାଲିଲା । ଗଳାବନ୍ଧ କୋର୍ଟ ସ୍ଥାନରେ ଚାଦର ଆସିଲା । ବୁଟ୍ ଜୋତା ସ୍ଥାନ ଦଖଲ କଲା ଟାୟାର ଚପଲ । ପ୍ରତି ହାଟପାଳିରେ ସାଢ଼େ ସାତ ଟଙ୍କାର ସିଗାରେଟ୍ ଟାଣୁଥିବା ମଣିଷଟା ବଟୁଆ ଧରିଲା । ପାନଖିଆ ଅଭ୍ୟାସ କଲା । ଫୁଲ୍‌ପ୍ୟାଣ୍ଟ ଛାଡ଼ି ଧୋତି ପିନ୍ଧିଲା । ଆଉ ଭୁଲିଯାଇଥିବା ଗୀତା ଭାଗବତ ଅଭ୍ୟାସ କଲା । ତା' ସହିତ କୋରାନ୍ ବାଇବଲକୁ ମିଳାଇ ତୁଳନା କଲା । ସର୍ବଧର୍ମ ସମନ୍ୱୟର ଭାବନା ନେଇ ତାଙ୍କର ବିଚାର ଆହୁରି ଉନ୍ନତ ହେଲା । ଶ୍ରୀ ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କର ଯେଉଁ ଭାବନା ଦ୍ୱାରା ସେ ଯୌବନରେ ଅନୁପ୍ରାଣିତ ହୋଇଥିଲେ, ତାହା ଆହୁରି ଉର୍ଦ୍ଧ୍ୱସ୍ୱଳ ହୋଇଉଠିଲା ।

ସମସ୍ତେ ଭାବୁଥିଲେ ବଂଶୀଧର ବିଦେଶରୁ ବହୁତ ଟଙ୍କାପଇସା ଆଣିଥିବେ । କିନ୍ତୁ ପ୍ରଥମେ ଜମି ବିକ୍ରିହୋଇ ଘର ଛାତ ପଡ଼ିଲା ୧୯୫୨ରେ । ବହୁତ ଦିନରୁ ପଥର ଘର ଅଧା ହୋଇ ପଡ଼ିଥିଲା । ଯଦି ପୁଅ ଫେରିବ, ତେବେ ଘର ପୂର୍ଣ୍ଣ ହେବ । ୧୯୫୩ରେ ବଂଶୀଧରଙ୍କର ଦ୍ୱିତୀୟ କନ୍ୟା ସନ୍ତାନ ଜନ୍ମ ହେଲା । ସମସ୍ତେ କହୁଥିଲେ ବିଦେଶ ଫେରନ୍ତା ଭଦ୍ରଲୋକ ନିଶ୍ଚୟ ତାଙ୍କର ଉତ୍ତୀର୍ଣ୍ଣ ଯୌବନା ପତ୍ନୀଙ୍କୁ ଏଥିପାଇଁ କଟକର ବଡ଼ ଡାକ୍ତରଖାନା ନେବେ । କିନ୍ତୁ ସେ କଥା ହୋଇପାରିଲା ନାହିଁ । ସେଇ ପୁରୁଣା ଚାଳଘର କୋଣରେ ସେଦିନ ଝିଅଟିଏ ଜନ୍ମ ହୋଇ ନିଜର ଉପସ୍ଥିତି ଜାହିର କଲା । ସେତେବେଳକୁ ବଲ୍ଲୀର ବିଭାଘର ଦଶବର୍ଷ ହୋଇସାରିଥାଏ । ଯଦି ତା'ର ସନ୍ତାନ ଥାଆନ୍ତେ, ସେମାନେ ମାଉସୀଠାରୁ ନିହାତି ଦଶବର୍ଷ ବଡ଼ ହୋଇଥାଆନ୍ତେ । କିନ୍ତୁ ତାହା ତ ଈଶ୍ୱରଙ୍କ ଇଚ୍ଛା ନଥିଲା । ବଲ୍ଲୀ ନାଁ ବାଛିଥିଲା ଯଦି ତା'ର ଭାଇ ହୁଏ ନାମ ଦିଆଯିବ ସବ୍ୟଶାଚୀ ଆଉ ଝିଅ ହେଲେ ତା'ର ନାମ ରହିବ ସଂଘମିତ୍ରା । ୧୯୫୩ ମସିହା ଜୁନ୍ କୋଡ଼ିଏ ତାରିଖ ସକାଳ ନଅଟା ବେଳେ ସଂଘମିତ୍ରା ଜନ୍ମ ନେଲା । ଝିଅଟିଏ ହୋଇଛି ଶୁଣି ଗାଁରେ ସମସ୍ତେ ନାକ ଟେକିଲେ । ମାତ୍ର ମା' ପୁଅ ଅର୍ଥାତ୍ ଜେଜେମା ଦ୍ୱିତୀୟା ଦେବୀ ଓ ବାପା ବଂଶୀଧର ଉଭୟ ଏଥିପାଇଁ ଥିଲେ ନିର୍ବିକାର । ବଂଶୀଧର ତ ସବୁବେଳେ କହୁଥିଲେ ସଂଘମିତ୍ରା ଓରଫ ମିତୁ ମୋର ପୁଅ ଆଉ ଝିଅ ଉଭୟ । ତା'ର ପାଳନରେ ବଲ୍ଲୀ କିନ୍ତୁ ମୁଖ୍ୟ ଭୂମିକା ଗ୍ରହଣ କଲା । ଭଉଣୀକୁ କନ୍ୟାର ସ୍ନେହ ଦେଇ ସେ ଗଢ଼ିଲା ତା' ମନଲାଖି କରି । ସାହି ପଡ଼ିଶା ଭାବିନଥିଲେ ଯେ ସେ ଘରେ ପୁଣି ଥରେ ଶିଶୁର କାନ୍ଦ ଶୁଭିବ । ମାତ୍ର ତା'ର ଜନ୍ମ ସତେ ଯେପରି ତା' ଜନନୀ

ପାଇଁ ସତୀତ୍ୱର ମହାପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ପବିତ୍ର ଅବକାଶ ଥିଲା । ତେଣୁ ପିଲାଦିନୁ ମିତୁ ଜାଣିଥିଲା ଯେ ସେ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର । ସେ ତା' ବୋଉର ପରୀକ୍ଷା ଫଳ ।

୧୯୫୬ରେ ଦ୍ୱିତୀୟା ଦେବୀଙ୍କର କାଳ ହେଲା । ବଲ୍ଲୀ ତାଙ୍କର ଢେର୍ ସେବା କରିଥିଲା, ଯଦିଚ ସେ ବେଶିଦିନ ବିଛଣାରେ ପଡ଼ିନଥିଲେ । ବୋଉଙ୍କର କ୍ରିୟାକର୍ମ କରିବାକୁ ମଧ୍ୟ ବଂଶୀଧରଙ୍କୁ ଜମି ବିକ୍ରି କରିବାକୁ ହୋଇଥିଲା । ସେତେବେଳେ ଗାଁ ଲୋକମାନଙ୍କର ହୃଦ୍‌ବୋଧ ହୋଇଥିଲା ଯେ ବଂଶୀଧର ବିଦେଶରୁ ଖାଲିହାତରେ ଫେରିଥିଲେ । ସେ ଘର ଛାଡ଼ିବା ପରେ ତାଙ୍କ ଦୋକାନ ନେଇ ଯେଉଁ ମକଦ୍ଦମା ହୋଇଥିଲା ତାଙ୍କ ନନା ସେଠାକୁ ଯାଇ ନଥିଲେ । ଫଳରେ ଗୁଡ଼ାଏ ସମ୍ପତ୍ତି ହାତଛଡ଼ା ହୋଇଯାଇଥିଲା । ଏବେ ପୈତୃକ ସମ୍ପତ୍ତିର ରକ୍ଷଣାବେକ୍ଷଣ ତ ଦୂରର କଥା, ଅଧିକନ୍ତୁ ତାକୁ ବିକ୍ରି କରିବା ପରେ ବଂଶୀଧରଙ୍କର ଆର୍ଥିକ ଅବସ୍ଥା ଅସ୍ୱଚ୍ଛଳ ହୋଇଥିଲା । ଆୟର କୌଣସି ପନ୍ଥା ନଥିଲା; କିନ୍ତୁ ଖର୍ଚ୍ଚ ତ ଅବଶ୍ୟ ଥିଲା । ସେ ଆଣିଥିବା ଗୁଡ଼ାଏ ଗରମ ପୋଷାକ କୋର୍ଟ, ଜୋତା, ମୋଜା, ମଫଲର ପ୍ରଭୃତିକୁ ସେ ଗାଁର ଚାଷୀମୁଲିଆଙ୍କୁ ବାଣ୍ଟି ଦେଉଥିଲେ । ପ୍ରତିବର୍ଷ ତାଙ୍କ ବାକ୍ସ ଖାଲି ହୋଇଯାଉଥିଲା । ବିଦେଶୀ ଜିନିଷ କହିଲେ ଥିଲା ଗୋଟିଏ ରେଡ଼ିଓ (ଯାହା ଅସଜଡ଼ା ହୋଇ ପଡ଼ି ରହିଥିଲା), ଦୁଇ ତିନୋଟି ଘଣ୍ଟା । କିଛି କମ୍ବଳ ଓ ଗରମ ପୋଷାକ ! ଦୀର୍ଘଦିନ ପରେ ତାଙ୍କ ସହିତ ଫେରି ଆସିଥିଲା ତାଙ୍କ ବାପା (ଲକ୍ଷ୍ମୀଧର ମିଶ୍ର) ତାଙ୍କୁ ଦେଇଥିବା ପର କଲମ କାଟିବାକୁ ଦେଇଥିବା ଛୁରିଟି । ଭାରତବର୍ଷକୁ ଫେରିବା ସମୟରେ ବଂଶୀଧରଙ୍କୁ ସ୍ୱୟଂ ଜବାହାରଲାଲ ନେହେରୁ ସେ ରାଜନୀତି ପ୍ରତି ଆଗ୍ରହୀ କି ନାହିଁ ବୋଲି ପ୍ରଶ୍ନ ପଚାରିଥିଲେ । ବଂଶୀଧର ସିଧାସଳଖ ଉତ୍ତର ଦେଇଥିଲେ ଯେ ଭାରତବର୍ଷରେ ସଚ୍ଚୋଟ ମଣିଷଟିଏ ରାଜନୀତି କରିପାରିବ ନାହିଁ । ଏହି ଉତ୍ତର ପଣ୍ଡିତ ନେହେରୁଙ୍କୁ କିଭଳି ଲାଗିଥିଲା କେଜାଣି ସେ ଆଉ କିଛି ପଚାରି ନଥିଲେ । ଏ କଥା ବଂଶୀଧର ବାରମ୍ବାର କହିଥାଆନ୍ତି ।

ବଂଶୀଧର ସ୍ୱାଧୀନ ଭାରତର ଯେଉଁ ରୂପ କଳ୍ପନାରେ ଦେଖିଥିଲେ, ବାସ୍ତବ ରୂପ ଥିଲା ତା'ଠାରୁ ଭିନ୍ନ । ବେଶ୍ ମହଳ, ମନ୍ଥର ଆଉ ନିସ୍ତରଙ୍ଗ ଲାଗୁଥିଲା ସ୍ୱାଧୀନତାର ପରବର୍ତ୍ତୀ ସମୟ । ବିଶିଷ୍ଟ ସାମ୍ବାଦିକ ରାମହରି ମିଶ୍ର କହନ୍ତି ଯେ ବଂଶୀବାବୁ ୧୯୨୭-୨୮ରେ ଦେଶ ଛାଡ଼ିବାର ଯେଉଁ ପଦକ୍ଷେପ ନେଇଥିଲେ, ସେତେବେଳେ ସେ କଂଗ୍ରେସ ପ୍ରତି ଆଗ୍ରହ ତୁଟାଇ ଦେଇଥିଲେ । ଏହିପରି କେତେକ ସର୍ବମାନ୍ୟ ନେତାଙ୍କ ସମ୍ମୁଖରେ ସେ ତାଙ୍କୁ ସମାଲୋଚନା ମଧ୍ୟ କରୁଥିଲେ । ବଂଶୀଧରଙ୍କ ପ୍ରଚଣ୍ଡ ସ୍ୱାଭିମାନୀ ବ୍ୟକ୍ତିତ୍ୱ ପରିବର୍ତ୍ତିତ ପରିସ୍ଥିତିରେ ଆଉ ପଙ୍କିଳ ରାଜନୀତି ଆଡ଼କୁ ଢଳିଲା ନାହିଁ । ତାହାହିଁ ଥିଲା ତାଙ୍କପାଇଁ ଅବଧାରିତ ।

ଶିକ୍ଷା ବ୍ୟବସ୍ଥାର ଉନ୍ନତି ପାଇଁ ସେ ଯେଉଁ ସ୍ୱପ୍ନ ଦେଖିଥିଲେ, ତାହା ତାଙ୍କର ଜନ୍ମ ମାଟିରେ ହିଁ ସାକାର ହୋଇଥିଲା ।

**୧୯୫୧-୫୨ ବେଳକୁ ଓଡ଼ିଶା ତଥା ଭାରତର ରାଜନୀତି :**

୧୯୫୧ରେ ଭାରତବର୍ଷର ପ୍ରଥମ ସାଧାରଣ ନିର୍ବାଚନ ହୋଇଥିଲା । ପଞ୍ଚବାର୍ଷିକ ଯୋଜନା ମଧ୍ୟ ଏହିବର୍ଷ ଆରମ୍ଭ ହୋଇଥିଲା । ୧୯୪୮ ଜାନୁୟାରୀ ପହିଲା ଦିନ ଗଡ଼ଜାତଗୁଡ଼ିକ ଓଡ଼ିଶାରେ ମିଶିବାରୁ ଓଡ଼ିଶାର ଜନସଂଖ୍ୟା ତଥା କ୍ଷେତ୍ରଫଳ ମଧ୍ୟ ବଢ଼ିଯାଇଥିଲା । ତେଣୁ ବିଧାନସଭାର ଆସନ ସଂଖ୍ୟା ଲୋକସଂଖ୍ୟା ଅନୁପାତରେ ବୃଦ୍ଧି ପାଇ ୧୪୦ ହୋଇଥିଲା । ସେହିବର୍ଷ ଓଡ଼ିଶାର ୧୯୫୧ ଡିସେମ୍ବର ୨୦ ତାରିଖରୁ ୧୯୫୨ ଜାନୁୟାରୀ ୧୫ ତାରିଖ ପର୍ଯ୍ୟନ୍ତ ଦୀର୍ଘ ୫୬ ଦିନ ଧରି ନିର୍ବାଚନ ଅନୁଷ୍ଠିତ ହୋଇଥିଲା ।

ଭାରତର ରାଜନୀତିରେ ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ ଓ ମୌଲାନା ଆଜାଦ୍‌ଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ଓଡ଼ିଶାରେ ଡଃ ହାରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନଗୋ, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ମାଳତୀ ଚୌଧୁରୀ ପ୍ରଭୃତିଙ୍କ କାର୍ଯ୍ୟକଳାପ ମଧ୍ୟ ଉଲ୍ଲେଖନୀୟ ଥିଲା । ୧୯୫୦ରୁ ଲାଗୁ ହୋଇଥିବା ଜମିଦାରୀ ଉଚ୍ଛେଦ ବିଲ୍ ମଧ୍ୟ ଓଡ଼ିଶାରେ ବେଶ୍ ଚହଳ ସୃଷ୍ଟି କରିଥିଲା । ୧୯୫୦ ମଇ ମାସ ୧୨ ତାରିଖରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ । ଗଡ଼ଜାତ ମିଶ୍ରଣ ପରେ ପୂର୍ବତନ ରାଜାମହାରାଜାମାନେ କ୍ଷୁବ୍ଧ ହୋଇଥିଲେ । ତେଣୁ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ପ୍ରତାପ କେଶରୀ ଦେଓଙ୍କ ଭଳି ରାଜାମାନେ କଂଗ୍ରେସ ଶାସନ ପ୍ରତି ଏକ ଆହ୍ୱାନ ସୃଷ୍ଟି କରିଥିଲେ ।

ସେ ସମୟରେ ଅର୍ଥମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ରାଧାନାଥ ରଥ । ପଣ୍ଡିତ ନେହେରୁ କଂଗ୍ରେସ ଦଳରେ ଡଃ ମହତାବଙ୍କ ନିମିତ୍ତ ସେକ୍ରେଟାରୀ ଜେନେରାଲ ପଦବୀ ସୃଷ୍ଟି କରିଥିଲେ ଓ ଡଃ ମହତାବଙ୍କୁ କଂଗ୍ରେସର ସାଂଗଠନିକ ଦାୟିତ୍ୱ ଅର୍ପଣ କରିଥିଲେ । ପରେ ଡଃ ମହତାବ ବମ୍ବେର ରାଜ୍ୟପାଳ ଭାବରେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ଓଡ଼ିଶାର ମନ୍ତ୍ରୀମଣ୍ଡଳରେ ଅନ୍ୟ ଯେଉଁମାନେ ଥିଲେ ସେମାନେ ହେଉଛନ୍ତି ପବିତ୍ରମୋହନ ପ୍ରଧାନ, ଭୈରବଚନ୍ଦ୍ର ମହାନ୍ତି, ସୁରେନ୍ଦ୍ରନାଥ ପଟ୍ଟନାୟକ ଓ ସଦାଶିବ ତ୍ରିପାଠୀ, ନିତ୍ୟାନନ୍ଦ କାନୁନଗୋ, ଲିଙ୍ଗରାଜ ମିଶ୍ର ପ୍ରମୁଖ । ୧୯୫୧ର ଛାତ୍ର ଆନ୍ଦୋଳନ ଓ କମ୍ୟୁନିଷ୍ଟ ଦଳର ତହିଁରେ ହସ୍ତକ୍ଷେପ ମଧ୍ୟ ଓଡ଼ିଶାର ନେତୃବର୍ଗଙ୍କ ପ୍ରତି ଏକ ଆହ୍ୱାନ ଥିଲା ।

**ଇତିହାସର ନିଷ୍ଠୁରତା :**

ଏହିଭଳି ସମୟରେ ବଂଶୀଧର ମିଶ୍ର ଘରକୁ ଫେରିଥିଲେ । ସେ ଦେଖିଲେ ଯେ ସମୟ ବହୁତ ଆଗେଇ ଯାଇଛି । କଂଗ୍ରେସ ଦଳର ମୂଳଦୁଆ ପକାଇଥିବା ଏହି ବ୍ୟକ୍ତି ପରେ କମ୍ୟୁନିଷ୍ଟ ମତବାଦ ଆଡ଼କୁ ଢଳିଥିଲେ । ଜୀବନରେ ବହୁ ଅନ୍ଧମୁହାଣୀ ଅତିକ୍ରମ କରି ଯେ କ୍ଲାନ୍ତ ମଧ୍ୟ ହୋଇପଡ଼ିଥିଲେ । ସମୟ ସ୍ରୋତର ଅନୁକୂଳରେ ନିଜକୁ ଭସାଇ ସେ ଭାସିଯାଇଥିଲେ ଅଜଣା ଦେଶକୁ । ସେଠାରେ ପୁଣି ପ୍ରାଣପଣେ ଉଦ୍ୟମ କରି ନିଜକୁ ସାବ୍ୟସ୍ତ କରିଥିଲେ । ଘରକୁ ଫେରିବା ପରେ ଅନୁଭୂତିସମ୍ପନ୍ନ ପ୍ରୌଢ଼ ବଂଶୀଧର ନିଜର ରାଜନୀତିକ ମତ ସମ୍ପର୍କରେ ନେତୃବର୍ଗଙ୍କୁ ସୂଚନା ଦେବାକୁ ଆଗ୍ରହୀ ଥିଲେ । ସେ ଏକାଧିକ ବାର କଟକର କଂଗ୍ରେସ ଅଫିସ ତଥା ଚାନ୍ଦିନୀଚୌକରେ ଥିବା କମ୍ୟୁନିଷ୍ଟ ପାର୍ଟି ଅଫିସକୁ ଯାଇଥିଲେ ବୋଲି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୁରୁଚରଣ ପଟ୍ଟନାୟକ କହନ୍ତି । ନିଜର ଦୃଷ୍ଟିକୋଣ ସମ୍ପର୍କରେ ଅନ୍ୟମାନଙ୍କୁ ଅବହିତ କରିବାକୁ ଚାହିଁ ସେ ବାରମ୍ବାର ବିଫଳ ହୋଇଥିଲେ । କିନ୍ତୁ ସମୟ ତାଙ୍କ ସପକ୍ଷରେ ଗଲା ନାହିଁ । ହୁଏତ ବିଶ୍ୱ ପରିକ୍ରମା କରି ନିଜର ଅମୂଲ୍ୟ ଅନୁଭବକୁ ବାଣ୍ଟିବାକୁ ଚାହିଁଥିବା ମଣିଷଟି ଓଡ଼ିଶାର ରାଜନୀତି ପାଇଁ ଉପଯୁକ୍ତ ବିବେଚିତ ହେଲା ନାହିଁ ବରଂ ତାଙ୍କୁ ରାଜନୀତିକୁ ଆଣିବା କ୍ଷମତାସୀନ ବ୍ୟକ୍ତିମାନଙ୍କ ପକ୍ଷରେ ସୁବିଧାଜନକ ହେଲା ନାହିଁ, ସେକଥା ରହିଗଲା ଇତିହାସର ଅନ୍ଧକାରରେ । ବାରମ୍ବାର ମନମରା ହୋଇ ଫେରିବା ବଂଶୀଧରଙ୍କ ଆତ୍ମସମ୍ମାନକୁ ଭୂଲୁଣ୍ଠିତ କରିଥିଲା । ଯେଉଁ ନୂତନ ତାରକା ଭାରତୀୟ ରାଜନୀତିକ ଆକାଶକୁ ଆଲୋକିତ କରିବ ବୋଲି ସମ୍ବାଦପତ୍ରମାନେ ଭବିଷ୍ୟତ ବାଣୀ କରିଥିଲେ, ସେହି ତାରକା ଉଲ୍‌କା ଭଳି ରାଜନୀତିର ଆକାଶରୁ ଖସିପଡ଼ିଲା ।

"ମୋର ରୋକ୍‌ଠୋକ୍ କଥା କହିବା ଅଭ୍ୟାସ ନେଇ ମୁଁ କ'ଣ ରାଜନୀତି କରିପାରି ଥାଆନ୍ତି ?" ବୋଲି ବଂଶୀଧର କେବେ କେମିତି କହିପକାନ୍ତି । ଓଡ଼ିଶାର ରାଜନୀତିରେ ପାରସ୍ପରିକ ଅସୂୟା ଦେଖି ହୁଏତ ସେ ତହିଁରୁ ଦୂରେଇ ରହିଲେ । ଚାତୁର୍ଯ୍ୟର ଝଲକରେ ବାଟ ନ ହୁଡ଼ି ସେ ଫେରିଗଲେ ନିଜର ଗାଁ ମାଟିକୁ । ତାଙ୍କ ଖବର କେଉଁଠି ଆଲୋଚିତ ହେଲା ନାହିଁ । ତାଙ୍କ ନାମ ମଧ୍ୟ କ୍ରମଶଃ ଲୁଚିଗଲା । ଗାଁ ମାଟି କିନ୍ତୁ ଏହି ପରିଶ୍ରାନ୍ତ ସୈନିକ ସନ୍ତାନଟିକୁ ପରମ ଶ୍ରଦ୍ଧାରେ କୋଳେଇ ନେଇଥିଲା । ବଂଶୀଧରଙ୍କୁ ସେ ନୂତନ ପରିଚୟ ଦେଲା । ତାଙ୍କ ଅନୁଭବର ଯଥାସମ୍ଭବ ଉପଯୋଗ କଲା । ମହାଯୋଗୀ ଶ୍ରୀ ଅରବିନ୍ଦ ସ୍ୱାଧୀନତା ସଂଗ୍ରାମର ବହ୍ନି ଭିତରୁ ଜୀବନ ଆରମ୍ଭ କରିଥିଲେ ହେଁ ଯେମିତି ପରବର୍ତ୍ତୀ କାଳରେ ଅତିମାନସ ଶକ୍ତିର ଉତ୍ସ ସନ୍ଧାନ କରିପାରିଥିଲେ, ପ୍ରାୟ

ସେଇମିତି ବଂଶୀଧର ମିଶ୍ର ଦେବୀପୂଜାରେ ଚଣ୍ଡୀପାଠ କଲେ । ଗୀତା ପାରାୟଣ କଲେ । ଭାଗବତ ସପ୍ତାହରେ ଭାଗବତ ପାଠକଲେ । ଗାନ୍ଧିଜୀଙ୍କ ନୀତି ଜୀବନରେ ଅନୁସରଣ କଲେ ଓ ବିବେକାନନ୍ଦଙ୍କ ବାଣୀଦ୍ୱାରା ଅନୁପ୍ରାଣିତ ହୋଇ ଜୀବ ଭିତରେ ଶିବର ଉପଲବ୍ଧି କରିବାକୁ ପ୍ରୟାସ କଲେ ।

ଖଣ୍ଡସାହୀ ଗ୍ରାମର ଉଚ୍ଚ ଇଂରାଜୀ ବିଦ୍ୟାଳୟ ତାଙ୍କର ହାତ ସ୍ପର୍ଶରେ ଉତ୍କୃଷ୍ଟ ବିଦ୍ୟାଳୟର ମାନ୍ୟତା ପାଇଲା । ତାଙ୍କ ସିଲଟରେ ଗଣିତ କଷି ପିଲାଏ ଗଣିତରେ ଶହେରୁ ଅନେଶ୍ୱତ ରଖିଲେ । ଖଣ୍ଡସାହୀର ଏହି ଉଚ୍ଚ ଇଂରାଜୀ ବିଦ୍ୟାଳୟର ନାମ ଥିଲା, ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠ । ଏହା ସହିତ ଯୋଡ଼ିହୋଇଗଲା ବଂଶୀଧର ମିଶ୍ରଙ୍କ ନାମ । ଜ୍ଞାନ, କର୍ମ ଓ ଭକ୍ତିଯୋଗର ଏକତ୍ର ମିଳନ ଘଟାଇ ବଂଶୀଧର ଶ୍ରଦ୍ଧା ଓ ସମ୍ମାନର ମଣିଷ ପାଲଟିଗଲେ ।

**ସମୟ ସହିତ ନିଜକୁ ଯୋଡ଼ିବାର ପ୍ରୟାସ :**

ବଂଶୀଧର ଉଚ୍ଚଶିକ୍ଷିତ ଥିଲେ । ଦେଶ ବିଦେଶ ଭ୍ରମଣଜନିତ ଅନୁଭବ ତାଙ୍କ ଚିନ୍ତାଧାରାକୁ ପରିପୁଷ୍ଟ କରିଥିଲା । ରାଜନୀତିର ପଙ୍କିଳ ପରିବେଶକୁ ଦୂରରୁ ଜୁହାର କରି ଆଡ଼େଇ ହୋଇ ରହିବାକୁ ପସନ୍ଦ କରୁଥିବା ଏହି ବ୍ୟକ୍ତି କିନ୍ତୁ ନିଜ ଆଗ୍ରହରେ ଦେଶ ବିଦେଶ ସହିତ ଯୋଡ଼ି ହେବାକୁ ପ୍ରୟାସ କରିଥିଲେ । ତାଙ୍କର ପୁରୁଣା ଡାଏରୀରୁ ଏହିଭଳି ଶହ ଶହ ବ୍ୟକ୍ତିଙ୍କର ଠିକଣା ଓ ଫୋନ୍ ନମ୍ବର ମିଳିଥାଏ, ଯେଉଁମାନଙ୍କ ସହିତ ସଂପୃକ୍ତ ହୋଇପାରିଥିଲେ ତାଙ୍କ ଜୀବନ ହୁଏତ ଭିନେ ବାଟରେ ଯାଇପାରି ଥାଆନ୍ତା, ସେମାନଙ୍କ ମଧ୍ୟରୁ କେତୋଟି ନାମ ଏହିଭଳି । ବମ୍ବେର ଗୋରେଗାଓଁର ଆଲୋକ କୁମାର ଦତ୍ତ, କଲିକତାର ରମାନାଥ ବିଶ୍ୱାସ, ଏଚ୍.କେ. ଦାସଗୁପ୍ତ, କେ.ଡି. ଦୁରାଣୀ, ବମ୍ବେର ଦୀନକର ଦେଶାଇ, ବମ୍ବେର କେ.ଏନ୍. ଜୋଗେଲକର ଓ ଏନ୍.ଏମ୍. ଜୋଶୀ, ଲକ୍ଷ୍ନୌର ଆର୍. ଏମ୍. ଲୋହିଆ, କଲିକତାର ଏସ.ପି. ମିଶ୍ର, ବମ୍ବେର ସୁରେଶ ବୈଦ୍ୟ ପ୍ରଭୃତିଙ୍କ ଠିକଣା ସଂଗ୍ରହ କରିଥିଲେ । ହୁଏତ ଏମାନଙ୍କ ସହିତ ସଂପର୍କ ଯୋଡ଼ିବାକୁ ଚେଷ୍ଟା କରିଥିବେ । କେବଳ ଭାରତୀୟ ନୁହନ୍ତି, ଅନେକ ବୈଦେଶିକ ବ୍ୟକ୍ତିତ୍ୱଙ୍କ ଠିକଣା ତାଙ୍କ ଡାଏରୀରେ ଲିପିବଦ୍ଧ । ସେମାନେ ହେଲେ—ଫ୍ରାନ୍ସର Claude Tochnoff, ନାଇରୋବିର Mr. V. Devshri, ନିଉୟର୍କର Dr. W.E.B. Dubois, ନାଇରୋବିର Indian Youth Leagueର ସଭାପତି । The Colonial Times, ନାଇରୋବିର ସଂପାଦକ ମିଷ୍ଟର ବିଦ୍ୟାର୍ଥୀ ଓ ମିଷ୍ଟର ହାରୁନ୍ ଅହମ୍ମଦ, ନାଇରୋବିର The Fleshର ସଂପାଦକ, ନାଇରୋବିର Kenya African Unionର ସଭାପତି, ନାରୋବିର The Observer.

ଏଥିସହିତ ସେ National Peace Council, Maritime House ପ୍ରେସ୍ ମଧ୍ୟରେ Times, New Chromicle, Daily Heralt, Statesman Globe Agency, Trade Union Congress, Toynbee House The Forwardର ସଂପାଦକ, The Kenya Daily Mailର ସଂପାଦକ Mr. R.B. Pandya, The Africa Expressର Editor, ଆଫ୍ରିକାର କେତେକ ନେତା ଏହି ଯେଉଁ ଠିକଣାଗୁଡ଼ିକ ଏଠାରେ ପ୍ରଦତ୍ତ ହେଲା, ସେଗୁଡ଼ିକ ସଂପୂର୍ଣ୍ଣ ଠିକଣା ନୁହେଁ, କାରଣ ସେଗୁଡ଼ିକୁ ପଢ଼ି ବୁଝିବା କଷ୍ଟକର । କିନ୍ତୁ ଏତିକି ଅନୁମାନ କରାଯାଇପାରେ ଯେ ସେ ଗୋଟିଏ ସମୟରେ ଏମାନଙ୍କ ସହିତ ସଂପୃକ୍ତ ହେବାର ପ୍ରୟାସ କରିଥିଲେ । କିନ୍ତୁ ପରିସ୍ଥିତି ତାଙ୍କୁ ସେଥିପାଇଁ ସହଯୋଗ କରି ନଥିଲା । ଡାଏରୀ ପୃଷ୍ଠାରେ ସେ ଉପରଲିଖିତ ସଂସ୍ଥାଗୁଡ଼ିକର ବୈଶିଷ୍ଟ୍ୟ ସଂପର୍କରେ ଠାରିଛନ୍ତି । ପୁଣି ଠାଏ ଠାଏ ଲେଖିଛନ୍ତି ଯେ "I do not know if it exists now!" ପୁଣି ନାଇରୋବିର Kenya African Unionର ସଭାପତିଙ୍କୁ ଲେଖିଛନ୍ତି, I am sorry. I don't remember the Post Box numbers, but there will be no difficulty if your address as above. ଏଥିରୁ ସ୍ପଷ୍ଟ ହୁଏ ଯେ ସେ ବାରମ୍ବାର ସେ ସବୁ ଅନୁଷ୍ଠାନକୁ ପତ୍ର ଦେଉଥିବେ । ସେ ସମୟରେ ଏରୋଗ୍ରାମ ବା ବିଦେଶକୁ ଯିବାରେ ସମର୍ଥ ପତ୍ର ପାଇବା ସମ୍ଭବ ହୋଇ ନଥିବ । ସେଥିପାଇଁ ହୁଏତ ଅର୍ଥ ଖର୍ଚ୍ଚ କରିବାକୁ ସେ ସାହସ କରି ନଥିବେ । ପୁଣି ଗ୍ରାମବାସୀଙ୍କ ଆତ୍ମୀୟତା, ପରିବାରର ସ୍ନେହ ଓ ସ୍କୁଲ ପ୍ରତି କ୍ରମବର୍ଦ୍ଧିଷ୍ଣୁ ଦାୟବଦ୍ଧତା ତାଙ୍କ ଗତିକୁ ଶୃଙ୍ଖଳିତ କରିଥିବ । ସର୍ବୋପରି ବୟସ (୫୫ରୁ ଊର୍ଦ୍ଧ୍ୱ) ତାଙ୍କ ସପକ୍ଷରେ ଯାଇ ନଥିବ । ତେଣୁ କ୍ରମେ ସେ ଗାଁର ମୁରବୀମାନ୍ୟ ମଣିଷ ପାଲଟି ଯାଇଛନ୍ତି । ଆମ ପରମ୍ପରାର ଗୀତା, ଭାଗବତ, ରାମାୟଣ ଆଉ ରୀତିକାବ୍ୟ ଭିତରେ ନିଜର ହଜିଲା ଅତୀତକୁ ଖୋଜିଛନ୍ତି । କିନ୍ତୁ ପ୍ରାଣରେ ସେ ରହିଛନ୍ତି ସେହି ଗଗନବିହାରୀ । ତାଙ୍କର ଦୃଷ୍ଟି ସର୍ବଦା ଥିଲା ଊର୍ଦ୍ଧ୍ୱମୁଖୀ । କଥାକଥାକେ ସେ ମାଛି ଓ ମହୁମାଛିର ଉଦାହରଣ ଦେଉଥିଲେ । ମାଛି ଅପରିଷ୍କାର ପଚାସଢ଼ା ଜିନିଷ ଖୋଜି ଖୋଜି ସେଥିରେ ବସେ; ମାତ୍ର ଫୁଲରୁ ଫୁଲକୁ ଉଡ଼ି ମହୁମାଛି ଖୋଜେ ମହୁ । ପ୍ରାଚୀନ ପରମ୍ପରାରେ ବିଶ୍ୱାସୀ ଓ ଆଧୁନିକ ଜୀବନବୋଧର ଧ୍ୱଜା ଧରି ପରିଣତ ଜୀବନ ବଞ୍ଚିଥିବା ବଂଶୀଧର ନିଜେ ହିଁ ନିଜର ତୁଳନା । ତାଙ୍କ ସମୟର ହୁଏତ କେହି ଏତାଦୃଶ ବହୁଧାବିଭକ୍ତ ବର୍ଣ୍ଣିଳ ଜୀବନ ବଞ୍ଚିଥିବେ, ଯାହାର ହିସାବ ଆମ ପାଖରେ ନାହିଁ ।

**ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠ :**

ଖଣ୍ଡସାହୀରେ ତତ୍କାଳୀନ ଜମିଦାର ଜଗନ୍ନାଥ ମିଶ୍ରଙ୍କ ଆଗ୍ରହରେ ମି.ଇ. ସ୍କୁଲଟିଏ ପ୍ରତିଷ୍ଠିତ ହୋଇଥିଲା । ୧୯୫୦ ବେଳକୁ ସେହି ବିଦ୍ୟାଳୟକୁ ହାଇସ୍କୁଲରେ ପରିଣତ କରିବା ପାଇଁ କେତେଜଣ ଉତ୍ସାହୀ ଯୁବକ ଅଣ୍ଟାଭିଡ଼ି ବାହାରିଥିଲେ । ସେମାନଙ୍କ ଭିତରୁ ସଚ୍ଚିଦାନନ୍ଦ ମିଶ୍ର, ଡାକ୍ତର ଅଭିରାମ ଦ୍ୱିବେଦୀ ପ୍ରମୁଖ ଥିଲେ ଅନ୍ୟତମ । ପଣ୍ଡିତ ନାରାୟଣ ମିଶ୍ର ପ୍ରଭୃତି ଏଥିରେ ସକ୍ରିୟ ସହଯୋଗ କରିଥିଲେ । ଘରକୁ ଘର ବୁଲି ପିଲାମାନେ ଚାନ୍ଦା ଆଦାୟ କରୁଥିଲେ । ସାହିର ବିଶିଷ୍ଟ ବ୍ୟକ୍ତିମାନଙ୍କ ଘରକୁ ଯାଇ ସଚ୍ଚିବାବୁ ମଧ୍ୟ ସ୍କୁଲର ଆବଶ୍ୟକତା ସମ୍ପର୍କରେ ଆଲୋଚନା କରୁଥିଲେ । ସେତେବେଳକୁ ସେ ଟାଙ୍ଗୀ ସ୍କୁଲର ଶିକ୍ଷକତା ଛାଡ଼ି ଗାଁରେ ବସିଥିଲେ ଓ ଆମାଶୟରେ ଦୀର୍ଘଦିନ ଭୋଗିବା ପରେ କିଞ୍ଚିତ ସୁସ୍ଥ ହୋଇଥିଲେ । ସେ ସ୍କୁଲ ଘର ତିଆରି ପାଇଁ ନଡ଼ା ଓ ବାଉଁଶ ମାଗିବା ପାଇଁ ପ୍ରଥମେ ବଂଶୀବାବୁଙ୍କ ଘରକୁ ଯାଇଥିଲେ । ସେତେବେଳକୁ ବଂଶୀବାବୁ ବିଦେଶରୁ ଫେରି ନଥିଲେ । ସ୍କୁଲ ସିନା ହେଲା, ମାତ୍ର ପଢ଼ାଇବ କିଏ ? ଯାହା ଯେମିତି ପଢ଼ା ହେଉଥାଏ ସିନା ଗଣିତ ପଢ଼ା ଜମା ହୋଇପାରେନା । ବିଶେଷକରି ତ୍ରିକୋଣମିତି ପଢ଼ାଇବା ସମ୍ଭବ ମଧ୍ୟ ହୁଏ ନାହିଁ । ଗାଁ ସ୍କୁଲରେ ସଚ୍ଚିବାବୁ ହେଡ୍‌ମାଷ୍ଟର ହୋଇ ହାଇସ୍କୁଲ ତିଆରି କରିଥିଲେ । ତେଣୁ ସ୍କୁଲ ପାଇଁ ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା । ଦିନେ ଅତି ସନ୍ତର୍ପଣରେ ସେ ବିଲାତ ଫେରନ୍ତା ବଂଶୀବାବୁଙ୍କୁ ପରାମର୍ଶ ଦେଇଥିଲେ ଟିକିଏ ସ୍କୁଲରେ ପିଲାଙ୍କୁ ତ୍ରିକୋଣମିତି ପଢ଼ାଇ ଦେବାକୁ । ବଂଶୀବାବୁ ଖୁସିରେ ସେହି ପରାମର୍ଶ ଗ୍ରହଣ କରିଥିଲେ ଓ ତତ୍‌କ୍ଷଣାତ୍ ତ୍ରିକୋଣମିତିର ଗଣିତଟି କଷି ଦେଇଥିଲେ । ବାସ୍ ସେହିଦିନଠାରୁ ଆରମ୍ଭ ହେଲା ବଂଶୀଧରଙ୍କର ସ୍କୁଲ ସହିତ ସମ୍ପର୍କ । ମାସିକ ଷାଠିଏ ଟଙ୍କା ମାତ୍ର ପାଇ ବିଦେଶ ଫେରନ୍ତା ଅଶେଷ ଅନୁଭୂତି ସମ୍ପନ୍ନ ବିଶିଷ୍ଟ କଂଗ୍ରେସ ନେତା ବଂଶୀଧର ମିଶ୍ର ସ୍କୁଲରେ ଶିକ୍ଷକତା ଆରମ୍ଭ କଲେ । କେବଳ ତ୍ରିକୋଣମିତି ପଢ଼ାଇବାକୁ ନିଯୁକ୍ତ ଏହି ଶିକ୍ଷକ ମଣିଷଟି ସ୍କୁଲର ମେରୁଦଣ୍ଡ ପାଲଟିଗଲେ । ଗଣିତ ସହିତ ଇଂରାଜୀ, ସଂସ୍କୃତ ଓ ସାହିତ୍ୟ ପଢ଼ାଇଲେ । ସେ ସମୟର ଛାତ୍ର ବର୍ତ୍ତମାନର ପ୍ରବୀଣ ଶିକ୍ଷାବିତ୍ ଉମାନାଥ ମହନ୍ତ ତାଙ୍କର ସ୍ମୃତି ଚାରଣ କରି କହନ୍ତି, ଦିନେ ଦେଖିଲୁ, ସେଇ ବିଲାତ ଫେରନ୍ତା ସାହେବ ଆମ ସ୍କୁଲକୁ ଶିକ୍ଷକ ହୋଇ ଆସିଲେ । ଆମର ସେତେବେଳକୁ ନବମ ଶ୍ରେଣୀ । 'ସାହେବ'ଙ୍କ ପାଖରେ ପାଠ ପଢ଼ିବୁ ! ଆମ ଆନନ୍ଦ ଦେଖେ କିଏ ? ୧୯୫୨ ସାଲ ଅଗଷ୍ଟ ୨୧ ତାରିଖ ଦିନ ଶିକ୍ଷକ ଭାବେ ନିଯୁକ୍ତି ପାଇ ସେ ଯେତେବେଳେ ଆମର ପ୍ରଥମ କ୍ଲାସ୍ ନେଲେ, ସେତେବେଳେ ଆମପରି ସାଧାରଣ ପିଲାଙ୍କର ହୋସ୍ ଉଡ଼ିଯିବା

ଅବସ୍ଥା । କାରଣ ସିଏ ଯେଉଁ ଇଂରାଜୀ ଉଚ୍ଚାରଣ କରୁଥିଲେ, ଆମେ ତାଙ୍କୁ କିଛି ବୁଝିପାରୁ ନଥିଲୁ । ଇଂରାଜୀ 'Therefore' ଶବ୍ଦକୁ ସେ 'ଦେୟାର୍ଫ' ଭାବେ ଉଚ୍ଚାରଣ କରନ୍ତି, ଏକଥା ଆମକୁ ଧରିବାକୁ ଢେର୍ ଦିନ ଲାଗିଗଲା । ପାଠ ପଢ଼ାଇଲା ବେଳେ ନିଜେ ସେ ପାଠ ଭିତରେ ତନ୍ମୟ ହୋଇଥାଆନ୍ତି । କ୍ଲିଷ୍ଟ ଗଣିତର ସମାଧାନ ସୂତ୍ର ହେଉ ବା ଇଂରାଜୀ କବିଙ୍କର ଲେଖାର ରହସ୍ୟ ଜାଲ ଉନ୍ମୋଚନ କରିବା ହେଉ, ସବୁଥିରେ ସେ ପାଆନ୍ତି ଅଫୁରନ୍ତ ଆନନ୍ଦ । କିନ୍ତୁ ଆମ ଭଳିଆ 'ଗଧ' ପିଲା ତାଙ୍କ ଗଣିତ ପାଠ ମଧ୍ୟ ଧରିପାରୁନା । ୧୯୫୫ ଜୁଲାଇ ୧୪ରୁ ଉମାବାବୁ ତାଙ୍କର ସହକର୍ମୀ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ବିନା ପ୍ରସ୍ତୁତିରେ ସେ ଯେ କୌଣସି ବିଷୟ ପଢ଼ାଇ ପାରନ୍ତି । ସବୁ ଶିକ୍ଷକ ଏପରିକି ପ୍ରଧାନ ଶିକ୍ଷକ ମଧ୍ୟ ବିନା ଦ୍ୱିଧାରେ ତାଙ୍କଠାରୁ ପାଠ ବୁଝି ନେଉଥିଲେ । କେବେ ସେ ସ୍କୁଲର ପ୍ରଧାନ ଶିକ୍ଷକ ତ କେବେ ସହକାରୀ ଶିକ୍ଷକ ଭାବେ କାର୍ଯ୍ୟ କରିଛନ୍ତି । ୧୯୫୨ ଅଗଷ୍ଟ ୨୧ ତାରିଖରୁ ୧୯୬୭ ଜୁଲାଇ ୨୪ ତାରିଖ ପର୍ଯ୍ୟନ୍ତ ଦୀର୍ଘଦିନ ସେ ଖଣ୍ଡସାହୀ ମି.ଇ. ସ୍କୁଲର ସହକାରୀ ଶିକ୍ଷକ ଏବଂ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କରିଥିଲେ ହେଁ ମୁଖ୍ୟତଃ ସେ ହାଇସ୍କୁଲରେ ହିଁ କ୍ଲାସ୍ ନେଉଥିଲେ । ୧୯୬୭ ଅଗଷ୍ଟ ମାସରୁ ହାଇସ୍କୁଲରେ ତାଙ୍କର ନିଯୁକ୍ତିର ଆଶଙ୍କା ଦେଖାଦେବାରୁ ସେ ତତ୍‌କ୍ଷଣାତ୍ ଦୀର୍ଘ ୧୫ ବର୍ଷର ଚାକିରୀର ବରିଷ୍ଠତାକୁ ବେଖାତିର କରି ହାଇସ୍କୁଲରେ କାର୍ଯ୍ୟ କରିଥିଲେ । ବାର୍ଦ୍ଧକ୍ୟ ଜନିତ କାରଣରୁ ୧୯୬୯ ଜୁଲାଇ ୧୦ ତାରିଖରେ ସେ ସ୍ୱଇଚ୍ଛାରେ ଚାକିରୀରୁ ଅବସର ନେଲେ । ସ୍କୁଲ ପ୍ରତି ଅବଦାନକୁ ସ୍ମରଣ କରି କର୍ତ୍ତୃପକ୍ଷ ତାଙ୍କୁ ସ୍କୁଲ ପରିଚାଳନା ସମିତିର ସଭ୍ୟ ଭାବରେ ଗ୍ରହଣ କଲେ । ଏହି ପଦବୀରେ ସେ ୧୯୭୩ ମସିହା ମେ ମାସ ୨ ତାରିଖ ପର୍ଯ୍ୟନ୍ତ ରହିବା ପରେ ତହିଁରୁ ଓହରି ଆସିଥିଲେ । (ଉମାନାଥ ମହନ୍ତଙ୍କ ସୌଜନ୍ୟରୁ ପ୍ରାପ୍ତ) । ସକାଳୁ ସନ୍ଧ୍ୟା ଯାଏ ଗରିବ ଓ ମେଧାବୀ ଛାତ୍ରଛାତ୍ରୀମାନେ ତାଙ୍କ ଘରେ ଗହଳି କରନ୍ତି । ପାଠ ପଢ଼ାଇବା ସମୟରେ ବଂଶୀଧର ସବୁ ଭୁଲିଯାଉଥିଲେ । ଗଣିତର ଗୋଟିଏ ପ୍ରୋବ୍ଲେମ୍ ସମାଧାନ ନ କରି ପାରିଲେ ସେ ଖାଇବା ପିଇବା ଛାଡ଼ି ରାତିଦିନ ସିଲଟ ଖଡ଼ି ଧରି ବସି ରହୁଥିଲେ । ସ୍କୁଲରେ ଗଣିତ ବୁଝାଇବା ବେଳେ ସେ ଏତେ ଶୀଘ୍ର ଗଣିତ କରିଦେଉଥିଲେ ଯେ ସାଧାରଣ ପିଲାଙ୍କ ପକ୍ଷରେ ବୁଝିବା କଷ୍ଟକର ହେଉଥିଲା । କିନ୍ତୁ ମେଧାବୀ ଛାତ୍ରଛାତ୍ରୀମାନେ ବଂଶୀଧରଙ୍କ କ୍ଲାସ୍ ପାଇଁ ଅପେକ୍ଷା କରି ରହୁଥିଲେ । ତାଙ୍କ ଘରେ ଏତେ ପିଲା ଗହଳି କରୁଥିଲେ ଯେ ତାଙ୍କ ସାନଝିଅ ମିତୁ ବେଳେ ବେଳେ ସେ ଏକୁଟିଆ ବୋଲି ପାଶୋରି ଦେଉଥିଲା ।

ସେ ସକାଳ ୧୦ଟା ସୁଦ୍ଧା ଖାଇପିଇ ବାଡ଼ିଟିଏ ଧରି ବ୍ୟାଗ୍ ଓ ବଟୁଆ ସହିତ ସ୍କୁଲରେ ପହଞ୍ଚି ଯାଉଥିଲେ । ଗାନ୍ଧିଜୀଙ୍କ ଘଡ଼ିଭଳି ତାଙ୍କ ପଇତାରେ ଘଡ଼ିଟିଏ ଝୁଲି

ରହୁଥିଲା । ଠିକ୍ ଘଣ୍ଟା ବାଜିଲେ ସେ କ୍ଲାସ୍‌କୁ ଯାଉଥିଲେ । ସେ କାହାକୁ କେବେ ମାଡ଼ ମାରିଥିବା କଥା ଜଣା ନାହିଁ; କିନ୍ତୁ ପିଲାମାନେ ଅବାଧ ହେଲେ ସେ ସହିପାରୁ ନଥିଲେ । କ୍ରୋଧରେ ନିଜେ ବେହୋସ ହୋଇଯାଉଥିଲେ । କପି କରିବା କଥାଟାକୁ ସେ ଜମା ବରଦାସ୍ତ କରିପାରୁ ନଥିଲେ । ସେ ସମୟରେ ପଣ୍ଡିତ ନେହେରୁ ଆହ୍ୱାନ ଦେଇଥିଲେ ଯେ "କଳାବଜାରୀମାନଙ୍କୁ ନିକଟତମ ବତୀଖୁଣ୍ଟରେ ଝୁଲାଇ ଦିଅ ।" ବଂଶୀଧର ମଧ ଏହି ଆହ୍ୱାନ ଦ୍ୱାରା ପ୍ରଭାବିତ ହୋଇ ବାରମ୍ବାର କହୁଥିଲେ, "କପି କରି ଶିକ୍ଷାୟତନକୁ କଳୁଷିତ କରୁଥିବା ପିଲାମାନଙ୍କୁ ନିକଟତମ ବତୀଖୁଣ୍ଟରେ ଝୁଲାଇ ଦିଆଯାଉ ।" (ହାୟ ଯଦି ଆଜି ସିଏ ବଞ୍ଚିଥାଆନ୍ତେ !) ସ୍କୁଲରେ ପାଠ ପଢ଼ାଇବା ସହିତ ପିଲାଙ୍କୁ ଗୀତ ଶିଖାଇବା, ଭାଷଣ ଦେବାର କାଇଦା ଶିଖାଇବା, ଗଛ ଲଗାଇବା ଓ ଖେଳକୁଦ ପାଇଁ ଆଗ୍ରହୀ କରାଇବାରେ ତାଙ୍କର ଆନନ୍ଦ ଥିଲା । ପ୍ରାର୍ଥନା ସମୟରେ ସେ ପ୍ରାୟ ଉପସ୍ଥିତ ରହୁଥିଲେ । ଗଣିତ, ସଂସ୍କୃତ ବା ଇଂରାଜୀ ପଢ଼ାଇବା ସହିତ ସେ ଇତିହାସ ଓ ଭୂଗୋଳକୁ ମଧ ଖୁବ୍ ଆକର୍ଷଣୀୟ ଢଙ୍ଗରେ ପଢ଼ାଇ ପାରୁଥିଲେ । କାରଣ ଇତିହାସକୁ ସେ ଭୋଗିଥିଲେ ଓ ଭୂଗୋଳକୁ ଦେଖିଥିଲେ । ମାତ୍ର ଗଣିତ ପାଠରେ ହିଁ ତାଙ୍କର ସମସ୍ତ ସାମର୍ଥ୍ୟ ଉପଯୋଗ ହେଉଥିଲା ।

ସଂସ୍କୃତ କ୍ଲାସ୍‌ରେ ସେ ଉଚ୍ଚାରଣ ଉପରେ ଗୁରୁତ୍ୱ ଦେଉଥିଲେ । ଯଦି ଜଣେ ଉଚ୍ଚାରଣ ସହିତ ସଂସ୍କୃତ ପଢ଼ିବ, ସେ ତା'ର ଅର୍ଥ ବୁଝିପାରିବ । ଆଉ ଅର୍ଥ ବୁଝିପାରିଲେ ତା'ର ଘୋଷିବା ଦରକାର ପଡ଼ିବ ନାହିଁ । ସେ ମାନେବହି ପଢ଼ାଇବାର ଘୋର ବିରୋଧୀ ଥିଲେ । ଯିଏ ପାଠ୍ୟ (Text) ଠିକ୍ ଭାବରେ ପଢ଼ିଥିବ, ମାନେବହି ତା'ର ଦରକାର ହେବ ନାହିଁ ବୋଲି ସେ କହୁଥିଲେ । ଏପରିକି ଇଂରାଜୀ କ୍ଲିଷ୍ଟ ଶବ୍ଦମାନଙ୍କର ଅର୍ଥ ବହିର ସେହି ପୃଷ୍ଠାରେ ଗାର ପକାଇ ଲେଖିବାକୁ ସେ ବରାବର ବାରଣ କରୁଥିଲେ ଯେ ଯେଉଁ ଶବ୍ଦର ଅର୍ଥ ସାଙ୍ଗେ ସାଙ୍ଗେ ମିଳିଯିବ, ତାହା ସାଙ୍ଗେ ସାଙ୍ଗେ ଭୁଲି ମଧ ହୋଇଯିବ । ତେଣୁ ସେ କହୁଥିଲେ ଯେ କଷ୍ଟ ଶବ୍ଦର ଅର୍ଥ ଗୋଟିଏ ସ୍ୱତନ୍ତ୍ର ଖାତାରେ ଲେଖି ରଖିବା ଭଲ । ତେବେ ତାହା ନିଶ୍ଚୟ ଦୀର୍ଘଦିନ ମନେ ରହିବ ।

ଜଗନ୍ନାଥ ବିଦ୍ୟାପୀଠରେ ଗଠିତ ହୋଇଥିବା 'ଜନସେବା ସମାଜ'କୁ ସେ ଉତ୍ସାହିତ କରୁଥିଲେ । 'ଜନସେବା ସମାଜ'ରେ ଯୋଗ ଦେଉଥିବା ପିଲାମାନେ ଯାନିଯାତ୍ରାରେ ଲୋକଙ୍କୁ ପିଇବା ପାଣି ଦେବା ସହିତ କାହାର ପିଲାଛୁଆ ହଜିଗଲେ ଖୋଜି ଦେଉଥିଲେ ବା କାହା ଦେହ ଖରାପ ହେଲେ ସାହାଯ୍ୟ କରୁଥିଲେ । ସେହିଭଳି ସ୍କୁଲରେ ସେ ବିବେକାନନ୍ଦ ଶତବାର୍ଷିକୀ ଅବସରରେ ବକ୍ତୃତା ଓ ପ୍ରବନ୍ଧ ପ୍ରତିଯୋଗିତାର ଆୟୋଜନ କରିଥିଲେ ।

**ଶିକ୍ଷକ ଭାବରେ ବଂଶୀବାବୁ :**

ସ୍କୁଲରେ ଯେ ବଂଶୀବାବୁ ଭଲ ଶିକ୍ଷକ ଭାବରେ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ ତାହା ନୁହେଁ, ଆଖପାଖ ସ୍କୁଲର ପିଲା ଏପରି କି ବିଭିନ୍ନ ଟ୍ରେନିଂ କଲେଜର ଶିକ୍ଷକ ଛାତ୍ରମାନେ ତାଙ୍କଠାରୁ ଜଟିଳ ଗଣିତମାନ ବୁଝିବାକୁ ଆସୁଥିଲେ । କେହି କେହି ଚିଠି ଦେଇ ମଧ୍ୟ ତାଙ୍କଠାରୁ ପ୍ରଶ୍ନର ସମାଧାନ ଚାହୁଁଥିଲେ । ଘରେ ବଂଶୀବାବୁ ଥିଲେ ୨୪ ଘଣ୍ଟିଆ ଶିକ୍ଷକ । ତାଙ୍କଦ୍ୱାରା ଛାତ୍ରଛାତ୍ରୀମାନଙ୍କ ଦ୍ୱାର ସର୍ବଦା ଖୋଲାଥିଲା ମିତୁର ଅକ୍ଷର ଶିକ୍ଷା ଆରମ୍ଭ ବେଳେ ବଂଶୀବାବୁ ଖଣ୍ଡେ ସିଲଟ ଆଣି ଦେଇଥିଲେ । ତାହାର ଗୋଟିଏ କୋଣ ଟିକିଏ ଫଟା ଥିଲା ବୋଲି ମିତୁ ତାକୁ ନେଇନଥିଲା । ସେହି ସିଲଟ, ଗୋଟିଏ ଚକ୍ ଡବା ଆଉ ପୁଳାଏ କନା ଥିଲା ତାଙ୍କର ପାଠ୍ୟ ଉପକରଣ । ପ୍ରାୟ ୧୯୫୭-୫୮ରେ କିଣାଯାଇଥିବା ସେ ସିଲଟ ୧୯୮୮ ମସିହା ପର୍ଯ୍ୟନ୍ତ ଥିଲା । କେତେ ବ୍ୟାଚ୍‌ର ମ୍ୟାଟ୍ରିକ୍ ପରୀକ୍ଷାର୍ଥୀ ସେ ସିଲଟ ଦୟାରୁ ଭଲ ନମ୍ବର ରଖି ପାଶ୍ କରିଥିଲେ ତା'ର ହିସାବ ନାହିଁ । ଗଣିତଟିଏ ଉତ୍ତର ନ ବାହାରିବା ଯାଏ ତାଙ୍କୁ ରୀତିମତ ଆବିଷ୍ଟ କରି ରଖୁଥିଲେ । ଏମିତି ବି ହୋଇଛି ବଂଶୀବାବୁ ରାତିରେ ଲଣ୍ଠନଟି ଟିକିଏ ଦବେଇ ଦେଇ ମୁଣ୍ଡ ଉପରେ ରଖି ଶୋଇପଡ଼ିଛନ୍ତି । ଅଧରାତିରେ ଉଠି ଗଣିତଟି କଷି ଉତ୍ତର ପାଇବା ପରେ ତାଙ୍କୁ ନିଦ ହୋଇଛି ।

ଖେଳକୁଦ ମଧ୍ୟ ତାଙ୍କର ଆଗ୍ରହ ଥିଲା । ଖଣ୍ଡସାହୀ ହାଇସ୍କୁଲ ପିଲାଙ୍କୁ ସେ ଭଲିବଲ ଖେଳିବାକୁ ଉତ୍ସାହିତ କରୁଥିଲେ । ଏପରି କି ଖଣ୍ଡସାହୀ ଗ୍ରାମରେ ଚେସ୍ ଭଳି ବୁଦ୍ଧି କସରତର ଖେଳକୁ ସେ ପ୍ରଥମେ ଲୋକପ୍ରିୟ କରାଇଥିଲେ । ସେ ସମୟର ଛାତ୍ରମାନେ ରାମଚନ୍ଦ୍ର ଦାଶ, ପର୍ଶୁରାମ ଦ୍ୱିବେଦୀ, ରାହାସ ଦାଶ, ଫକୀର ଦାଶ, ଅକ୍ଷୟ ମିଶ୍ର, ଧୀରେନ୍ଦ୍ର ଦାଶ, ଆଶାଲତା ମିଶ୍ର, ସୁଧାଂଶୁ ମିଶ୍ର ପ୍ରଭୃତି ରୀତିମତ ଛୁଟିଦିନରେ ଆସି ସାର୍‌ଙ୍କ ସାଙ୍ଗରେ ଚେସ୍ ଖେଳୁଥିଲେ । ଏହା ବ୍ୟତୀତ ସେ ଠାକୁର ଦାଣ୍ଡରେ ବସି ସ୍କୁଲର ହେଡ୍‌ମାଷ୍ଟର ଓ ଅନ୍ୟାନ୍ୟ ବୟସ୍କ ମଣିଷମାନଙ୍କ ସହିତ ପଶା ମଧ୍ୟ ଖେଳୁଥିଲେ । ଫଳରେ ଅଭିଭାବକ ଓ ପିଲାମାନଙ୍କ ନିକଟବର୍ତ୍ତୀ ହେବା ତାଙ୍କ ପକ୍ଷରେ ସହଜ ହୋଇଥିଲା । ଭଲଗୁଣ ପାଇଁ ସେ ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ ସତ; ମାତ୍ର କୌଣସି ଖରାପ ଗୁଣ ଦେଖିଲେ ସାଙ୍ଗେ ସାଙ୍ଗେ କାହାର ଉପସ୍ଥିତ ପ୍ରତି ସଚେତନ ନ ହୋଇ ତାକୁ ବିରକ୍ତ ହେଉଥିଲେ । ତାଙ୍କ ବିରକ୍ତିର ଯଥାର୍ଥତା ଥିଲେ ମଧ୍ୟ ଅନେକ ସମୟରେ ତାହା ଗୃହୀତ ହେଉ ନଥିଲା । ଓଲଟି ବଂଶୀବାବୁଙ୍କୁ ସେଥିପାଇଁ ନାନାଦି କଟୁକଥା ଶୁଣିବାକୁ ପଡୁଥିଲା । କିନ୍ତୁ ଶିକ୍ଷକ ଭାବରେ ସେ ଥିଲେ ଅନେକ ସୁଗୁଣର ଅଧିକାରୀ ।

ପିଲାମାନଙ୍କୁ ଯେ କୌଣସି ବିଷୟ ପଠନ ପାଇଁ ସେ ଆଗ୍ରହୀ କରିଦେଇ ପାରୁଥିଲେ । ଏପରି ମଧ ହୋଇଛି, ଶୀତଦିନେ ପାଣି ଗରମ କରିବା ପାଇଁ ବାରିପଟ ଚୁଲିରେ ପାଣି ବସାଇ ନିଜେ ଚୁଲି ଜାଳୁ ଜାଳୁ ବଂଶୀବାବୁ ପିଲାମାନଙ୍କୁ ପାଠ ବତାଇ ଦେଇଛନ୍ତି । ବିଶ୍ୱାସ ହୋଇଛି ଯେ ବଂଶୀବାବୁଙ୍କ ହାତ ବାଜିଲେ ପିଲାଏ ମଣିଷ ହେବେ । ୧୯୬୪ ଛାତ୍ର ଆନ୍ଦୋଳନ ସମୟରେ ବଂଶୀବାବୁ ଛାତ୍ରମାନଙ୍କୁ ନୈତିକ ସାହସ ଦେଉଥିଲେ । ଶିକ୍ଷାଦାନ କରି ମଣିଷ ଗଢ଼ିବାର ଏହି ମନ୍ତ୍ରଟି ସେ ଜୟୀ ଭାଇନା ଓରଫ ବଡ଼ମାଷ୍ଟ୍ରେ ବା ତାଙ୍କ ବାଲ୍ୟଗୁରୁଙ୍କଠାରୁ ପାଇ ସେହି ଆଦର୍ଶରେ ନିଜକୁ ଗଢ଼ିଥିଲେ ।

ଆଦର୍ଶର କଥା କହିବା ଓ ତାକୁ ପାଳନ କରିବା ଦୁଇଟା ସମ୍ପୂର୍ଣ୍ଣ ଭିନ୍ନ କଥା । କିନ୍ତୁ ବଂଶୀବାବୁ ଆଦର୍ଶକୁ ପାଳନ କରୁଥିଲେ । ସେଥିପାଇଁ ସେ ଗ୍ରାମର ବହୁ ଲୋକଙ୍କ ଦ୍ୱାରା ଗୃହୀତ ମଧ ହୋଇପାରୁ ନଥିଲେ । କେଉଁଠି କିଛି ଅସୁବିଧା ନ ଘଟିଲେ ଚତୁର ମଣିଷମାନେ ବଂଶୀଧରଙ୍କୁ ଆଗକୁ ପଠାଇ ଦେଇ ନିଜେ ପଛରେ ରହିଯାଉଥିଲେ । ବଂଶୀବାବୁ ଘଟଣାର ଗୁରୁତ୍ୱ ବା ଗୋପନୀୟତା ନ ବୁଝି ନିରବ ରହିବା ସ୍ଥାନରେ ବିରକ୍ତି ପ୍ରକାଶ କରୁଥିଲେ । କୌଣସି ତ୍ରୁଟି ସହ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ତେଣୁ ସେ ପ୍ରତିବାଦ କରୁଥିଲେ । ତା'ଠାରୁ ଆଶ୍ଚର୍ଯ୍ୟ କଥା ହେଉଛି ଯେ ସେ ପରଦିନ ସକାଳୁ ଯେଉଁ ଲୋକଟିକୁ ଗାଳି ଦେଉଥିଲେ, ତାକୁ ଡାକି ଆଦରରେ ଚା' ପିଇବାକୁ ଦେଉଥିଲେ । ଗାଳିଖାଇ ଦୁଃଖ କରୁଥିବା ବ୍ୟକ୍ତି ତା'ର ସବୁ କଷ୍ଟ ଭୁଲି ଯାଉଥିଲା ।

ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠ ପାଲଟିଲା ବିଲାତ ଫେରନ୍ତା ବଂଶୀଧରଙ୍କର ସାଧନାର ପୀଠ । ଜନସେବା ସମାଜ କଥା ପୂର୍ବରୁ ସୂଚନା ଦିଆଯାଇଛି । ଜଗନ୍ନାଥ ବିଦ୍ୟାପୀଠରେ ଗୋଟିଏ Poor Boys Fund ଥାଏ । ପ୍ରତ୍ୟେକ ପିଲା ମାସକୁ ଗୋଟିଏ ଅଣା ପଇସା ସେଥିପାଇଁ ଦିଅନ୍ତି । କେତୋଟି ଦରିଦ୍ର ପିଲାଙ୍କୁ ସେହି ଅର୍ଥରୁ କିଛି ସାହାଯ୍ୟ ଦିଆଯାଏ । ବଂଶୀଧରଙ୍କର କିନ୍ତୁ Poor Boys ଶବ୍ଦଟି ପ୍ରତି ଘୋର ଆପତ୍ତି ଥିଲା । ଏପରିକି ପିଲାଏ ସେଥିପାଇଁ ନିଜକୁ Poor ଲେଖି ଯେଉଁ ଦରଖାସ୍ତ ଦେଉଥିଲେ ସେମାନଙ୍କୁ ଡାକି ସେ ବୁଝାଉଥିଲେ, "Poor ନୁହେଁ Needy ଲେଖ, କାରଣ ଦରିଦ୍ର ସମସ୍ତେ । ନିଜକୁ ଦରିଦ୍ର କହିବା ଏକ ଉପହାସର କଥା । ତୁମେ ଆଜି ଅଭାବୀ ଅଛ, କାଲିକୁ ତୁମର ଅଭାବ ପୂରଣ ହୋଇଯିବ; କିନ୍ତୁ ଦାରିଦ୍ର୍ୟ କିଏ କାହାର ନେଇପାରିବ ?" ଏଥିରୁ ଜଣାଯାଏ ଯେ କେତେ ସ୍ୱାଭିମାନୀ ସେ ଥିଲେ । ସେଇମିତି ସ୍କୁଲରେ ପ୍ରାର୍ଥନା ବୋଲାଯାଏ—"ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ ।" ପ୍ରାତଃ ସ୍ମରଣୀୟ ମଧୁସୂଦନ ରାଓଙ୍କର ଏହି ଅନୁପମ ଭକ୍ତି ସଂଗୀତର ଗୋଟିଏ ପଦ କିନ୍ତୁ ବଂଶୀଧରଙ୍କର ମନକୁ ପାଏ

ନାହିଁ । ସେ ପଦଟି ହେଉଛି– "ସତ୍ୟ ପଥେ ଧର୍ମ ପଥେ ଘେନିଯାଅ ମୋତେ ।" ତାଙ୍କର ଯୁକ୍ତି "ପିଲାଗୁଡ଼ାକ, ଘେନିଯିବେ ତାଙ୍କୁ ଈଶ୍ୱର କାହିଁକି, କେଉଁଠିକି ? ସେମାନଙ୍କର ତ କର୍ମ ଜୀବନ ଏ ପର୍ଯ୍ୟନ୍ତ ଆରମ୍ଭ ହୋଇ ନାହିଁ ।" ଏ ଯୁକ୍ତି ତ ଅକାଟ୍ୟ । ତେଣୁ ସର୍ବମାନ୍ୟ ଶିକ୍ଷକ ବଂଶୀଧରଙ୍କର ଜିଦ୍ ଯୋଗୁଁ ଜଗନ୍ନାଥ ବିଦ୍ୟାପୀଠର ପ୍ରାର୍ଥନା ସଂଗୀତର ପଦ ବଦଳିଯାଏ– ସତ୍ୟ ପଥେ ଧର୍ମ ପଥେ ଚଳାଅ ତୁ ମୋତେ, ଭସାଅ ପରାଣ ମୋର ବଡ଼ ପ୍ରେମ ସ୍ରୋତେ ।"

ସ୍କୁଲରେ କେବେ କୌଣସି ଛାତ୍ରକୁ ସେ ହାତ ଉଠାଇ ମାରି ନାହାନ୍ତି । ଯଦି ଛାତ୍ରଟି ଅମନୋଯୋଗୀ ହୁଏ, ସେ ବିରକ୍ତ ହୁଅନ୍ତି । ବିରକ୍ତି ବଢ଼ିଗଲେ ଡାହାଣ ହାତ ଟେବୁଲରେ ବାଡ଼ାନ୍ତି ଆଉ କେବେ ବେହୋସ ମଧ୍ୟ ହୋଇଯାଆନ୍ତି । ତାଙ୍କର ନିମ୍ନ ରକ୍ତଚାପ ରୋଗ ଥିଲା । ତେଣୁ କେତେଥର ଯେ ପିଲାମାନେ ଅସୁସ୍ଥ ବଂଶୀଧରଙ୍କୁ ଡଙ୍ଗାରେ ବସାଇ ଘରେ ଆଣି ଛାଡ଼ିଛନ୍ତି ତା'ର ଇୟରା ନାହିଁ । ଏସବୁ ସତ୍ତ୍ୱେ ମଧ୍ୟ ପିଲାମାନେ ତାଙ୍କୁ ମୁରବୀ ବୋଲି ମାନୁଥିଲେ ଓ ସେ ନ ଡାକୁଣୁ ଆସି ତାଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କ ଗାଳି ଖାଇ କେହି କିଛି ମନେକରୁ ନଥିଲେ ।

ବୃଦ୍ଧାବସ୍ଥାରେ ଖଣ୍ଡସାହୀରେ ଏକୁଟିଆ ରହୁଥିବା ସମୟରେ ମଧ୍ୟ କେବେ ସେ ପରିବା ବା ସଉଦା ବ୍ୟାଗ୍ ହାତରେ ଧରି ଆସିବା କେହି ଦେଖି ନାହାନ୍ତି । ତାଙ୍କର କୌଣସି ପୁରାତନ ଛାତ୍ର ବ୍ୟାଗ୍‌ଟି ଧରି ତାଙ୍କୁ ସାଙ୍ଗରେ ଆଣି ଘରେ ଛାଡ଼ିଦେଇ ଯାଉଥିଲେ । ତାଙ୍କ ଘରେ ସବୁବେଳେ ଜିଜ୍ଞାସୁ ଛାତ୍ରଛାତ୍ରୀଙ୍କର ଗହଳି ଲାଗି ରହୁଥିଲା ।

ଗାଁ ସ୍କୁଲରେ ସେ ଶିକ୍ଷକ ଥିବା ସମୟରେ ଯେଉଁ କେତେଜଣ ଶିକ୍ଷକ ତାଙ୍କର ସହକର୍ମୀ ଥିଲେ ସେମାନେ ହେଲେ, ନଟବର ମହାନ୍ତି, ଜୟରାମ ମହାନ୍ତି, ଦୁର୍ଯ୍ୟୋଧନ ଜେନା, କୃଷ୍ଣଚନ୍ଦ୍ର ମହାନ୍ତି, କୃଷ୍ଣଚନ୍ଦ୍ର ପରିଡ଼ା, ସୁରେନ୍ଦ୍ର ପ୍ରହରାଜ, ସୁରେନ୍ଦ୍ର ସାହୁ ପ୍ରଭୃତି । ବଟକୃଷ୍ଣ ଜେନା, ମାୟାଧର ସେଠୀ ପ୍ରମୁଖ କିଛିଦିନ ଖଣ୍ଡସାହୀରେ ଶିକ୍ଷକତା କରିଥିଲେ । ପରେ ସେମାନେ ରାଜନୀତିରେ ଯୋଗଦେଇ ଯଥେଷ୍ଟ ଉନ୍ନତି କରିଛନ୍ତି । ଦୁର୍ଯ୍ୟୋଧନ ଜେନା ଥିଲେ ବଂଶୀବାବୁଙ୍କର ପ୍ରିୟ ଛାତ୍ର । ବିଦେଶରୁ ଫେରି ବଂଶୀବାବୁ ଗାଁ ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ସେ ମ୍ୟାଟ୍ରିକ୍ୟୁଲେସନ ପଢୁଥିଲେ । ନଟବାବୁ ବୋଧହୁଏ ନେମାଳରୁ ଆସୁଥିଲେ । ପ୍ରାୟ ପ୍ରତିଦିନ ରାମେଶ୍ୱର ମନ୍ଦିର ବେଢ଼ାରେ ସେ ପଶା ଖେଳୁଥିଲେ । ନୃସିଂହ ପରିଡ଼ା ଓ ରାଜକିଶୋର ନାୟକ ମଧ୍ୟ ଏହି ସ୍କୁଲରେ ଶିକ୍ଷକତା କରିଥିଲେ । ପରେ ରାଜନୀତିକୁ ଆସି ରାଜକିଶୋର ନାୟକ ରାଜ୍ୟ ଖଦୀ ବୋର୍ଡର ଚେୟାରମ୍ୟାନ ହୋଇଥିଲେ । କିଛିଦିନ କିଶୋରଚନ୍ଦ୍ର ମିଶ୍ର, ଶରତ ଚନ୍ଦ୍ର ମିଶ୍ର ଓ ପ୍ରବୋଧ

କୁମାର ମିଶ୍ର ମଧ୍ୟ ଖଣ୍ଡସାହୀ ସ୍କୁଲରେ ଶିକ୍ଷକତା କରିଥିଲେ । ପରେ ଶରତଚନ୍ଦ୍ର ମିଶ୍ର (ସୌରୀ ବାବୁ) କଟକରେ ଓକିଲାତିରେ ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି । ଉମାନାଥ ମହନ୍ତ ମଧ୍ୟ ଅନେକ ଦିନ ଖଣ୍ଡସାହୀରେ ଷିକ୍ଷକତା କରିଥିଲେ । ସେ ଥିଲେ ଉଚ୍ଚକୋଟୀର ସାହିତ୍ୟ ଶିକ୍ଷକ । ନିଜ ଚେଷ୍ଟାରେ ଏମ୍.ଏ. ପଢ଼ି ସେ ସାଲେପୁର କଲେଜରେ ଅଧ୍ୟାପକ ହୋଇଥିଲେ ଓ ଅବସର ପରେ କିଛିଦିନ ସୁଭଦ୍ରା ମହତାବ କଲେଜରେ ଅଧ୍ୟକ୍ଷ ମଧ୍ୟ ହୋଇଥିଲେ । ବର୍ତ୍ତମାନ ସେ ନିଜ ଗ୍ରାମ ବରପଡ଼ାରେ ଅବସ୍ଥାନ କରୁଛନ୍ତି ।

କୃଷ୍ଣଚନ୍ଦ୍ର ଶତପଥୀ ନାମରେ ଜଣେ ସଂସ୍କୃତ ପଣ୍ଡିତ ବଂଶୀବାବୁଙ୍କ ସାଙ୍ଗରେ ସେ ସ୍କୁଲରେ ଥିଲେ । ସେ ଇଂରାଜୀ ଦରଖାସ୍ତ ଇତ୍ୟାଦି ଲେଖିବାକୁ ବହୁତ ଥର ବଂଶୀବାବୁଙ୍କ ଘରକୁ ଯାଇଥିଲେ । ଆଉ ଜଣେ ହିନ୍ଦୀ ଶିକ୍ଷକ ଅର୍ଜୁନ ସାହୁ କିଛିଦିନ ଖଣ୍ଡସାହୀ ହାଇସ୍କୁଲରେ ଥିଲେ । ସେ ହିନ୍ଦୀ ରାଷ୍ଟ୍ରଭାଷା କେନ୍ଦ୍ର ୱାର୍ଦ୍ଧା ସହିତ ଯୋଗାଯୋଗ କରି ସ୍କୁଲରେ ହିନ୍ଦୀ ପରୀକ୍ଷା କେନ୍ଦ୍ର ସ୍ଥାପନ କରାଇଥିଲେ । ବଂଶୀବାବୁ ପ୍ରଥମରେ ହିନ୍ଦୀ ପଢ଼ିବାର ସପକ୍ଷରେ ନଥିଲେ । ତାଙ୍କ ଯୁକ୍ତି ଥିଲା ଯେ ସଂସ୍କୃତ ହିଁ ଭାରତର ରାଷ୍ଟ୍ରଭାଷା ହେବା ଉଚିତ । ମାତ୍ର ପରେ ସେ ନିଜର ମତ ପରିବର୍ତ୍ତନ କରିଥିଲେ ଓ ମିଟୁକୁ ପ୍ରବେଶ, ପରିଚୟ ଓ କୋବିଦ ପରୀକ୍ଷା ଦେବାକୁ ଉତ୍ସାହିତ କରିଥିଲେ ।

ସ୍କୁଲରେ ଗୋଟିଏ ବ୍ଲାକ୍‌ବୋର୍ଡ଼ ଥିଲା । 'ସେଥିରେ ପ୍ରତିଦିନର ଗୁରୁତ୍ୱପୂର୍ଣ୍ଣ ସମ୍ବାଦମାନ ଲେଖାଯାଇଥିଲା ଓ କିଛି ଉପଦେଶ ଲେଖାଯାଇଥିଲା । ବଂଶୀବାବୁ ସେଥିରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରୁଥିଲେ ।

**ପିତା ଭାବରେ ବଂଶୀବାବୁ :**

ଚାରିମାସ ଝିଅକୁ ତରୁଣୀ ପତ୍ନୀ ପାଖରେ ଛାଡ଼ି ଘର ଛାଡ଼ିଥିବା ମଣିଷ ୨୪ ବର୍ଷ ପରେ ବଂଶୀବାବୁ ଘରକୁ ଫେରିଥିଲେ । ଭଗବାନଙ୍କର କରୁଣାରୁ ସେ ପରିଣତ ବୟସରେ ଆଉ ଏକ କନ୍ୟା ସନ୍ତାନର ଜନକ ହେଲେ । ଝିଅକୁ ସାଙ୍ଗରେ ନେଇ ସେ ମେଳଣ ଦେଖିବାକୁ ଯାଉଥିଲେ । ସବୁ ପିଲାମାନେ ଯାତ୍ରାଖର୍ଚ୍ଚ ବାପାଙ୍କଠାରୁ ମାଗି ନେଉଥିଲେ ଓ ମନଇଚ୍ଛା ଖର୍ଚ୍ଚ କରୁଥିଲେ । କିନ୍ତୁ ମିଟୁକୁ ସେ ପଇସାଟିଏ ଦେଉ ନଥିଲେ । ଓଲଟି କହୁଥିଲେ ତୋର କ'ଣ ଖାଇବାକୁ ମନ ହେଲେ କହିବୁ । ମିଟୁ ତ ସବୁଦିନେ ଲାଜକୁଳୀ । ନନାଙ୍କୁ କ'ଣ ଖାଇବାକୁ ମାଗିବ । ସେଇମିତି ତାଙ୍କ ପଛେ ପଛେ ଯାଇ ଠାକୁର ଦେଖି ଦେଖି ସେ ଘରକୁ ଫେରୁଥିଲା ଆଉ ବୋଉ ଆଗରେ କାନ୍ଦୁଥିଲା । ନନା କିନ୍ତୁ ନିର୍ବିକାରରେ କହୁଥିଲେ, "ମୋତେ ପଇସା ମାଗିଲାନି କାହିଁକି ?" କେବେ କେବେ ମିଟୁକୁ କାନ୍ଧରେ

ବସାଇ ସେ ମେଳଣରେ ହେଉଥିବା ରଜାରାଣୀ ନାଟ ଦେଖାଉଥିଲେ । ତା'ପାଇଁ ଚକୋଲେଟ୍ ବା ବିସ୍କୁଟ୍ ବି ଆଣୁଥିଲେ । ତା' ବହିପତ୍ରରେ ନିଜେ ମଲାଟ ପକାଇ ଦେଉଥିଲେ, କଲମ ସଜାଡ଼ି ଦେଉଥିଲେ ପରୀକ୍ଷା ବେଳେ । ଦୁଆତରେ କାଳି ଭର୍ତ୍ତି କରି ଦେଉଥିଲେ । (କାଠି କଲମରେ ମିତୁ ବେଶ୍ କିଛିଦିନ ଲେଖିଛି) ।

କେହି କେହି ମାଗିଲେ ତାକୁ ନିଶ୍ଚୟ ଦେବାକଥା ବୋଲି ସେ କହୁଥିଲେ । ପୁରୁଣା ବହି ବିକ୍ରି କରିବା କଥା ସେ ସହିପାରୁ ନଥିଲେ । ପାଠକୁ ବିକ୍ରି କରାଯାଏନି ବରଂ ଦାନ କରାଯାଏ, ଏ କଥାରେ ସେ ବିଶ୍ୱାସ କରୁଥିଲେ । ଯଦି କେହି ବହି ପଢ଼ିବା ପରେ ମଲାଟ ମଡ଼ାଇ, ଅଠା ଦେଇ ପରିଷ୍କାର ଭାବରେ ଫେରାଉଥିଲା, ତାକୁ ସେ ପ୍ରଶଂସା ମଧ୍ୟ କରୁଥିଲେ । ମିତୁର ବନାନ ଶୁଦ୍ଧି ସମ୍ପର୍କରେ ସେ ଥିଲେ ସଚେତନ । ତା'ପାଇଁ ସେ ବହୁତ ବହି ଆଣି ଦେଉଥିଲେ ଓ ସମାଜର ସଂପାଦକୀୟ ପଢ଼ିବା ପାଇଁ ତାକୁ ବାଧ୍ୟ କରୁଥିଲେ । ବଲ୍ଲୀନାନୀ ସେତେବେଳକୁ ନବଗଠିତ ଖଦୀ ବୋର୍ଡ଼ରେ ସୁପରଭାଇଜର୍ ଚାକିରୀ କରୁଥାଏ । ନାନୀ, ମିତୁପାଇଁ ଟୁଆଁଟୁଇଁ, ମନପବନ ଓ ସୋଭିଏଟ ଦେଶ ପଠାଏ । ନନା କିଣି ଦିଅନ୍ତି ସୋଭିଏଟ ୟୁନିୟନ୍‌ର ସମ୍ବାଦ ଓ ଅଭିମତ ନାମକ ଲିଥୋ କାଗଜ । ଏହାର ଗୋଟିଏ ପାଖ ଖାଲି ଥାଏ, ଯାହାକୁ ଟ୍ୟାଗ୍ ଦେଇ ସିଲେଇ କରି ମିତୁ ସେଥିରେ ଗଣିତ କଷୁଥିଲା ମ୍ୟାଟ୍ରିକ୍ ପାସ୍ କରିବାଯାଏ । ସପ୍ତାହଯାକ ପାଠ ପଢ଼ିବା ପରେ ବଂଶୀବାବୁ ଶନିବାର ଦିନଟି ଖାଲି ରଖୁଥିଲେ । ସବୁଦିନ ମିତୁ ଓ ତା'ର ସାଙ୍ଗସାଥିଙ୍କ ସହିତ ସନ୍ଧ୍ୟାରେ ପ୍ରାର୍ଥନା କରିବା ଥିଲା ତାଙ୍କର ରୁଟିନ୍ । କିନ୍ତୁ ଶନିବାର ଦିନଟି ସନ୍ଧ୍ୟାସାରା ଗୀତ ବୋଲା ହେଉଥିଲା । କେଶବ କୋଇଲି, କମଳ ଲୋଚନ, କୃଷ୍ଣ ମଥୁରା ଯିବା ଯଶୋଦା ଶୁଣି, ଭାବବିନୋଦିଆ ଠାକୁର, କଳା କଳେବରଠାରୁ ଆଶ୍ରମେ ପ୍ରଭାତ ବା ପଦ୍ମ ପର୍ଯ୍ୟନ୍ତ । ମିତୁ ମଧ୍ୟ ଆଗ୍ରହରେ ସେସବୁ ଗାଇଥିଲା ସ୍ୱର ଦେଇ । ବେଳେ ବେଳେ ବଂଶୀବାବୁ ଗୀତ ମଝିରୁ ପଦଟିଏ ଛାଡ଼ି ଗାଉଥିଲେ ଓ ମିତୁ ଯଦି ନଜାଣି ପାରୁଥିଲା ତାକୁ ଗାଳି ଦେଉଥିଲେ । ତା' ପଢ଼ା ପ୍ରତି ସତର୍କ ଦୃଷ୍ଟି ଦେଉଥିଲେ ମଧ୍ୟ ମିତୁ ଯେ ଗଣିତରେ ଖୁବ୍ ଦୁର୍ବଳ ଥିଲା, ଏହା ସେ ଜାଣିପାରି ନଥିଲେ ଶେଷ ପର୍ଯ୍ୟନ୍ତ । ଝିଅକୁ ସେ ଗ୍ରୀକ୍ ପୁରାଣର କାହାଣୀମାନ କହୁଥିଲେ । Story of Moses ଓ Story of Bible ପଢ଼ିବାକୁ ଦେଉଥିଲେ । ପ୍ରାୟ ସବୁଦିନେ ଗୋଟେ Passage Translation କରାଉଥିଲେ । ଏଇମିତି ଥିଲେ ବଂଶୀବାବୁ ପିତା ଓ ଶିକ୍ଷକର ମଝାମଝି ମଣିଷଟିଏ । ଏଠି ଆଗ୍ରହ ଥିଲା କିନ୍ତୁ ତା'ର ପ୍ରକାଶ ଏତେ ଆକର୍ଷଣୀୟ ନଥିଲା । ମିତୁର ଦେହ ଖରାପ ହେଲେ ସେ ଗାଁକୁ ଆସୁଥିବା ଏକମାତ୍ର କମ୍ପାଉଣ୍ଡର କାଙ୍ଗାଳି ବାବୁଙ୍କୁ

କୌଣସି ମତେ ଡକାଇ ଦେଉଥିଲେ; ମାତ୍ର ରାତି ଅନିଦ୍ରା ହେବା ବା ଝିଅ ପାଖରେ ଟିକେ ବସିବା ଯେ ଦରକାର ଏକଥା ଜାଣିପାରୁ ନଥିଲେ । ସ୍କୁଲରେ ପଢୁଥିବା ଝିଅ ପାଇଁ ଶାଢ଼ି (ସେତେବେଳେ ସ୍କୁଲ ପଢୁଆ ଝିଅମାନେ ବି ଶାଢ଼ି ପିନ୍ଧୁଥିଲେ) କିଣିବାକୁ ଦଶୋଟି ଟଙ୍କା ବଢ଼ାଇଦେଲେ ସେ ନିଜର କର୍ତ୍ତବ୍ୟ କରୁଥିଲେ । ଯଦି ଆଉ ଟଙ୍କାଏ ଦି'ଟଙ୍କା ବେଶି ପଡୁଥିଲା ଶାଢ଼ିର ଦାମ୍ ତାହା ତାଙ୍କ ପତ୍ନୀଙ୍କ ହାତ ବାକ୍ସରୁ ହିଁ ମିତୁକୁ ମିଳୁଥିଲା ।

**ମିତୁର ସଂଗୀତ ଶିକ୍ଷା :**

୧୯୬୩ରେ ଷଷ୍ଠ ଶ୍ରେଣୀରେ ପଢୁଥିବା ବେଳେ ମିତୁ ସଂଗୀତ ଶିକ୍ଷା ଆରମ୍ଭ କରିଥିଲା । ଖଣ୍ଡସାହୀର ତତ୍କାଳୀନ ବିଶିଷ୍ଟ ଗୀତିକବି ଓ ଗାୟକ ଗୌରଚନ୍ଦ୍ର ସାମନ୍ତରାୟ ଥିଲେ ତା'ର ସଂଗୀତ ଶିକ୍ଷକ । ବଲ୍ଲୀ ନେଇ ଦେଇଥିବା ଡବଲ ହାରମୋନିୟମରେ ଖୁବ୍ ଆଗ୍ରହରେ ସେ ଗୀତ ଶିଖୁଥିଲା । ଅଳ୍ପ ଦିନରେ ତା'ର ହାରମୋନିୟମ ବଜାଇବାର ଶୈଳୀ ଦେଖି ଗୌର ସାର୍ ମଧ୍ୟ ଆନନ୍ଦିତ ହୋଇଥିଲେ । ୧୯୬୪ରେ ମିତୁର ମାଇନର୍ ପରୀକ୍ଷା ଥାଏ । ସେହିବର୍ଷ ଆରମ୍ଭରୁ ମିତୁର ତଣ୍ଟି ଦରଜ ଆରମ୍ଭ ହେଲା । ଜର ଛାଡ଼ିଲାନି । ତା'ର ସ୍ୱର ମଧ୍ୟ ଖରାପ ହୋଇଗଲା । ବଂଶୀବାବୁ ବ୍ୟସ୍ତ ହୋଇ ପଡୁଥାଆନ୍ତି । ତାଙ୍କ ଝିଅ କ'ଣ ସପ୍ତମ ଶ୍ରେଣୀର ବୋର୍ଡ଼ ପରୀକ୍ଷାରେ ବସି ପାରିବନି । ଗାଁରେ ବିଶେଷ ଚିକିତ୍ସା ଭାବରେ ବେଲାଡୋନା ପ୍ଲାଷ୍ଟର ଗୋଟିକ ପରେ ଗୋଟିଏ ତା' ଗାଲରେ ପକାଯାଏ । ଟିକିଏ ତିକୁଆତିନ ତା' ତଣ୍ଟିରେ ବୋଉ ଲଗାଇଦିଏ । କିନ୍ତୁ କିଛି ଉପଶମ ହୁଏ ନାହିଁ । ପ୍ରାୟ ୪ ମାସ ମିତୁର ସ୍କୁଲ ବନ୍ଦ ହୋଇଯାଏ । ତା'ପରେ ବଡ଼ଝିଅ ବଲ୍ଲୀ ଆସି ପହଞ୍ଚି ମିତୁକୁ ସାଙ୍ଗରେ ନେଇ କଟକ ଆସେ । ଡଃ ତରାସିଆ ନାସା ଗଳା ରୋଗର ବିଶେଷଜ୍ଞ । ସେ ଦେଖିଲେ ମିତୁର ତଣ୍ଟିରେ ଘାଆ ହେଇଯାଇଛି । ସେ କ'ଣ ଔଷଧ ତଣ୍ଟି ଭିତରକୁ ସ୍ପ୍ରେ କଲେ । ମିତୁ ବାନ୍ତି କଲା । ତା'ପରେ ଭୁବନେଶ୍ୱରରେ ନାନୀଘରେ ରହି ଔଷଧ ଖାଇବାରୁ ତା' ଦେହ ଭଲ ହେଲା । ଝିଅ ପାଖକୁ ବଂଶୀବାବୁ ଚିଠି ଲେଖନ୍ତି । "ମିତୁର ପରୀକ୍ଷା, ତାକୁ ପଠାଇ ଦେବୁ ଚଞ୍ଚଳ ।" ଏ ଭିତରେ ମିତୁ ଏତେ କଷ୍ଟ ପାଉଥିଲା ବୋଲି ସେ ଜାଣିନଥିଲେ । କିନ୍ତୁ ତା' ପରଠାରୁ ହାରମୋନିୟମ ବଜାଇବା ଓ ଗୀତ ଗାଇବା ଛାଡ଼ିଦେଲା । ବଂଶୀବାବୁ କେତେଥର "ଶାନ୍ତାକାରଂ ଭୁଜଗଶୟନଂ" ଗାଇବାକୁ ମିତୁକୁ କହିଛନ୍ତି; ମାତ୍ର ସେ ଏତେ ଡରିଯାଇଥିଲା ଯେ ଆଉ ଥରେ ହାରମୋନିୟମ ଧରି ଗୀତ ଗାଇପାରିଲା ନାହିଁ । ତେବେ ତା' ନାନୀ କଥାମାନି କେତେଥର ଗୀତ ଶିଖାଇ ଦେଇଛି ଅନ୍ୟମାନଙ୍କୁ । ୧୯୬୪ରେ ସପ୍ତମ ଶ୍ରେଣୀ ବୋର୍ଡ଼

ପରୀକ୍ଷାରେ ମିତୁ ୨ୟ ଶ୍ରେଣୀରେ ପାସ୍ କଲା । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ବଂଶୀବାବୁ କହିଲେ, "ମୋ ଝିଅ ସେ, ସେ କ'ଣ ହାରିଯାଇ ଥାଆନ୍ତା ।"

**ମିତୁ ପିଲାଦିନର କେତୋଟି ଘଟଣା :**

ଏଠାରେ ମିତୁର ପିଲାଦିନର କେତୋଟି ଘଟଣା (ଅନେକ ରହିଛି) ଉଲ୍ଲେଖ କରାଯାଉଛି । ପ୍ରାୟ ପାଞ୍ଚ ଛଅ ବର୍ଷ ହୋଇଥିବ ମିତୁକୁ । ସାମନା ପଡ଼ିଶା ଘର କିଶୋର ଚନ୍ଦ୍ର ମିଶ୍ରଙ୍କ ବାଡ଼ିରେ ଥିବା ନଡ଼ିଆ ଗଛରୁ ପାଚିଲା ନଡ଼ିଆଟିଏ ରାସ୍ତାକୁ ପଡ଼ିଲା । ମିତୁ ଅତି ଆଗ୍ରହରେ ସେ ନଡ଼ିଆଟି ଆଣି ପିଣ୍ଡାରେ ରଖିଲା ଆଉ ନଡ଼ିଆ ଆଣିଛି ବୋଲି ତା' ନନାଙ୍କୁ କହିଲା । ନନା କହିଲେ, "ଏସବୁ ଭଲ କଥା ନୁହେଁ । ତାଙ୍କ ନଡ଼ିଆ ତାଙ୍କୁ ଦେଇ ଆ ।" ମିତୁ ଲାଜ କଲା ଆଉ କୁଣ୍ଠିତ ବି ହେଲା । ପାଖରେ ଥିବା ତା' ସାଙ୍ଗମାନେ କହିଲେ, "ରାସ୍ତାରେ ତ ପଡ଼ିଥିଲା ତୁ ଆଣିଛୁ । ବ୍ୟସ୍ତ କ'ଣ ?" କିନ୍ତୁ କଥା ସେଠି ଅଟକି ଗଲାନି । ବଂଶୀବାବୁ ବାଟଚଲା ଲୋକଙ୍କୁ ଏକଥା କହିଲେ । କିଶୋର ବାବୁ ଓ ତାଙ୍କ ପିଲାମାନଙ୍କୁ ଡାକିଲେ । ସେମାନେ ହସୁଥାଆନ୍ତି । ମିତୁ ତାଙ୍କ ଆଗରେ ନଡ଼ିଆଟି ଥୋଇଲା । ଆଉ ଏମିତି କେବେ କାହା ଜିନିଷ ଆଣିବନି ବୋଲି କହି ତାଙ୍କୁ କ୍ଷମା ମଧ୍ୟ ମାଗିଲା । ତା'ପରେ ସେ ଶାନ୍ତି ହେଲେ । ସେତେବେଳକୁ ତାଙ୍କ ଦାଣ୍ଡରେ ପ୍ରାୟ ପଚିଶି ତିରିଶି ଲୋକ ଜମାହୋଇ ସାରିଥିଲେ ।

ଆଉ ଥରକର କଥା । ମିତୁ ଖରାଦିନ ସନ୍ଧ୍ୟାବେଳେ ନାଳବନ୍ଧକୁ ଯାଇଥାଏ । ତା' ନନା ସବୁଦିନ ସନ୍ଧ୍ୟାରେ ନାଳବନ୍ଧକୁ ଯାଆନ୍ତି । ସେଠି ଥିବା ରାମେଶ୍ୱର ମନ୍ଦିର ବାରଣ୍ଡାରେ ପଶାଖେଳ ହୁଏ । ଘରପାଇଁ କେବେ କିଛି ସଉଦାପତ୍ର ବି ସେଠାରେ ଥିବା ଦୋକାନରୁ ଆସେ । ମିତୁ ସେଦିନ ଅଳ୍ପ ପାଣିଥିବା କେନାଲ ଭିତରେ ପଶି ଖେଳିଲା । ସାଙ୍ଗମାନଙ୍କ ସହିତ କେନାଲ ଆରପଟକୁ ମଧ୍ୟ ଗଲା । କେନାଲ ଆରପଟେ ଲୁଣାନଦୀ । ଲୁଣାନଦୀର ବନ୍ଧ ଉପରେ ଗୋଟିଏ ବିରାଟ ଆମ୍ବଗଛ ଠିକ୍ ଛତାପରି ଠିଆ ହୋଇଥାଏ । ସେଠି ବହୁତ ପାଚିଲା ଆମ୍ବ ପଡ଼ିଥାଏ । ପିଲାମାନେ ଗୋଟାଇ ନେଇଥାଆନ୍ତି । ମିତୁ ଜାଣିଥାଏ ଯେ ସେ ଗଛଟି ତା' ଜେଜେବାପା ଲଗାଇଥିଲେ । (ମିତୁ କ'ଣ ସେ ଅଞ୍ଚଳର ସମସ୍ତେ ଜାଣିଥିଲେ । କିନ୍ତୁ ସେ ଗଛଟି ଗତ ମହାବାତ୍ୟା— ୧୯୯୯ରେ ଉପୁଡ଼ି ଯାଇଛି) ମିତୁ ତିନି ଚାରୋଟି ଆମ୍ବ ତା' ଫ୍ରକ୍ ଅଣ୍ଟିରେ ଭର୍ତ୍ତିକରି ଦରଶୁଖିଲା କେନାଲ ପାରିହୋଇ ଫେରିଲା ଆଉ ଆନନ୍ଦରେ କହିଲା, "ନନା, ମୁଁ ବାପାଙ୍କ ଗଛର ଆମ୍ବ ଆଣିଛି ।" ତା'ପରେ ସେ ଆଉ ଯାଏ କୁଆଡ଼େ ? ବଂଶୀବାବୁ ଖୁବ୍ ବିରକ୍ତ ହେଲେ । ତୁ ଜମା ଆମ୍ବ ଖାଇନୁ ? ତୋ ବାପା (ଜେଜେ) ତୋପାଇଁ ଜମା ଆମ୍ବଗଛ ଲଗାଇ ନାହାନ୍ତି ? ଯେଉଁ

ଆମ୍ବଗଛ ସର୍ବସାଧାରଣଙ୍କ ପାଇଁ ଲାଗିଛି, ସେ ଆମ୍ବ ତୁ ଖାଇଲେ ବାପା କ'ଣ ଭାବିବେ ? ଏ ତ ଅପରାଧ ହେଲା ନା ? "ଯା, ଯୋଉଠୁ ଆଣିଥିଲୁ ସେଇଠି ଆମ୍ବତକ ଥୋଇଦେଇ ଆସିବୁ । ମିତୁ ବିଚାରୀ ଭାବିପାରୁ ନଥିଲା ତା' ପାଇଁ ଆମ୍ବ ଦି'ଟା ଆଣିବା ଏତେ ଗର୍ହିତ ଅପରାଧ । ତଥାପି ନନାଙ୍କ କଥା ମାନି ସେ ଅଣ୍ଟିରେ ଆମ୍ବକୁ ଧରି କାନ୍ଦି କାନ୍ଦି ସେଇମିତି ଯାଇ ଆମ୍ବତକ ନାଳବନ୍ଧରେ ଥୋଇଦେଇ ଆସିଥିଲା ଆଉ ନାଳବନ୍ଧରେ ଥିବା ସବୁ ପିଲା, ବଡ଼ମଣିଷମାନେ ହସୁଥିଲେ ତା' ନନାଙ୍କ କଥା ଶୁଣି ।

ମିତୁ ପିଲାଦିନରୁ ଭଲ ଗୀତ ଗାଉଥିଲା । ବଂଶୀବାବୁ ଲେଖିଥିବା ଗୀତତକ ସେ ଗାଁର ଅନ୍ୟ ପୁଅଝିଅଙ୍କୁ ଶିଖାଇ ଦେଉଥିଲା; ମାତ୍ର ନିଜେ ଗାଇବା ପାଇଁ ତାକୁ କେବେ ତା' ନନା କହିନଥିଲେ । ଆଉ ସବୁଠାରୁ ମଜା କଥା ହେଉଛି ଗଣିତ ଇଚ୍ଛାଧୀନ ପତ୍ର ନେଇ ମିତୁ ହାଇସ୍କୁଲରେ ପଢୁଥିବା ସମୟରେ ତା' ନନା ବଂଶୀବାବୁ ଗଣିତ ଖାତା ଦେଖିବାକୁ ଘରକୁ ଆଣୁଥିଲେ । ଆଉ ପଢ଼ା ଟେବୁଲ ଉପରେ ରଖୁଥିଲେ, 'ତୋ ଖାତା ଆଣିଛି ଦେଖିବାକୁ' ଏତିକି ଶୁଣି ମିତୁ ସେ କେତେଦିନ ଛାନିଆଁରେ ନନାଙ୍କୁ ଦେଖିଲେ ଲୁଚୁଥିଲା । କେବେ ଇଚ୍ଛାଧୀନ ଗଣିତରେ ମିତୁ ପଚାଶ ରଖିବା ମଧ୍ୟ ସମ୍ଭବ ହେଉନଥିଲା । ଆଜି ଯଦି କାହା ପୁଅ-ଝିଅ ପରୀକ୍ଷା ଦେଉଛନ୍ତି, ତାଙ୍କ ବାପାମାନେ ନିଜେ ଖାତା ଦେଖିବାକୁ ମନାକରି ଦେଉଥାନ୍ତେ; ମାତ୍ର କଳ କୌଶଳ କରି ପିଲାଙ୍କ ନମ୍ବର ବଢ଼ାଇବାର ଚେଷ୍ଟା ଜାରି ରଖିଥାନ୍ତେ । କିନ୍ତୁ ବଂଶୀଧର ଥିଲେ ଭିନ୍ନ ଧାତୁର ମଣିଷ । ସେ ଯେ କେବଳ ସ୍ୱତନ୍ତ୍ର ଥିଲେ ତାହା ନୁହେଁ, ତାଙ୍କ ସମୟ ଥିଲା ଭିନ୍ନ । ଯେଉଁମାନେ ସାରଙ୍କ ଝିଅ ପରୀକ୍ଷା ଦେଇଛି ଜାଣିବା ପରେ ମଧ ତାଙ୍କୁ ଖାତା ଦେଖିବାକୁ ଦେଉଥିଲେ, ବଂଶୀଧରଙ୍କ ସାଧୁତା ଉପରେ ତାଙ୍କର କେତେ ବିଶ୍ୱାସ ଥିଲା ତାହା ଅନୁମାନ କରାଯାଇପାରେ ।

ବଂଶୀଧର ନିଜ କାମ ନିଜେ କରିବାକୁ ପସନ୍ଦ କରୁଥିଲେ । ଟିକିଏ ବୁଦ୍ଧି ହେବାପରେ ମିତୁ ତାଙ୍କର ଦୈନନ୍ଦିନ କର୍ମରେ ତାଙ୍କୁ ସାହାଯ୍ୟ କରିବାକୁ ଚାହିଁଥିଲା । ତାଙ୍କ ବିଛଣା ଉଠାଇ, ଭାଙ୍ଗି ସଜାଡ଼ି ଥୋଇଦେବା ବା ତାଙ୍କ ଲୁଗାପଟା ଖରାରୁ ଆଣି ଘରେ ସଜାଡ଼ି ରଖିବା ପ୍ରଭୃତି । ସେ କିନ୍ତୁ ମିତୁକୁ କେବେ ବି ତାଙ୍କ କାମ କରିବାକୁ ଦେଉନଥିଲେ । ଯଦି କେବେ ସଜଡ଼ା ହୋଇ ଥୁଆ ହୋଇଥିବାର ଦେଖୁଥିଲେ, ତାକୁ ସେ ଖୋଲିଦେଇ ଆଉଥରେ ସଜାଡୁଥିଲେ । ମିତୁ ଏହାର କାରଣ ବୁଝିବାକୁ ଚାହିଁଥିଲା । ଉତ୍ତରରେ ସେ କହିଥିଲେ ଯେ 'ନିଜ କାମ ନିଜେ କରିବା ଦରକାର, ନ ହେଲେ ମଣିଷ ପରମୁଖାପେକ୍ଷୀ ହୋଇଯିବ ।" ସେ ଯୁଆଡ଼େ ଯାଉଥିଲେ, ଦୁଇଦିନ୍ତୁ ପୂର୍ବରୁ ନିଜ

ଜିନିଷପତ୍ର ପ୍ୟାକିଂ କରୁଥିଲେ । ଏହି ବ୍ୟାଗ୍ ପ୍ରଭୃତିରେ ତାଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ସହିତ ମଶାରି, ମଶାରି ଟାଙ୍ଗିବା ପାଇଁ କଣ୍ଟା ଓ ଛୋଟିଆ ହାତୁଡ଼ି ମଧ୍ୟ ରହୁଥିଲା । କାହାକୁ ହଇରାଣ କରିବେ ନାହିଁ ବୋଲି ଏସବୁ ଜିନିଷ ନେଇ ସେ ଯାହା ଘରକୁ ଯାଉଥିଲେ, ସମସ୍ତେ ତାଙ୍କ ପାଇଁ କି ପ୍ରକାର ହଇରାଣ ହେଉଥିବେ, ତାହା ଅନୁମାନ କରାଯାଇପାରେ ।

୧୯୬୮ରେ ମିତୁ ମ୍ୟାଟ୍ରିକ୍ ପାସ୍ କଲା । ତା' ନାନୀ କୃଷ୍ଣବଲ୍ଲଭୀ ଚାହୁଁଥିଲା ସେ ଆସି ତା' ଘରେ ଜଟଣୀରେ ରହି ଖୋର୍ଦ୍ଧା କଲେଜରେ ପଢୁ । ମିତୁ ଆସିବା ନେଇ ବଂଶୀବାବୁ ଖୁବ୍ ଖୁସି ହେଲେ ନାହିଁ । ପ୍ରଥମ କଥା ସେ ଘର ଛାଡ଼ି ଯିବନି । ଦ୍ୱିତୀୟ କଥା ଯଦି ଯିବ ସି.ଟି. ଟ୍ରେନିଂ ନେବାକୁ କଟକ ଯିବ । ସବୁଠୁଁ ଅସୁବିଧାର କଥା ହେଲା ମିତୁକୁ ଗଣିତ ଆସେ ନାହିଁ । ସେ କ'ଣ ପଢ଼ିବ ? କଲେଜରେ ପଢ଼ିବାକୁ ହେଲେ ଗଣିତ ନିହାତି ଲୋଡ଼ା ବୋଲି ସେ ଜାଣିଥିଲେ । ଯାହା ହେଉ ମିତୁ ଜଟଣୀ ଆସିଲା ଓ ଆର୍ଟସ ପଢ଼ିଲା । ଖରାଛୁଟି ପରେ ବା ପୂଜାଛୁଟି ପରେ ମିତୁ ବଂଶୀବାବୁଙ୍କ ସହିତ ଖଣ୍ଡସାହୀରୁ ଜଟଣୀ ଆସୁଥିଲା । ନିଷ୍ଟିନ୍ତକୋଇଲିରୁ ବସ୍ ଧରି କଟକ । ସେଠୁଁ ଟ୍ରେନ୍‌ରେ ଖୋର୍ଦ୍ଧାରୋଡ଼ରୁ ରିକ୍ସାରେ ବସି ବିଶ୍ୱବଂଶୀ ଅର୍ଥାତ୍ କୃଷ୍ଣବଲ୍ଲଭୀଙ୍କ ଘର । ଗାଁ ରିକ୍ସାବାଲା ବଂଶୀବାବୁଙ୍କୁ ଆଗ୍ରହରେ ଆଣନ୍ତି । ନିଷ୍ଟିନ୍ତକୋଇଲିରୁ ସେ ବସ୍‌ରେ ଆସନ୍ତି । କେନ୍ଦ୍ରାପଡ଼ା ରୋଡ଼ (ଜଗତ୍‌ପୁର)ରେ ଟ୍ରେନ୍ ଅଳ୍ପ ସମୟ ରହେ ବୋଲି ସେ କଟକ ରେଳଷ୍ଟେସନ ଆସନ୍ତି । ସେଠୁ ଟ୍ରେନ୍‌ରେ ବସନ୍ତି । ଯେଉଁ ଗହଳି କମ୍ପାର୍ଟମେଣ୍ଟରେ ଚଢ଼ିଯାଇ ସେ ତଳେ ବସିପଡ଼ନ୍ତି, ମିତୁ ବିଚାରୀ ଜିନିଷପତ୍ର ଧରି କଲବଲ ହୁଏ ।

ଥରେ ବଂଶୀବାବୁ ଘରୁ ବାହାରିଲା ବେଳକୁ ଚିରା ଧୋତିଟିଏ ପିନ୍ଧିଥିଲେ । ମିତୁ କହିଲା, "ନନା, ଏଇଟା ବଦଳାଇ ନିଅ," ସେ ମନାକଲେ । ତା'ପରେ ସମସ୍ତେ କହିଲେ ସେହି ଏକା କଥା । ଧୋତିଟା ମଇଳା ପୁଣି ଚିରା । ତାଙ୍କର ଗୋଟାଏ ଟ୍ରଙ୍କରେ ଭର୍ତ୍ତି ହୋଇ ଧୋତି ଥାଏ । ତଥାପି ଜିଦ୍ । ସେ ଫଟା ଧୋତି ହିଁ ପିନ୍ଧିବେ । ବିରକ୍ତ ହୋଇ ସେ କହିଲେ, "ସଂସାରରେ ତୁମର ସିନା କିଛି କାମ ନାହିଁ, ତୁମେ କାହା ପଛକୁ ଚାହିଁ ଦେଖୁଛ ଚିରା ଅଛି କି ନାହିଁ । ଲୋକଙ୍କର ବହୁତ କାମ । କାହାର ତର ଅଛି ମୋ ପଛକୁ ଚାହିଁ ଧୋତି ଚିରା କି ନାହିଁ ଦେଖିବ ?" ସେତେବେଳକୁ ମିତୁ କାନ୍ଦିବା ଆରମ୍ଭ କଲାଣି । "ମୁଁ ନନାଙ୍କ ସାଙ୍ଗରେ ଯିବିନି ।" ଯାହା ହେଉ ଗୌରୀ (ସାନଭାଇ ପ୍ରିୟନାଥ ମିଶ୍ରଙ୍କ ଝିଅ ଡାକ୍ତରାଣୀ) ଆସି ପରିସ୍ଥିତିକୁ ଆୟତ୍ତାଧୀନ କଲେ । ଦଦେଇ, ଏତେ ଭଲ ଭଲ ଧୋତି ଅଛି । ଦୁନିଆଁରେ ଯିଏ ବାହାରକୁ ଯାଏ, ସେ ସଫା ପିନ୍ଧି ଯାଏ, "ଆପଣ

ନିଶ୍ଚୟ ପିନ୍ଧିବେ ।" ତାଙ୍କ କଥା ରହିଲା । ବଂଶୀବାବୁ ଭଲ ଧୋତି ପିନ୍ଧି ରିକ୍ସାରେ ବସିଲେ ।

ଜଟଣୀରେ ଓହ୍ଲାଇ ବଂଶୀବାବୁ ରିକ୍ସା ଡାକନ୍ତି । ତେଲେଙ୍ଗା ରିକ୍ସାବାଲାଙ୍କ କଥା ଶୁଣି ଆଗ ବିରକ୍ତ ହୁଅନ୍ତି ଯେ ଓଡ଼ିଆମାନେ ଅଳସୁଆ ହୋଇଗଲେ । ସ୍ୱାଧୀନତାର ଏତେବର୍ଷ ପରେ ବି ଓଡ଼ିଶାରେ ତେଲେଙ୍ଗା ରକ୍ସା ସଂଖ୍ୟା କାହିଁକି ବେଶି ଇତ୍ୟାଦି । ତା'ପରେ ସେ ରିକ୍ସାକୁ କହିବେ ଟିକେ ପରିବା ଦୋକାନ ପାଖରେ ରହିବ । ଏମିତି କଥା ଶୁଣି ରିକ୍ସାବାଲା ଅଧିକ ପଇସା ମାଗନ୍ତି । ସେ ପୁଣି ବିରକ୍ତ ହୁଅନ୍ତି । ମିତୁ ଯଦି ମନାକରିବ "ଆଗରୁ କାହିଁକି କହୁଛନ୍ତି ? ଆମେ ତ ସିଧା ଫଳ ଦୋକାନ ପାଖରେ ଓହ୍ଲାଇ ଫଳ ଟିକେ ନେଇଯିବା ।" ସେ କହନ୍ତି, "ଆଗତୁରା କହିଦେବା ଭଲ ନା ।" ଏଇମିତି ଥରେ ନିଜେ ଫଳ ଦୋକାନ ସାମନାରେ ଓହ୍ଲାଇ ଫଳ କିଣିବା ପରେ ତାଙ୍କ ଟଙ୍କା ପ୍ୟାକେଟ୍ ଦୋକାନରେ ଛାଡ଼ିଦେଇ ଆସିଲେ । ବଲ୍ଲୀ ରିକ୍ସାକୁ ପଇସା ଦେଲା । ତା' ଲୋକ ଯାଇ ଷ୍ଟେସନ ପାଖ ଫଳ ଦୋକାନ ଖୋଜିଲେ; କିନ୍ତୁ ପଇସା ମିଳିଲା ନାହିଁ । ବଲ୍ଲୀଠାରୁ ପଇସା ନେଇ ସେ ଘରକୁ ଫେରିଲେ । ଏଭଳି ଘଟଣା ତାଙ୍କ ଜୀବନରେ ଏକାଧିକ ଥର ଘଟିଛି; କିନ୍ତୁ ସେ କେବେ ଏଥିପାଇଁ ଭାଙ୍ଗିପଡ଼ି ନାହାନ୍ତି । ଯେଉଁ ପଇସା କଷ୍ଟ ନ କରି ଉପାର୍ଜନ କରାଯାଏ, ତାହା ଭୋଗ କରିହୁଏ ନାହିଁ ବରଂ ତା'ଠାରୁ ଅଧିକ ଅର୍ଥ କୌଣସି ଉପାୟରେ ବରବାଦ୍ ହୋଇଯାଏ । ଏହା ଥିଲା ବଂଶୀବାବୁଙ୍କ ବିଚାର । ତେଣୁ ସେ ଟଙ୍କା ହଜିବା କଥା ନିଜେ କାହାକୁ କହୁନଥିଲେ ବା ବଲ୍ଲୀବୋଉ କାହାକୁ କହିଲେ ସେ ସହିପାରୁ ନଥିଲେ । ଓଲଟି ବିରକ୍ତି ପ୍ରକାଶ କରୁଥିଲେ । ଛୋଟ ଛୋଟ ପାଇବା ହଜାଇବା ନେଇ ଏତେ ବିବ୍ରତ ହେଲେ, ବଡ଼ ବଡ଼ ପ୍ରାପ୍ତି ହାତଛଡ଼ା ହୋଇଯିବ ବୋଲି ସେ ମିତୁକୁ ବାରମ୍ବାର ଉପଦେଶ ଦେଉଥିଲେ ।

**ଜ୍ୟେଷ୍ଠା କନ୍ୟା ବଲ୍ଲୀ ସହିତ ସମ୍ପର୍କ :**

ନନାଙ୍କ ମୁହଁ ନ ଦେଖି ବଲ୍ଲୀ ବଢ଼ିଥିଲା । ବାହା ମଧ ହୋଇଥିଲା । ତା'ର ପାରିବାରିକ ଜୀବନ ସେମିତି ଆନନ୍ଦମୟ ନଥିଲା । ତା'ର କୌଣସି ସନ୍ତାନ ନଥିଲେ । ତେଣୁ ସେ ସମୟର ସଦୁପଯୋଗ ପାଇଁ ସମାଜସେବାରେ ପ୍ରଥମେ ମନ ଦେଇଥିଲେ ମଧ ପରେ ଚାକିରୀ କରିଥିଲା । ଭୁବନେଶ୍ୱରରେ ନବପ୍ରତିଷ୍ଠିତ ଖଦୀ ଓ ଗ୍ରାମଦ୍ୟୋଗ ବୋର୍ଡ଼ରେ ସେ ଯୋଗ ଦେଇଥିଲା । ବଡ଼ଝିଅ ପ୍ରତି ବଂଶୀବାବୁ କେବେ ସେତିକି ଆଗ୍ରହ ଦେଖାଇଛନ୍ତି ବୋଲି କହିହେବ ନାହିଁ । କିନ୍ତୁ ବଲ୍ଲୀ ତା' ନନାଙ୍କୁ ତା'ର ସନ୍ତାନ ଭଳି ମନେ କରୁଥିଲା । ତାଙ୍କପାଇଁ ଭଲମନ୍ଦ ଜିନିଷ କିଣି ଆଣୁଥିଲା । ଏପରିକି ଜୋଇଁ

ଆର୍ତ୍ତବାବୁ ମଧ୍ୟ ଶ୍ୱଶୁରଙ୍କ ଏକବାଗିଆ ପଣକୁ ଉଦାର ଭାବରେ ଗ୍ରହଣ କରି ନେଉଥିଲେ । ଘରର ଭଲମନ୍ଦ ପାଇଁ ବଂଶୀବାବୁଙ୍କର କୌଣସି ଉତ୍ତରଦାୟିତ୍ୱ ଥିବାର ମନେହେଉ ନଥିଲା । କେବଳ ଠାକୁରାଣୀ ପୂଜା ଓ ପାଠପଢ଼ା ଏହି ଦୁଇଟି କାମରୁ ସେ ଆନନ୍ଦ ପାଉଥିଲେ ।

କେବେ ପ୍ରଥମାଷ୍ଟମୀ ବା ଜ୍ୟେଷ୍ଠ ପୂର୍ଣ୍ଣମୀ ପାଇଁ ବଲ୍ଲୀ ପାଖକୁ ଦଶୋଟି ଟଙ୍କା ସେ ମନିଅର୍ଡ଼ର କରି ଦେଉଥିଲେ ପତ୍ନୀଙ୍କ ଅନୁରୋଧ ରକ୍ଷା କରି; କିନ୍ତୁ ତାଙ୍କର କେଉଁ ଜିନିଷ ଆବଶ୍ୟକ ହେଲେ ସେ ବିନା ଦ୍ୱିଧାରେ ବଲ୍ଲୀ ପାଖକୁ ଚିଠି ଲେଖି ତାହା ଯୋଗାଡ଼ କରି ନେଉଥିଲେ । ପ୍ରତି ସପ୍ତାହରେ ଅତି କମ୍‌ରେ ଖଣ୍ଡିଏ ଚିଠି ସେ ବଲ୍ଲୀ ପାଖକୁ ଅବଶ୍ୟ ଲେଖୁଥିଲେ । ସେଥିରେ ନିଜର ଶାରୀରିକ ସୁସ୍ଥତା ତଥା ତା' ପାଇଁ କିଛି ଉପଦେଶ ନିଶ୍ଚୟ ରହୁଥିଲା ।

ଆଉ ଯେଉଁ ପିଲାମାନଙ୍କୁ ବଂଶୀଧର ଭଲ ପାଉଥିଲେ, ସେମାନେ ହେଲେ ବଡ଼ଭାଇ ରାଧାନାଥ ମିଶ୍ରଙ୍କ ପୁଅ ବିନୋଦ ବିହାରୀ ଓ ସାନଭାଇ ପ୍ରିୟନାଥ ମିଶ୍ରଙ୍କ ଝିଅ ଗୌରାଙ୍ଗିନୀ । ବିନୋଦ ବିହାରୀ ଓରଫ ବିହାରୀ ତାଙ୍କୁ ବିଶେଷ ସମ୍ମାନ କରୁଥିଲେ ଓ ଖୁବ୍ ଭଲ ପାଠ ପଢ଼ି ଗୌରାଙ୍ଗିନୀ ନିଜ ଅଧ୍ୟବସାୟ ବଳରେ ଡାକ୍ତରାଣୀ ହୋଇପାରିଥିଲେ । ବିନୋଦ ବିହାରୀଙ୍କ ବଡ଼ପୁଅ ପ୍ରତାପ ମଧ୍ୟ ତାଙ୍କର ଖୁବ୍ ଆଦରର ପାତ୍ର ଥିଲେ ।

**ସ୍ୱାମୀ ଭାବରେ ବଂଶୀବାବୁ :**

ବଂଶୀବାବୁ ପରିସ୍ଥିତିର ଦାୟରେ ପଡ଼ି ବାପା ମାଆଙ୍କ ଆଗ୍ରହ ଏଡ଼ାଇ ନ ପାରି ଶ୍ରୀମତୀ ଦେବୀଙ୍କ ପାଣିଗ୍ରହଣ କରିଥିଲେ । ପୁଣି ଜ୍ୟେଷ୍ଠା କନ୍ୟା କୃଷ୍ଣବଲ୍ଲଭୀର ଜନ୍ମ ପରେ ଶ୍ରୀମତୀ ଦେବୀ ଓରଫ ଶଙ୍ଖୀ (ଶ୍ରୀମତୀଙ୍କ ଶ୍ରଦ୍ଧା ନାମ)ଙ୍କୁ ବଲ୍ଲୀବୋଉ ରୂପରେ ଦେଖିବା ବେଳକୁ ସେ ଗୃହତ୍ୟାଗୀ ହୋଇଥିଲେ । ସମଗ୍ର ଜୀବନ ବଲ୍ଲୀବୋଉ ସେଇ ଗୋଟିଏ ଭୂମିକା ତୁଲାଇଲେ । ତାହାହେଉଛି ଦୁଃସାହସୀ ଜିଦ୍‌ଖୋର୍ ଝିଅ ବଲ୍ଲୀର ବୋଉ ଭୂମିକା । ଶ୍ୱଶୁର ଗଙ୍ଗାଧର ମିଶ୍ରଙ୍କର ବହୁ ପୂର୍ବରୁ ଦେହାନ୍ତ ହୋଇଥିଲା; କିନ୍ତୁ ଶାଶୁ ଦ୍ୱିତୀୟା ଦେବୀ (ଗଙ୍ଗାଧର ମିଶ୍ରଙ୍କର ତୃତୀୟ ପତ୍ନୀ) ବଂଶୀବାବୁଙ୍କ ଫେରିବା ବାଟକୁ ଅନାଇଁ ରହିଥିଲେ । ମିତୁର ଜନ୍ମ ବେଳେ ମଧ୍ୟ ସେ ଅନ୍ୟମାନଙ୍କ ପରି ଦୁଃଖ କରି ନଥିଲେ । ବଲ୍ଲୀବୋଉଙ୍କୁ ସେ ନିଜ ଅଭୟ ପଣତ ତଳେ ଢାଙ୍କି ରଖିଥିଲେ । ୧୯୫୬ରେ ତାଙ୍କର ଦେହାନ୍ତ ହେଲା । ବଂଶୀବାବୁ ଥିଲେ ସ୍ୱାଧୀନତା ସଂଗ୍ରାମୀ ପୁଣି ଜନ୍ମମାଟିକୁ ଫେରି ସେ ପାଲଟିଗଲେ ଶିକ୍ଷକ । ତେବେ ସ୍ୱାମୀ ଭାବରେ ତାଙ୍କର ଭୂମିକା କ'ଣ

ଥିଲା ? କେବଳ ପରିଣତ ବୟସରେ ମିତୁ ଜନ୍ମ ହେବାର ଥିଲା ବୋଲି କ'ଣ ସେ ବିଦେଶରୁ ଫେରିଥିଲେ ।

ବଲ୍ଲୀବୋଉଙ୍କ ସହିତ କେବେ ସେ ଖୁସିଗପ କରିବାର କେହି ଦେଖି ନାହାନ୍ତି । ପରିବା, ତେଲ-ଲୁଣ ସରିଗଲେ ବଲ୍ଲୀବୋଉ ମିତୁକୁ କହନ୍ତି "ନନାଙ୍କୁ କହ ପରିବା ଆସିବ ।" ବଲ୍ଲୀବୋଉ ମଧ ତାଙ୍କର କିଛି ଲୋଡ଼ା ହେଲେ ମିତୁକୁ ମାଧ୍ୟମ କରି ବଂଶୀବାବୁଙ୍କୁ ତାହା ଜଣାଇ ଦିଅନ୍ତି । ବଲ୍ଲୀବୋଉ କେବେ ସ୍ୱାମୀଙ୍କ ଖାଇବା ପାଖରେ ବସି "ଏଇଟା ଖାଅ, ସେଇଟା ଖାଅ" ମଧ କହନ୍ତି ନାହିଁ । କେମିତି ଗୋଟିଏ ଅଦୃଶ୍ୟ ଦୂରତ୍ୱ ଉଭୟଙ୍କ ଭିତରେ ଥାଏ, ଯାହା ଅନୁଭବ କରିହୁଏ । ମିତୁର ଦେହ ଖରାପ ବେଳେ ମଧ ସେ ବଲ୍ଲୀବୋଉଙ୍କୁ ସାଧାରଣ ଭାବରେ ଆଶ୍ୱାସନା ଦେବା କେହି ଦେଖି ନାହାନ୍ତି । ଯଦି କେବେ ବଲ୍ଲୀବୋଉଙ୍କ ଦେହ ଖରାପ ହୁଏ (ସାଧାରଣ ଥଣ୍ଡା ଜ୍ୱର) ତେବେ ବଂଶୀବାବୁ ଜାଣିବେ ବା କେମିତି ? ଯଦି ବଲ୍ଲୀବୋଉ କେବେ ଭୋରୁ ଉଠି ନ ପାରନ୍ତି, ତାଙ୍କୁ କ'ଣ ହୋଇଛି ନ ପଚାରି ବଂଶୀବାବୁ ସିଧା ଯାଇ ତାଙ୍କର ଜଣେ ଭାଉଜଙ୍କୁ ଡାକିଆଣନ୍ତି । ସେ ଆସି "ତୋର କ'ଣ ହୋଇଛି ?" ପଚାରି ବ୍ୟସ୍ତ ହେଲେ ହିଁ ବଲ୍ଲୀବୋଉ ବୁଝିପାରନ୍ତି ଯେ ତାଙ୍କ ସ୍ୱାମୀ ତାଙ୍କପାଇଁ ବ୍ୟସ୍ତ ହେଉଛନ୍ତି । ବଂଶୀବାବୁ ବୁଝିପରନ୍ତି ନାହିଁ ଯେ ଅନ୍ୟ କାହାକୁ ନ ଡାକି ସେ ଯଦି ନିଜେ ଯାଇ ପତ୍ନୀଙ୍କ ପାଖରେ ବସି "ତୁମର କ'ଣ ହୋଇଛି ?" ବୋଲି ପଚାରି ଥାଆନ୍ତେ, ତେବେ ହୁଏତ ବଲ୍ଲୀବୋଉଙ୍କ ଦେହକଷ୍ଟ ସେହି ମୁହୂର୍ତ୍ତରେ ଉପଶମ ହୋଇଯାଇ ଥାଆନ୍ତା । କିନ୍ତୁ ତାହା କ'ଣ ବଂଶୀଧରଙ୍କ ପକ୍ଷରେ ସମ୍ଭବ ?

ଦେଶ ବିଦେଶ ବା ସରକାରଙ୍କ ସମ୍ପର୍କରେ ଖୁବ୍ ଜୋରରେ କଥା କହୁଥିବା ବଂଶୀବାବୁ ଅକସ୍ମାତ ବଲ୍ଲୀବୋଉଙ୍କୁ ଦେଖିଲେ ନିରବ ହୋଇଯାଆନ୍ତି । ହୁଏତ ତାଙ୍କ ଅନ୍ତରର ଅପରାଧବୋଧ ତାଙ୍କୁ ବିବ୍ରତ କରେ । ସ୍ୱାମୀସୁଲଭ ଦମ୍ଭରେ ସେ କେବେ ପତ୍ନୀଙ୍କୁ କଥା କହନ୍ତି ନାହିଁ ।

ପ୍ରାୟ ୧୯୬୪ ମସିହାର କଥା । ଶୀତଦିନ । ସେଦିନ ଗୋବିନ୍ଦ ଦ୍ୱାଦଶୀ ବୁଡ଼ ଥାଏ । ବଂଶୀବାବୁ ଗାଧୋଇ ଆସି ଲୁଗା ଶୁଖାଇବା ସ୍ଥାନରେ ଧାନ ଟୋକେଇଟିଏ ଥୁଆ ହୋଇଥାଏ । ଟୋକେଇଟା କେଉଁଠି ରଖିବି ବୋଲି ଦୁଇ ତିନିଥର ପଚାରିବା ପରେ ବଲ୍ଲୀବୋଉ ବିରକ୍ତ ହୋଇ କହିଲେ, "ମୋ ମୁଣ୍ଡରେ ଥୋଇଦିଅ ।" ବାସ୍, ଏତିକିରୁ ଆରମ୍ଭ ହେଲା ବଂଶୀବାବୁଙ୍କ କ୍ରୋଧ । ମୁଁ ଏବେ ଘର ଛାଡ଼ି ଚାଲିଯିବି । ପୁରୁଣା ଟ୍ରଙ୍କ ବାକ୍ସ ଖୋଲାହୋଇ ପାସ୍‌ପୋର୍ଟ ପ୍ରଭୃତି କାଗଜପତ୍ର ବାହାରିଲା ।

ସେତେବେଳକୁ ପାଞ୍ଚଦଶ ଜଣ ମଣିଷ ଅଗଣାରେ ଜମା ହେଲଣି । ମିତୁ ଥାଳିଆରେ ଚୂଡ଼ାଭଜା ଗଣ୍ଡାଏ ଧରି ଖାଉ ଖାଉ ଲୁହ ସିଂଘାଣି ଏକାକାର ହେଲାଣି । ତା' ନନା କ'ଣ ପୁଣି ଥରେ ଘର ଛାଡ଼ି ପଳାଇବେ ? ବଲ୍ଲୀବୋଉ କିନ୍ତୁ ନିର୍ବିକାର । ଘଣ୍ଟାକ ଭିତରେ ବ୍ୟାଗ୍ ସଜାଡ଼ି ବଂଶୀବାବୁ ବାହାରିଲେ । ପୁତୁରାମାନେ ମନା କରୁଥାଆନ୍ତି । ସେତେବେଳେ ସିନା ପୃଥିବୀ ବୁଲୁଥିଲେ । ଏବେ ବୟସ ହେଲାଣି । ପୁଣି କ'ଣ ରାଗରୋଷ ? ବ୍ୟାଗ୍‌ଟିଏ ହାତରେ ଧରି ବଂଶୀବାବୁ ବାଡ଼ିଧରି ଘରୁ ବାହାରିଲେ । ବିନୋଦ ବିହାରୀ (ପୁତୁରା) ଯାଇ ବାଟ ଓଗାଳିଲେ । "କକେଇ ! ଖୁଡ଼ୀର ଭୁଲ୍ ହୋଇଛି, ଆଉଏମିତି ସେ କହିବନି । ତୁମେ ଘରକୁ ଚାଲ ।" ତା'ପରେ ସେ ଫେରିଲେ । ବଲ୍ଲୀବୋଉ କିନ୍ତୁ ବେଶ୍ କିଛିଦିନ ବିରକ୍ତି ପ୍ରକାଶ କରିଥିଲେ, "ବଳ ବୟସ ହଟିଲା । ଆଉ ବିଲାତ ଯିବାକୁ ସାହସ ନାହିଁ । ଏଗୁଡ଼ାକ ମିଛ ଧମକାଣ ।" କିନ୍ତୁ ଏକଥା ସେ କେବେ ବଡ଼ପାଟିରେ ସୁଦ୍ଧା ବଂଶୀଧରଙ୍କୁ କହି ନଥିଲେ ।

ବିଦେଶରେ ଗାଁ କଥା, ସ୍ତ୍ରୀ-ପିଲାଙ୍କ କଥା ମନେ ପଡୁଥିଲା କି ନାହିଁ ବୋଲି କେହି ଆଗ୍ରହରେ ପଚାରିଲେ ଭାବପ୍ରବଣ ହୋଇ ବଂଶୀବାବୁ ବେହୋସ ହୋଇ ଯାଉଥିଲେ । ନିମ୍ନ ରକ୍ତଚାପ ତାଙ୍କୁ କବଳିତ କରିଥିଲା । ସେଥିପାଇଁ ବଲ୍ଲୀବୋଉ ଚିର ଜାଗ୍ରତ ଥିଲେ । ବରାବର ସେ କହୁଥିଲେ, "କ'ଣ ମିଳିବ ସେ ପଛ କଥାରୁ ! ମୋର ବୟସ ତ ଫେରିବାର ନାହିଁ । ସେ ଯେ ଘରକୁ ଫେରିଲେ, ସେଇ ମୋ ପାଇଁ ଢେର୍," ତେଣୁ ମିତୁର ଆଗ୍ରହ ଥିଲେ ବି ବୋଉ ଭୟରେ ବିଦେଶ କଥା ପଚାରୁ ନଥିଲା ।

ପତ୍ନୀଙ୍କୁ ଜୀବନସାରା ଅଣହେଲା କରିଥିଲେ ବି ଶେଷ ଦିନମାନଙ୍କରେ ସେ ତାଙ୍କୁ ମାଗି ପାନ ଖାଉଥିଲେ । ବଲ୍ଲୀବୋଉ ନିଜପାଇଁ ପାନ ଛେଚିଲେ, ତାଙ୍କ ପାଖକୁ ହାତ ବଢ଼ାଇ ଦେଉଥିଲେ ପିଲାଙ୍କ ପରି, ଆଉ ବଲ୍ଲୀବୋଉ ମୃତ୍ୟୁର ପ୍ରାୟ ମାସକ ପୂର୍ବରୁ ବଂଶୀବାବୁଙ୍କ ପାଖରେ ଟିକେ ବସିବାକୁ ଭଲ ପାଉଥିଲେ । କେବେ ବଂଶୀବାବୁଙ୍କ ପାଇଁ ସେ ବିବ୍ରତ ହୋଇ ନଥିଲେ । "ପିଲାମାନେ ତ ସବୁ କରୁଛନ୍ତି । ସେ ଅଣହେଲା ହେଇ ନାହାନ୍ତି" କହି ନିରବ ରହୁଥିଲେ । ଶେଷବେଳକୁ କିନ୍ତୁ "ନନାଙ୍କୁ ଫଳ ଦେ, ଆଇସ୍‌କ୍ରିମ୍ ଦେ" ବୋଲି ସେ ମିତୁକୁ ବାରମ୍ବାର କହୁଥିଲେ । ଏଇମିତି ଗୋଟାଏ ଦୀର୍ଘ ବୈବାହିକ ଜୀବନ କଟିଗଲା । ରେଳଲାଇନର ଦୁଇଟି ଲୁହା ଧାରଣା ଭଳି । ଦୁଇଜଣଙ୍କୁ ଏକାଠି କରିଥିବା ମିତୁ ଏସବୁ ଘଟଣାର ସାକ୍ଷୀ ଥିଲା ।

"ବଲ୍ଲୀବୋଉ କେମିତି ଅଛନ୍ତି ?" ବୋଲି ମିତୁକୁ ପଚାରୁଥିବା ବ୍ୟକ୍ତି କିନ୍ତୁ ବଲ୍ଲୀବୋଉଙ୍କ ମୃତ୍ୟୁରେ ସତରେ ବିବ୍ରତ ହୋଇଥିଲେ । ସେ ଯେମିତି ଜାଣିଥିଲେ

ବଲ୍ଲୀବୋଉ ତାଙ୍କୁ ଠକିଦେଇ ଆଗରୁ ଚାଲିଯିବେ । ପିଲାଙ୍କ ଭଳି ସେ ପତ୍ନୀଙ୍କ ମର ଶରୀର ଦାହ ହେବା ପୂର୍ବରୁ ଖାଇବାକୁ ମାଗିଥିଲେ ସିନା; କିନ୍ତୁ ବଲ୍ଲୀବୋଉଙ୍କ ମୃତ୍ୟୁ ତାଙ୍କୁ ମାନସିକ ସ୍ତରରେ ଧକ୍କା ଦେଇଥିଲା । ତାଙ୍କର ସବୁ ଦୈନନ୍ଦିନ କାର୍ଯ୍ୟକ୍ରମ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ସେ ଆଉ ଖବରକାଗଜ ପଢ଼ିବାକୁ ମିତୁକୁ ବାଧ କରୁ ନଥିଲେ । ନ ଖାଇଲେ ବି ନିରବରେ ଶୋଇ ରହୁଥିଲେ । ବଲ୍ଲୀବୋଉଙ୍କର ଏକମାତ୍ର ଦାୟିତ୍ୱ ଥିଲା ତାଙ୍କୁ ଖୁଆଇ ଦେବା । ତେଣୁ ଆଉ କାହା ହାତରୁ ଖାଇବାକୁ ମଧ୍ୟ ସେ ସୁଖ ପାଉ ନଥିଲେ । ବଲ୍ଲୀବୋଉଙ୍କ ଶୁଦ୍ଧିକ୍ରିୟା ବେଳେ ମିତୁ ଗାଁକୁ ଯାଇଥିଲା । ସେ କେତେଦିନ ବଂଶୀବାବୁ ଖୁବ୍ ପାଟିତୁଣ୍ଡ କରୁଥିଲେ, ନ ହେଲେ ଫିଙ୍ଗା ଫୋପଡ଼ା ମଧ୍ୟ କରୁଥିଲେ । ତାଙ୍କୁ ସମ୍ଭାଳିବା ଏତେ କଷ୍ଟକର ହେଉଥିଲା ଯେ ତାହା ଅଙ୍ଗେ ଲିଭେଇଥିବା ବ୍ୟକ୍ତି ହିଁ କହିପାରିବ ।

ବଲ୍ଲିବୋଉଙ୍କ ମୃତ୍ୟୁ ପରେ ଯେପରି ସେ ନିଜର ଅନ୍ତିମ କାଳ ପାଇଁ କେବଳ ଅପେକ୍ଷା ହିଁ କରିଥିଲେ । ଦୁଆରୀ ବାବୁ ବେଳେ ବେଳେ ଆସିଲେ ସେ ତାଙ୍କୁ ସେହି କଥା ହିଁ କହୁଥିଲେ । କେବେ କେମିତି ମିତୁର ପିଲାଦିନ, ବଲ୍ଲୀବୋଉଙ୍କ କର୍ମତତ୍ପରତା, ତ୍ୟାଗ ତଥା ନିଜର ସ୍ୱାର୍ଥପରତାର କଥା ମଧ୍ୟ ସେ ଖୁବ୍ ସହଜରେ କହିଯାଉଥିଲେ । ତା' ସହିତ ଭାରତୀୟ ନାରୀର ଆଦର୍ଶ ସୀତା, ଦମୟନ୍ତୀଙ୍କ ଉଦାହରଣ ଦେବାରେ ମଧ୍ୟ ଥକୁନଥିଲେ ।

**ଗାଁର ସଚେତନ ମଣିଷ ବଂଶୀବାବୁ :**

ଗାଁର ମୁରବୀ କହିଲେ ଯାହା ବୁଝାଯାଏ, ସେଥିରେ ବଂଶୀବାବୁଙ୍କ ବ୍ୟକ୍ତିତ୍ୱ ଖାପ୍ ଖାଉନଥିଲା । ନିଜ କଥାକୁ ଜୋରରେ କହିବା ବା ଯୁକ୍ତି କରି ତାହା ପ୍ରମାଣ କରାଇ ପାରିବା ତାଙ୍କୁ ଜଣାନଥିଲା । ତେଣୁ ଖୁବ୍ ଉଦାସୀନ ଭାବରେ ବଞ୍ଚୁଥିଲେ । ତଥାପି କାହାଘରେ କିଏ ରୋଗବ୍ୟାଧିକାରେ ପଡ଼ିଲେ ସେ ନିଶ୍ଚୟ ଦେଖିବାକୁ ଯାଉଥିଲେ । ବାସୁବାବୁ (ବାସୁଦେବ ମିଶ୍ର) ଓ ମିଚ୍ଛୁବାବୁ (ସତ୍ୟବାଦୀ ମିଶ୍ର)ଙ୍କ ସହିତ ଦେଖା କରିବାକୁ ଗଲେ ସେମାନଙ୍କୁ ନିଜେ ପ୍ରଣାମ କରୁଥିଲେ ଓ ମିତୁକୁ ମଧ୍ୟ ମୁଣ୍ଡିଆ ମାରିବାକୁ କହୁଥିଲେ । ସକାଳୁ ବା ଉପରଓଳି କିଶୋର ବାବୁ (କିଶୋର ଚନ୍ଦ୍ର ମିଶ୍ର)ଙ୍କ ଘରେ ଯାଇ ଚା' ପିଉଥିଲେ । କାହାର ବାହା ବ୍ରତଘର ହେଲେ ନିଶ୍ଚୟ ସେଠାରେ ଉପସ୍ଥିତ ରହୁଥିଲେ । ପୁତୁରା ବିହାରୀ ବାବୁ (ବିନୋଦ ବିହାରୀ ମିଶ୍ର)ଙ୍କ ଦେହ ଅସୁସ୍ଥ ସମୟରେ ସେ ଖଣ୍ଡାଖାଇ ଠାକୁରାଣୀଙ୍କ ନିକଟରେ ଖୁବ୍ ନିଷ୍ଠାର ସହିତ ସମ୍ପୂଟ ଚଣ୍ଡୀପାଠ କରିଥିଲେ । କିନ୍ତୁ ଚଣ୍ଡୀପାଠ ଶେଷହେବା ପୂର୍ବରୁ ହିଁ ବିନୋଦ ବିହାରୀଙ୍କ ଦେହାନ୍ତ

ହୋଇଥିଲା । ବଂଶୀବାବୁ ବେଶ୍ କିଛିଦିନ ଦୀର୍ଘ ନିଃଶ୍ୱାସ ପକାଇଥିଲେ । "ସେ ସିନା ଆମକୁ କାନ୍ଧରେ ନେଇଥାଆନ୍ତା । ଆମକୁ ତା' ଶୁଦ୍ଧିଘର କରିବାକୁ ପଡ଼ିଲା," ଏ ଥିଲା ତାଙ୍କର ଦୁଃଖ ।

ନିଜ ଦେହ ଖରାପ ବେଳେ ସେ ମୁସଲମାନ ଛାତ୍ରମାନଙ୍କ ହାତରେ ପାଉଁରୁଟି ଓ ଅଣ୍ଡା ମଗାଇ ଆଣି ମିତୁ ସାହାଯ୍ୟରେ ଅଲଗା ଚୂଲିରେ ତିଆରି କରି ଖାଉଥିଲେ । ଯାହା ଏ ସମୟରେ ଏକ ସମ୍ବାଦ ପାଲଟିଥିଲା । ବଂଶୀବାବୁ କିନ୍ତୁ ଥିଲେ ନିର୍ବିକାର ।

ବଂଶୀବାବୁଙ୍କ ଗାଁର ଜଣେ ରୟତ ଥିଲା । ତା' ନାଁ ବାବାଜୀ ପରିଡ଼ା । ସେ ବଂଶୀବାବୁଙ୍କ ଦୁଃଖ ସୁଖରେ ଠିଆ ହେଉଥିଲା । ତା' ଘରେ ବଂଶୀବାବୁ କେତେଥର ଖାଇଛନ୍ତି (ବିଶେଷ କରି ଖାସି ମାଂସ ବା କୁକୁଡ଼ା) ତା'ର ଠିକଣା ନାହିଁ । ସମସ୍ତେ ହସିଛନ୍ତି କିନ୍ତୁ ସେ ଯାହା କରିଛନ୍ତି, ସେଥିପାଇଁ ତାଙ୍କର କୌଣସି ଦୁଃଖ ବା କ୍ଷୋଭ ନଥିଲା । ତା' ହାତରେ ଦରକାରୀ ଜିନିଷମାନ ମଗାଇବାକୁ ସେ ଭଲ ପାଉଥିଲେ ।

ବାବାଜୀ ଭଳି ମୁଲିଆ ବି ଥିଲା ଆଉ ଗୋଟିଏ ଚରିତ୍ର । ସେ ରାମଲୀଳାରେ ରାମ ହେଉଥିଲା । ମିତୁକୁ ପିଲାଦିନେ କାଖୋଉଥିଲା । ବଂଶୀବାବୁ ତା'ପରି ଅନେକଙ୍କୁ ଭଲ ପାଉଥିଲେ ।

ତାଙ୍କ ସାହିର କୁଶ ମିଶ୍ର ବେଳେ ବେଳେ ଆସି ତାଙ୍କ ପାଖରେ ବସୁଥିଲେ । ଅନ୍ୟାନ୍ୟ ପିଲାଙ୍କ ଭିତରେ ବଂଶୀ ବାପା ବା ବିଲାତି ବାପା ଥିଲେ ଆଶ୍ଚର୍ଯ୍ୟର ବସ୍ତୁ । ଯେମିତି ସେ ଅନର୍ଗଳ ଇଂରାଜୀ କହିପାରୁଥିଲେ, ସେମିତି ଦେବୀ ସ୍ତୋତ୍ର ପଢ଼ିପାରୁଥିଲେ । ଯେମିତି ଗଣିତ କଷୁଥିଲେ, ସେମିତି ପଇତା ମନ୍ତୁରାଇ ପାରୁଥିଲେ । "ପଇତା ମନ୍ତ୍ର ନ ଶିଖିଲେ କି ବ୍ରାହ୍ମଣ ପିଲା ?" ବୋଲି ସେ ଗାଁର ପୁତୁରାମାନଙ୍କର ପିଲାମାନଙ୍କୁ ଆକଟ ମଧ୍ୟ କରୁଥିଲେ । ଏପରି କି ବଲ୍ଲିବୋଉଙ୍କର ଅପରେସନ ସମୟରେ ତାଙ୍କ ପୁତୁରାବୋହୂମାନେ ତାଙ୍କ ଝାଡ଼ା ପରିସ୍ରା ମଧ୍ୟ ନିର୍ବିକାରରେ ସଫା କରିଥିଲେ ।

ବିକାରଶୂନ୍ୟ ବଂଶୀବାବୁ କେବେ ଭାଇବୋହୂମାନଙ୍କୁ ଭୁଲ୍‌ରେ ନୂଆବୋଉ ଡାକିବାର ନଜିର ମଧ୍ୟ ଅଛି; କିନ୍ତୁ ତାଙ୍କ ଦୃଷ୍ଟିରେ କୌଣସି ଆବିଳତା ନଥିଲା । ତେଣୁ ଏକଥା ସବୁ ହସ କଥାରେ ହିଁ ସୀମିତ ଥିଲା ।

ବୟସ ଅଧିକ ହେବାରୁ ଚିଠିପତ୍ର ଲେଖିବା ପାଇଁ ସେ ଲିଲିନାମ୍ନୀ ନାତୁଣୀ ଉପରେ ନିର୍ଭର କରୁଥିଲେ । ପ୍ରାୟ ସପ୍ତାହରେ ଦୁଇତିନି ଖଣ୍ଡ ଚିଠି ସିଏ ଦୁଇ ଝିଅଙ୍କ ପାଖକୁ ଅବଶ୍ୟ ଲେଖୁଥିଲେ । ଏହା ସହିତ ଡାଏରୀ ଲେଖିବାର ଅଭ୍ୟାସ ମଧ୍ୟ ଜାରିଥିଲା ।

ସେ ଡାଏରୀ ଅନ୍ୟ କେହି ପଢ଼ିବା ସମ୍ଭବ ମଧ୍ୟ ନଥିଲା, କାରଣ ସେତେବେଳକୁ ତାଙ୍କର କଲମ ଧରି ଲେଖିବାର ଅବସ୍ଥା ନଥିଲା । ସେ କିନ୍ତୁ ଭାବୁଥିଲେ ଯେ ସେ ଠିକ୍ ଲେଖୁଛନ୍ତି । କେହି ତାଙ୍କ ଅକ୍ଷର ପଢ଼ି ନ ପାରିଲେ ସେ ଖୁବ୍ ବିରକ୍ତି ପ୍ରକାଶ କରୁଥିଲେ ।

**ପରିହାସ ପ୍ରିୟ ବଂଶୀବାବୁ :**

ବଂଶୀବାବୁ ଯେ ପରିହାସ କରିପାରନ୍ତି, ଏକଥା ଶୁଣିଲେ ତାଙ୍କର ପ୍ରିୟ ମଣିଷମାନେ ମଧ୍ୟ କିଛି ବୁଝିବେ । କିନ୍ତୁ ତାଙ୍କର ଯେଉଁ ରସିକତା ଥିଲା, ତାହା ଥିଲା ବେଶ୍ ଉଚ୍ଚକୋଟୀର । ସେଠି ତରଳ ହାସ୍ୟ ନ ଥିଲା, ଥିଲା ତୀର୍ଯ୍ୟକ୍ ବ୍ୟଙ୍ଗ । ପ୍ରବୋଧ ବାବୁ ଗଣିତରେ ଦୁର୍ବଳ । ଯେତେ ବୁଝାନ୍ତି ଗଣିତ ତାଙ୍କୁ ଆସେ ନାହିଁ । ସେଥିପାଇଁ ଥରେ ସେ ମ୍ୟାଟ୍ରିକ୍‌ରେ ଫେଲ୍ ମଧ୍ୟ ହୁଅନ୍ତି । ବଂଶୀବାବୁ କହନ୍ତି, "ଆରେ ବୁଲା (ପ୍ରବୋଧ ବାବୁଙ୍କ ଡାକ ନାମ) ମ୍ୟାଥ୍‌ମାଟିକ୍ସ ନ ହେଲେ ମଥା ମାଟି ହୋଇଯିବ । ତୁ ଗଣିତ କଷିପକା ।" ତା'ପରେ ସେ ବୁଲା ଓରଫ ପ୍ରବୋଧଙ୍କୁ ନିଜ ତରଫରୁ ଘରକୁ ଡାକି ଗଣିତ ପଢ଼ାନ୍ତି ଓ ପ୍ରବୋଧ ବାବୁ ମ୍ୟାଟ୍ରିକ୍ ପାଶ୍ କରନ୍ତି । ସେହିପରି ସେ କମର୍ସକୁ 'କମ୍ ଅର୍ସ' ବୋଲି ପରିହାସରେ କହନ୍ତି । ଛାତ୍ରମାନଙ୍କୁ ସେ ଚାରି ଭାଗରେ ବିଭକ୍ତ କିଥିଲେ । ଅର୍ଥାତ୍ କୌଣସି ପାଠ ବଢୁଥିବା ପିଲା ଏହି ଚାରୋଟି ବିଭାଗ ମଧ୍ୟରୁ ଅବଶ୍ୟ ଗୋଟିଏ ବିଭାଗର ଅନ୍ତର୍ଭୁକ୍ତ ହେବେ । ବେଗ୍‌ବେଗା, ଚିରବେଗା, ବେଗ୍‌ଚିରା ଓ ଚିର୍‌ଚିରା । ଅର୍ଥାତ୍ କିଛି ପିଲା ଅଛନ୍ତି, ଯେଉଁମାନେ ଚଞ୍ଚଳ ପାଠ ମନେ ରଖନ୍ତି ଓ ଚଞ୍ଚଳ ଭୁଲିଯାଆନ୍ତି । ସେମାନେ ହେଲେ 'ବେଗ୍‌ବେଗା' । ଆଉ କିଛି ପିଲା ଅଛନ୍ତି, ଯେଉଁମାନେ କଷ୍ଟକରି ପାଠ ମନେରଖନ୍ତି ଓ ଚଞ୍ଚଳ ଭୁଲନ୍ତି । ସେମାନେ 'ଚିରବେଗା' ଗୋଷ୍ଠୀଭୁକ୍ତ । ଯେଉଁମାନେ ଚଂଚଳ ମନେ ରଖନ୍ତି ଓ ଡେରିରେ ଭୁଲନ୍ତି ବା ଜମା ଭୁଲନ୍ତ ନାହିଁ, ସେମାନେ ହେଲେ 'ବେଗ୍‌ଚିରା' । ଯେଉଁମାନେ କଷ୍ଟରେ ମନେ ରଖି କଷ୍ଟରେ ଭୁଲନ୍ତି, ସେମାନେ ହେଲେ 'ଚିର୍‌ଚିରା' । ନିଜ ଝିଅ ମିତୁକୁ ସେ ସର୍ବଦା 'ବେଗ୍‌ବେଗା ଗୋଷ୍ଠୀର ବୋଲି କହୁଥିଲେ । 'ବେଗ୍‌ଚିରା' କିନ୍ତୁ ଶ୍ରେଷ୍ଠ ଛାତ୍ରର ଲକ୍ଷଣ ବୋଲି ସେ ବୁଝାଇ ଦେଉଥିଲେ । ଏକଥା ପୂର୍ବରୁ କେଉଁଠି କିଏ କହିଛନ୍ତି, ତାହା କେହି ଜାଣନ୍ତି ନାହିଁ । ତେଣୁ ପିଲାମାନେ ଆଗ୍ରହରେ ବଂଶୀବାବୁଙ୍କ ଏଭଳି ଶ୍ରେଣୀ ବିଭାଗକୁ ଗ୍ରହଣ କରି ନେଉଥିଲେ ।

ସେହିପରି ଖନାବଚନରେ କେତେକ ପଦ ମଧ୍ୟ ସେ ମୁଖସ୍ଥ କରିଥିଲେ ଓ କଥା କଥାକେ ଉଦାହରଣ ଦେଉଥିଲେ । ଯେମିତି—"ହସି ପଶେ, ଉଙ୍ଗ ନ ଦିଶେ । ସଜ ଗୋବରରେ ଅଁସେଇ ବସେ । କେବେ ଜାଣ ପୁତା ନିଷ୍ଟେ ବରଷେ ।"

ମିଛ କଥାକୁ ସେ ଖୁବ୍ ଘୃଣା କରନ୍ତି । ପିଲାମାନେ ମିଛ କହିଲେ ସେ କହନ୍ତି, "ଆରେ ଏମିତି ସାନ ମିଛ କାହିଁକି କହୁଛ । ଯଦି ମିଛ କହିବ, ଏମିତି ମିଛ କହ ଯେ କାହା ବାପାର ଦମ୍ଭ ନଥିବ ତାକୁ ପ୍ରମାଣ କରିବା ପାଇଁ ।" ପିଲାଏ ପଚାରନ୍ତି, "ସେ କେମିତି ମିଛ ।" "ଏଇ ଯେମିତି ବଂଶୀଧର ମିଶ୍ର ବନାମ ସୁରତ ଅଲ୍ଲି । ଏବେ ବୁଝିଲୁ ତ ?"

ପିଲାଙ୍କ ନାମ ଦେବା ଉପରେ ସେ ବେଶ୍ ଗୁରୁତ୍ୱ ଦେଉଥିଲେ । ପିଲାର ନାଁ ଏମିତି ହେବା ଉଚିତ, ଯେମିତି ସେ ତା'ର ନାମ ପାଇଁ ଗର୍ବ ଅନୁଭବ କରୁଥିବ । ଥଟ୍ଟାରେ ବି କାହାକୁ ଅଶ୍ଳୀଳ ନାମରେ (ହଗୁରା, ମୁତୁରା) ଡାକିଲେ ସେ ଗୋଟେ ହୀନମନ୍ୟତା ଭୋଗିବ । ସେହି ନାମଟି ନେଇ ସେ ଜୀବନ ସାରା ଲଜ୍ଜା ଅନୁଭବ କରୁଥିବ । ତେଣୁ ନାମ ଦେବା ଉପରେ ହିଁ ବ୍ୟକ୍ତିତ୍ୱ ନିର୍ଭରଶୀଳ ବୋଲି ସେ କହୁଥିଲେ । ଗାଁର ଅଧିକାଂଶ ପିଲାଙ୍କ ନାମକରଣ ସମୟରେ ମଧ୍ୟ ଅଭିଭାବକମାନେ ବଂଶୀବାବୁଙ୍କ ପରାମର୍ଶ ନେଉଥିଲେ । ଥରେ ଜଣେ ଭଦ୍ରଲୋକ ତାଙ୍କ କୁକୁରକୁ 'ଟିପୁ' ଡାକନ୍ତି ବୋଲି କହିବାରୁ ସେ ବିରକ୍ତ ହୋଇଥିଲେ । ଟିପୁସୁଲ୍‌ତାନଙ୍କ ଭଳି ବିଶିଷ୍ଟ ବ୍ୟକ୍ତିଙ୍କ ନାମରେ କୁକୁରକୁ ଡାକିବା କଥାଟି ତାଙ୍କୁ ଭଲ ଲାଗିନଥିଲା । ମିତୁ ଘରେ ଜଣେ ସଫେଇ ଝାଡୁଦାର ଥିଲା, ତା' ନାଁ ଥିଲା ବାଲୁଙ୍କି । ବଂଶିବାବୁ ତାକୁ ବାଲ୍ମିକୀ ବୋଲି ଡାକୁଥିଲେ ଓ ତା' ସହିତ ଦୁଃଖସୁଖ ହେଉଥିଲେ ।

### ନିର୍ଭୀକ ତଥା ସ୍ୱାଭିମାନୀ ବ୍ୟକ୍ତିତ୍ୱ :

ବଂଶୀବାବୁ ଭାରତୀୟ ସଂସ୍କୃତିର ମୁଗ୍ଧ ଉପାସକ ଥିଲେ । ବିଦେଶରେ ଥିବାବେଳେ ସେ ଭଗବତ୍ ଗୀତା ଅବଶ୍ୟ ପଢୁଥିଲେ । ପରିବାର ସହିତ ସମ୍ପର୍କିତ ହେବା ପରେ ସେ ଉପେନ୍ଦ୍ର ଭଞ୍ଜଙ୍କର ବିଭିନ୍ନ ପୁସ୍ତକ, ରାଧାନାଥ, ମଧୁସୂଦନଙ୍କର ପୁସ୍ତକ ତଥା ଉପନିଷଦମାନ ସାନଭାଇ ଶ୍ରୀନିବାସଙ୍କୁ ଚିଠିଲେଖି ମଗାଇ ନେଉଥିଲେ । ଗାଁକୁ ଫେରିବା ପରେ ମଧ୍ୟ ବିଭିନ୍ନ ସଭାସମିତିରେ ଭାଷଣ ଦେବା ବା ସଭାପତିତ୍ୱ କରିବା ପାଇଁ ତାଙ୍କୁ ବିଭିନ୍ନ ସମୟରେ ଡାକରା ଆସୁଥିଲା । କିନ୍ତୁ ସଭାରେ ସେ ଉଦ୍ୟୋକ୍ତାମାନଙ୍କୁ ବା ଅନ୍ୟାନ୍ୟ ବକ୍ତାମାନଙ୍କୁ ବେଳେବେଳେ ସମାଲୋଚନା ମଧ୍ୟ କରୁଥିଲେ । ପଣ୍ଡିତ ପ୍ରବୋଧ କୁମାର ମିଶ୍ର ଥିଲେ ତାଙ୍କର ପ୍ରିୟ ଛାତ୍ର । ସେ କହନ୍ତି, "ପ୍ରାୟ ୧୯୫୯ରେ ଖଣ୍ଡସାହୀରେ ଥିବା ଅନୁଷ୍ଠାନ ପଲ୍ଲୀଭାରତୀ ତରଫରୁ ଭଞ୍ଜଜୟନ୍ତୀ ଉତ୍ସବ ଅନୁଷ୍ଠିତ ହେଉଥାଏ । ତତ୍କାଳୀନ ଉପ-ବାଚସ୍ପତି ଯଦୁମଣି ମଙ୍ଗରାଜ, ଜ୍ଞାନକୋଷ ସଂକଳକ ବାନାମ୍ବର ଆଚାର୍ଯ୍ୟ ଓ ଡାକ୍ତର ବ୍ରଜନାଥ ମିଶ୍ର ଥାଆନ୍ତି ଅତିଥି । ବଂଶୀବାବୁ ସଭାପତି ହେବାର ଥାଏ । ସଭା ସମୟ ଥାଏ ସନ୍ଧ୍ୟା ୬ଟା । ଆୟୋଜକ ପ୍ରବୋଧ ମିଶ୍ର

ଅତିଥିମାନଙ୍କୁ ସାଙ୍ଗରେ ଆଣି ସଭାସ୍ଥଳରେ ପହଞ୍ଚିଲେ ରାତି ସାଢ଼େ ଆଠଟାରେ । ବଂଶୀବାବୁ ରାଗି ଅଗ୍ନିଶର୍ମା । ଯଦୁମଣି ମଙ୍ଗରାଜ ତାଙ୍କୁ କ୍ଷମା ମଧ୍ୟ ମାଗିଥିଲେ । ବଂଶୀବାବୁ କହିଲେ, "You Politicians have no sense or commonsense." ଯଦୁମଣି ମଙ୍ଗରାଜ କହିଲେ, "ଭାଇନା ! ମୋତେ nonsense କହିନ, ମୁଁ ଭାରି ଖୁସି" ତା'ପରେ ସେ ଶାନ୍ତ ହେଲେ । ଭାଷଣ ମଧ୍ୟ ଦେଲେ । କିନ୍ତୁ ସଭାପତିତ୍ୱ କରିବାକୁ ମନା କଲେ । ସଭାପତି ହେଲେ ଡାକ୍ତର ବ୍ରଜନାଥ ମିଶ୍ର ।

୧୯୬୫ରେ ଖଣ୍ଡସାହୀ ନିକଟବର୍ତ୍ତୀ ବୋଧଙ୍ଗରେ ଆଞ୍ଚଳିକ ଯୁବ-ଉତ୍ସବ ଅନୁଷ୍ଠିତ ହେଉଥାଏ । ସଭାପତିତ୍ୱ କରୁଥାଆନ୍ତି ବଂଶୀଧର ମିଶ୍ର । ତତ୍କାଳୀନ ପଞ୍ଚାୟତ ମନ୍ତ୍ରୀ ଓ ଉପମନ୍ତ୍ରୀମାନେ ଅତିଥି । କିନ୍ତୁ ବଂଶୀବାବୁ ସଭାରେ କହିଦେଲେ ଯେ ମନ୍ତ୍ରୀ ନିଶାଗ୍ରସ୍ତ । ମନ୍ତ୍ରୀ ମହୋଦୟ ଯେତେ ବୁଝାଇଲେ ଯେ ସେ ମଦ୍ୟପ ନୁହନ୍ତି; କିନ୍ତୁ ତାଙ୍କର କହିଦେବା କଥା ଯେ ଧନୁରୁ ଛୁଟିଥିବା ତୀକ୍ଷ୍ଣ ଶର ଭଳି ଶାଣିତ ଓ ଯନ୍ତ୍ରଣାଦାୟକ । ସେ ଆଘାତରେ ଏହିଭଳି ଏକାଧିକ ରାଜନୀତିକ ନେତୃବର୍ଗ ଜର୍ଜରିତ ହୋଇଛନ୍ତି ।

୧୯୫୫ରେ ଦଳେଇ ଘାଇ ଭାଙ୍ଗିଥାଏ । ବନ୍ୟାବିପନ୍ନମାନଙ୍କୁ ଦେଖିବା ପାଇଁ ସରକାରୀ ନେତୃବୃନ୍ଦ ଯାଇଥାଆନ୍ତି । ବରପଡ଼ା ନିକଟସ୍ଥ ବନ୍ଧ ଦେଖିବାକୁ ସେତେବେଳେ ହରେକୃଷ୍ଣ ମହତାବ ଓ ଅନ୍ୟାନ୍ୟ ମନ୍ତ୍ରୀମାନେ ଯାଇଥିଲେ । ମନ୍ତ୍ରୀ ଦର୍ଶନ ପାଇଁ ସମସ୍ତେ ଧାଇଁ ଦଉଡ଼ି ବରପଡ଼ା ଗଲେ । କିନ୍ତୁ ବଂଶୀବାବୁ ଗଲେ ନାହିଁ । "ମହତାବ ବାବୁ ଜନନେତା । ସେ ଯଦି ଆସିଛନ୍ତି ମୋ ପାଖକୁ ଆସିବେ । ମୁଁ ତାଙ୍କୁ ଦେଖିବାକୁ ଯିବି କ'ଣ ପାଇଁ । ମୁଁ କ'ଣ ତାଙ୍କୁ ଦେଖି ନାହିଁ ?" ପ୍ରବୋଧ ବାବୁ କହନ୍ତି, "ଏଭଳି ବ୍ୟକ୍ତିତ୍ୱ ମୁ ଦେଖି ନାହିଁ । ସେ କ୍ରୋଧରେ ପ୍ରଚଣ୍ଡ ଅଗ୍ନିସଦୃଶ ଆଉ ଶାନ୍ତ ସମୟରେ ଫୁଲ ଭଳି କୋମଳ । ଥରେ ବୁଝିଗଲେ ସବୁ ଠିକ୍ । ଏମିତି ମଣିଷ ହୁଏତ ଆଉ ଜଣେ ଥିଲେ, ସେ ହେଲେ ଲକ୍ଷ୍ମୀନାରାୟଣ ସାହୁ; କିନ୍ତୁ ସେ ଥିଲେ ସମ୍ପୂର୍ଣ୍ଣ ନରମ ମଣିଷ । ବଂଶୀବାବୁଙ୍କ ଭଳି କ୍ରୋଧୀ ଦୁର୍ବାସା ନଥିଲେ ।

ପ୍ରାୟ ୧୯୬୮-୬୯ ମସିହାର କଥା । ମିତୁ ନୂଆ ନୂଆ କଲେଜ ଯାଉଥାଏ । ଗାଁ ସ୍କୁଲର ବାର୍ଷିକ ଉତ୍ସବକୁ ସେ ତା' ନନାଙ୍କ ସାଙ୍ଗରେ ଯାଉଥିଲା । ବଂଶୀବାବୁ କେଉଁ କାରଣରୁ ଯୁବକମାନଙ୍କ ଉପରେ ବିରକ୍ତ ହୋଇଥାଆନ୍ତି । ଉତ୍ସବ ଶେଷରେ ସମସ୍ତେ ଘରକୁ ଫେରିଲେ । ଜମିଦାର ଗୋପବନ୍ଧୁ ମିଶ୍ରଙ୍କ ନାତି ଚନ୍ଦ୍ରଶେଖର ମିଶ୍ର (ବାବୁନି) ପ୍ରଭୃତି ବଂଶୀବାବୁଙ୍କ ସହିତ ଫେରିଥାଆନ୍ତି । ବଂଶୀବାବୁ କ୍ରୋଧରେ ଜଳୁଥାଆନ୍ତି, "You young people are organising Gundaism." ଆହୁରି କେତେ କ'ଣ

ପିଲାମାନେ ମଧ୍ୟ ଜବାବ ଦେଉଥାଆନ୍ତି । ଖରାଦିନ, କେନ୍ଦ୍ରାପଡ଼ା କେନାଲରେ ଅଳପ ପାଣି ଥାଏ । ମିତୁ ଭାବୁଥାଏ ନନାଙ୍କୁ ଆଉ ରାଗରେ ପିଲାମାନେ ନାଳ ଭିତରକୁ ଠେଲି ଦେବେନି ତ ? କିନ୍ତୁ ବାବୁନି ଓ ତା'ର ବନ୍ଧୁମାନେ ବଂଶୀବାବୁଙ୍କୁ ଆଣି ଘରେ ଛାଡ଼ିଲେ । ମିତୁ ତା'ର ଆଶଙ୍କା ମଧ୍ୟ ସେମାନଙ୍କ ଆଗରେ ବ୍ୟକ୍ତ କଲା । ଯୁବକମାନେ କିନ୍ତୁ କହିଲେ, "ସେ ଆମକୁ ଗାଳି ଦେବେନି ତ ଆଉ କିଏ ଦେବେ ? ତୁ ସେଥିପାଇଁ ବିବ୍ରତ ହେବାର ନାହିଁ ।"

୧୯୭୫ରେ ଜାତୀୟ ଜରୁରୀକାଳୀନ ପରିସ୍ଥିତି । ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି । ଆକବର ଅଲ୍ଲି ଖାଁ ଥାଆନ୍ତି ଓଡ଼ିଶାର ରାଜ୍ୟପାଳ । ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠର ବାର୍ଷିକ ଉତ୍ସବକୁ ରାଜ୍ୟପାଳ ମହୋଦୟ ଅତିଥି ହୋଇ ଯାଇଥାଆନ୍ତି । ସେଠାରେ ମତଲୁବ ଅଲ୍ଲି ପ୍ରମୁଖ ଉପସ୍ଥିତ ଥାଆନ୍ତି । ସ୍କୁଲର ସମ୍ପାଦକ ଶ୍ରୀଯୁକ୍ତ କେଶବ ଚନ୍ଦ୍ର ମିଶ୍ର ଉତ୍ସବର ସମସ୍ତ ଦାୟିତ୍ୱ ବହନ କରୁଥାଆନ୍ତି । ବଂଶୀବାବୁ ସେହି ଉତ୍ସବରେ ଉପସ୍ଥିତ ଥିଲେ । ରାଜ୍ୟପାଳ ଆକବର ଅଲ୍ଲି ଖାଁ ତାଙ୍କର ପରିଚୟ ପାଇ ତାଙ୍କୁ ଆଲିଙ୍ଗନ କରିଥିଲେ ।

କିନ୍ତୁ ରାଜ୍ୟପାଳଙ୍କ ନିକଟରେ ନିଜ ବିଷୟରେ କିଛି କହିବା ଥିଲା ବଂଶୀବାବୁଙ୍କ ସ୍ୱଭାବ ବିରୁଦ୍ଧ । ନିଜର ଅବସ୍ଥା ବିଷୟରେ କାହାକୁ କେବେ ସେ କିଛି ମୁହଁ ଖୋଲି ନାହାନ୍ତି, ଏପରି ହୋଇଛି ଯେ ସେ ବିଦେଶରୁ ଆଣିଥିବା ଘଣ୍ଟାଟି ଅଭାବରେ ପଡ଼ି ବିକ୍ରିକରି ଦେଇଥିଲେ । ଏକଥା ତାଙ୍କ ସ୍ତ୍ରୀ ଜାଣିବା ପରେ ବେଶ୍ ଅସନ୍ତୁଷ୍ଟ ହୋଇଥିଲେ । ଯେଉଁ ବ୍ୟକ୍ତି ସେ ଘଣ୍ଟା ନେଇଥିଲା, ତାକୁ କିଛି ଟଙ୍କା (ଦଶ ବା କୋଡ଼ିଏ ଟଙ୍କା) ଦେଇ ସେ ଘଣ୍ଟା ଆଣି ଢେର୍ ଦିନ ନିଜ ପାଖରେ ରଖିଛନ୍ତି । ବଂଶୀବାବୁଙ୍କୁ ପଚାରିବାରୁ ଉତ୍ତର ମିଳିଛି, "ଟଙ୍କା ଦରକାର ଥିଲା । ସେଥିପାଇଁ ଘଣ୍ଟାଟା ବିକ୍ରି କରିଦେଲି । ସେଥିପାଇଁ ଏତେ ବ୍ୟସ୍ତ କ'ଣ ?"

**କଳ୍ପତରୁ ଉତ୍ସବ :**

ପ୍ରତିବର୍ଷ ଜାନୁୟାରୀ ପହିଲାରେ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସଙ୍କର କଳ୍ପତରୁ ଉତ୍ସବ ଅନୁଷ୍ଠିତ ହୁଏ । ରାମକୃଷ୍ଣ ଆଶ୍ରମ ସ୍କୁଲରେ ପାଠ ପଢ଼ିବା ଦିନଠାରୁ ବଂଶୀଧର ରାମକୃଷ୍ଣ ତଥା ବିବେକାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ଥିଲେ । ଶ୍ରୀ ରାମକୃଷ୍ଣଙ୍କ ଝିଅାରୀ ଲକ୍ଷ୍ମୀଦେବୀଙ୍କଠାରୁ ସେ ଦୀକ୍ଷା ନେଇଥିଲେ । ବିଦେଶରୁ ଗ୍ରାମକୁ ଫେରିବା ପରେ ପ୍ରତିବର୍ଷ ସେ ନିଶ୍ଚୟ କଟକର ରାମକୃଷ୍ଣ ଆଶ୍ରମକୁ ଜାନୁୟାରୀ ପହିଲାରେ ଯାଉଥିଲେ । ପ୍ରତିବର୍ଷ

ଆଶ୍ରମ ତରଫରୁ ପ୍ରକାଶ ପାଉଥିବା ଭଜନ ପୁସ୍ତିକାରେ ତାଙ୍କର ରାମକୃଷ୍ଣଙ୍କ କଳ୍ପତରୁ ଉତ୍ସବ ଉପଲକ୍ଷେ ସ୍ୱତନ୍ତ୍ର ଭାବେ ଲିଖିତ ଭଜନଟିଏ ଅବଶ୍ୟ ସ୍ଥାନିତ ହେଉଥିଲା । କୃଷ୍ଣଚନ୍ଦ୍ର ସେନଗୁପ୍ତ ପୂର୍ବରୁ ଭଜନ ରଚନା କରୁଥିଲେ ଓ ବୟସାଧିକ୍ୟ ଯୋଗୁଁ ସେ ବଂଶୀବାବୁଙ୍କୁ ସେହି ମହତ କର୍ମ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ବୋଲି ସେ କହନ୍ତି । ସେହି ଭଜନରୁ କେତୋଟି ସାନଝିଅ ମିତୁର ସ୍ମୃତିରୁ ଏଠାରେ ଉଲ୍ଲେଖ କରାଗଲା ।

ବହେ ସଦା ଦୟା ସମୀର ପାରି କରିବାକୁ ଭବ ସାଗର
ସରାଗେ ଶରଧା ପାଲ ଟାଣିଦେଇ
ମନ ମଙ୍ଗ ଧରି ରହତୁ ସ୍ଥିର

x x x

ମନ କରି ପାରିଲେ ସରୁ
ଭଜିଲେ ପାଇବୁ କଳପତରୁ

x x x

ବିବେକାନନ୍ଦର ଗାଥା ବିବେକ ସ୍ୱରଣି କଥା
ବିନାଶ କରେ ଜଡ଼ତା ହୃଦରେ ଧର
କୁଳିଶୁଁ କଠୋରତର ସୁମନସୁଁ ସୁକୋମଳ
ସାଧନା ସେବା ଯାହାର ମୂଳ ମନ୍ତର
ବିନାଶି ବିଶ୍ୱର ବିଶ୍ୱକ୍ତି
ସନ୍ତୁ ଜନର ସମାଜେ ସ୍ଥାପିବ ଶାନ୍ତି

x x x

ବୃନ୍ଦାବନେ ବଂଶୀସ୍ୱନ ଶଙ୍ଖ ପାଞ୍ଚଜନ୍ୟ
ବାଜିଥିଲା କୁରୁକ୍ଷେତ୍ରେ ଧରି ଏହି ତାନ
ପୁଣି ଏ ଶୁଭ ବେଳରେ
ଶୁଭୁଛି ଅଭୟବାଣୀ ଶ୍ରୀ ଦକ୍ଷିଣେଶ୍ୱରେ

x x x

ଉଠ ଉଠ ବିଶ୍ୱବାସୀ
ଅବିଦ୍ୟା ମହାପଶୁକୁ ଜ୍ଞାନାଶିରେ ନାଶି

ଅମୃତ ସନ୍ତାନ ତୁମ୍ଭେ କାହିଁ ପାଇଁ ଭୀତ
ମୃତ୍ୟୁକୁ ଜୟ କରିବା ତୁମ୍ଭ କରାୟତ୍ତ
ସତ୍ୟ ଆଲୋକ ପ୍ରଭାରେ
ଅସତ୍ୟର ମୋହ ମାୟା ପଳାଇବ ଦୂରେ

ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠରେ ଏକ 'ଜନସେବା ସମାଜ' ଗଠିତ ହୋଇଥିଲା । 'ଜନସେବା ସମାଜ'ର ଛାତ୍ରମାନେ ଦୋଳଯାତ୍ରାରେ ଭିଡ଼ ଭିତରେ ସାହାଯ୍ୟ ଚାହୁଁଥିବା ଲୋକମାନଙ୍କୁ ଯଥାଶକ୍ତି ସାହାଯ୍ୟ କରୁଥିଲେ । ସେହି ପିଲାମାନେ ଏକାଠି ଗାଇବା ପାଇଁ ବଂଶୀବାବୁ ଲେଖିଥିଲେ—

ଭୋକୀ ଶୋଷୀ ରୋଗୀ ରୂପେ ସମ୍ମୁଖେ ଈଶ୍ୱର
ହାତଯୋଡ଼ି ଖୋଜୁ ଯାକୁ ମନ୍ଦିର ଭିତର

x x x

ଶିବଜ୍ଞାନେ ଜୀବ ସେବା ଯେଉଁ ବ୍ୟକ୍ତି କରେ
ଅବ୍‌ଜ ସମ ଶୁଭ୍ର ହୁଏ ପଙ୍କିଳ ଭବରେ

ସ୍କୁଲର ବାର୍ଷିକ ଉତ୍ସବରେ ନିମନ୍ତ୍ରିତ ଅତିଥିଙ୍କ ଉଦ୍ଦେଶ୍ୟରେ ସ୍ୱାଗତ ସଂଗୀତ ଲେଖିଥିଲେ—

ପଲ୍ଲୀ ଶ୍ୟାମଳ କୋଳରେ ଏହି ବାଣୀ ମନ୍ଦିର
ସ୍ୱାଗତ କରୁଛି ବୁଧେ ଖୋଲି ନିଜ ଅନ୍ତର

x x x

ପ୍ରବଳ ଝଂଜା ବହଇ ମହାଦ୍ରୁମେ ଉପାଡ଼ଇ
ପଥପ୍ରାନ୍ତ ଦୁର୍ବା କିନ୍ତୁ ରହିଥାଏ ଅଟଳ ।

ବଂଶୀବାବୁ ଯେ କେବଳ ନୂଆବର୍ଷରେ ଶ୍ରୀ ରାମକୃଷ୍ଣ ପରମହଂସଙ୍କ କଳ୍ପତରୁ ଉତ୍ସବ ପାଇଁ ସଂଗୀତ ରଚନା କରୁଥିଲେ ତାହା ନୁହେଁ, ସେ ଗାଁ ସ୍କୁଲରେ କୌଣସି ଉତ୍ସବ ହେଲେ, ଗ୍ରାମର ପାଠାଗାର ବା ଯୁବକ ସଂଘର ଉତ୍ସବ ହେଲେ ମଧ୍ୟ ସଂଗୀତ ରଚନା କରୁଥିଲେ । ସବୁଠାରୁ ବାହାଘର ଗୀତ ଲେଖିବାକୁ ସେ ଭଲ ପାଉଥିଲେ । କାହାରିଠାରୁ ଅନୁରୋଧ ପାଇ ଯେ ସେ ଏସବୁ ଲେଖୁଥିଲେ, ଏମିତି ନୁହେଁ । ନିଜ ଆଗ୍ରହରେ ଲେଖି, ସେ ଗୀତରୁ ଶହ ଶହ ଲିଥୋ କରାଇ ବାଣ୍ଟୁଥିଲେ । ଲିଥୋ କିଏ

କରାଇଦେବ ସେଥିପାଇଁ ଅନେକଙ୍କୁ ଅନୁରୋଧ ମଧ୍ୟ କରୁଥିଲେ । ବେଳେ ବେଳେ ତାଙ୍କର ଏହି ଆଗ୍ରହ ଅନ୍ୟମାନଙ୍କ ଦ୍ୱାରା ଗୃହୀତ ହେଉ ନଥିଲା । କେତୋଟି ଗୀତର ପଙ୍‌କ୍ତି ସାନଝିଅ ମିତୁର ସ୍ମୃତିରୁ ଏଠାରେ ଉଲ୍ଲେଖ କରାଗଲା । ବଡ଼ଭାଇ ସୋମନାଥ ମିଶ୍ରଙ୍କ ବଡ଼ପୁଅ ଅଚ୍ୟୁତାନନ୍ଦ ସୁକଲ୍ୟାଣୀ ନାମ୍ନୀ କନ୍ୟାକୁ ବିବାହ କରିଥିଲେ । ବଂଶୀଧର ଗୀତର ପ୍ରତି ଧାଡ଼ିରେ ଦ୍ୱିତୀୟ ଅକ୍ଷର ଅ, ସୁ, ଚ୍ୟୁ, କ, ତା, ଲ୍ୟା, ନ, ଣୀ, ନ୍ଦ ଏହି କ୍ରମରେ ରଖି ନଅ ପଦ ବିଶିଷ୍ଟ ଗୀତ ଲେଖିଥିଲେ ।

ଆସୁ ସୁକଲ୍ୟାଣୀ କଲ୍ୟାଣ ପସରା ଧରି ତା କୋମଳ କରେ
ହସୁ ଆମ ଘର ଉପବନ ସମ ବସନ୍ତର ଆଗମରେ
ଅଚ୍ୟୁତାନନ୍ଦକୁ ସ୍ନେହଡୋରେ ବାନ୍ଧି ହେଉ ତାର ଗଳାହାର
ଖଚ୍ୟୁତ ରୋହିଣୀ ପରାୟେ ଧରିବ ଆନନ୍ଦେ ହିମାଂଶୁ କର ।

ସେହିପରି ସାନଭାଇ ପ୍ରିୟନାଥ ମିଶ୍ରଙ୍କ କନ୍ୟା ଗୀତା ସ୍ୱାମୀଙ୍କ ନାମ କସ୍ତୁରୀ ଚରଣ । ତେଣୁ ବଂଶୀବାବୁ ଲେଖିଥିଲେ ପ୍ରତି ଧାଡ଼ି ପ୍ରଥମ ଅକ୍ଷରରେ ଯତି ପକାଇ—

କଂସାରୀ ଚରଣ ପୂତରେଣୁ ପଡୁ ନବଦମ୍ପତିଙ୍କ ଶିରେ
କଂଠହାର ହୁଅ ଦୁହେଁ ଦୁହିଁଙ୍କର ସମ୍ପଦରେ ବିପଦରେ
ଗୀର୍ବାଣ ମଉଳି ମୁକୁଟ ପ୍ରଭାରେ ଉଦ୍ଭାସିତ ଯାର ପଦ
ଗୀତା କସ୍ତୁରୀଙ୍କ ସଂସାର ପଥରୁ ଘୁଞ୍ଚାନ୍ତୁ ସବୁ ଆପଦ ।

ଏହି ଗୀତଗୁଡ଼ିକର ସାହିତ୍ୟିକ ମର୍ଯ୍ୟାଦା କେତେ ବେଶି ତାହା ଏହି କେତେ ପଦରୁ ଅନୁମାନ କରିହୁଏ ।

**ମହାଦେବ ମନ୍ଦିର ସହିତ ସମ୍ପୃକ୍ତି :**

ଗ୍ରାମର କେନ୍ଦ୍ରାପଡ଼ା କେନାଲ କୂଳରେ ରାମେଶ୍ୱର ମହାଦେବଙ୍କ ମନ୍ଦିର । ଗାଁରେ କାହାର ପୁଅଝିଅ ବାହାବ୍ରତ ହେଲେ ରାମେଶ୍ୱର ଓ ରାମେଶ୍ୱରୀ ଦେବୀଙ୍କ ନିକଟରେ ଦିଅଁମଙ୍ଗୁଳା ହୁଏ । ଏତଦ୍‌ବ୍ୟତୀତ ସନ୍ଧ୍ୟାରେ ମହାଦେବଙ୍କ ପାଖରେ ବିଶେଷ କେହି ବସାଉଠା କରନ୍ତି ନାହିଁ । କେବଳ ଜାଗର ବେଳେ ମନ୍ଦିର ଗହଳ ହୁଏ । ବଂଶୀଧର ବିଦେଶରୁ ଫେରିବା ପରେ ପ୍ରତିଦିନ ସନ୍ଧ୍ୟାରେ ବାଡ଼ିଟିଏ ଧରି କେନାଲ ବନ୍ଧକୁ ଯାଆନ୍ତି ଓ ମନ୍ଦିର ଚଉତରାରେ ଘଡ଼ିଏ ବସନ୍ତି । ତାଙ୍କଦ୍ୱାରା ଅନୁପ୍ରାଣିତ ହୋଇ ଗୋପୀନାଥ ଦାଶ, ଉମାକାନ୍ତ ମିଶ୍ର, ଧଡ଼ି ଦାଶ ଇତ୍ୟାଦି ସନ୍ଧ୍ୟାରେ ମନ୍ଦିର ପ୍ରାଙ୍ଗଣରେ ବସିବା ସହ ଭାଗବତ ପାଠ ମଧ୍ୟ ଆରମ୍ଭ ହୋଇଥିଲା ଓ ଜଗନ୍ନାଥ ବିଦ୍ୟାପୀଠର ବହୁତ ଦିନ ପ୍ରଧାନ

ଶିକ୍ଷକ ଥିବା ନଟବର ମହାନ୍ତି ପ୍ରଭୃତି ଦ୍ୱିପ୍ରହର ବେଳା ବା ଛୁଟି ସମୟରେ ସେଠାରେ ଆସି ବସନ୍ତି । ଆସ୍ତେ ଆସ୍ତେ ସେଠାରେ ପଶା ଖେଳର ଆସର ଜମେ । ସପ୍ତା ବସେ । ପୁରାତନ ଛାତ୍ର ପର୍ଶୁରାମ ଦ୍ୱିବେଦୀ ନିଜର ସ୍ମୃତି ଚାରଣ କରି କହନ୍ତି—ସପ୍ତା ବେଳେ ବଂଶୀବାବୁ ପ୍ରାୟ ମନ୍ଦିର ବାରଣ୍ଡାରେ ବସି ରହନ୍ତି । ତାଙ୍କର ଉପସ୍ଥିତି ହିଁ ଅନ୍ୟମାନଙ୍କ ପାଇଁ ଆଗ୍ରହର କାରଣ ହୁଏ । କେବେ କେମିତି ମନ୍ଦିର ସାମନାରେ ପାଲା, ଦାସକାଠିଆ ହୁଏ । ପ୍ରତିବର୍ଷ ଖରା ଛୁଟିରେ ୩/୪ ଦିନ ଥିଏଟର ମଧ୍ୟ ହୁଏ । ଖଣ୍ଡସାହୀର ଉଚ୍ଚଶିକ୍ଷିତ ଯୁବକମାନେ ଛୁଟିରେ ଗାଁକୁ ଆସି ଖଟ ସଜାଇ ଆଗ୍ରହରେ ପେଣ୍ଡାଲ ତିଆରି କରି ଡ୍ରାମା କରନ୍ତି । ଖଣ୍ଡସାହୀର ଏହା ଏକ ପୁରୁଣା ପରମ୍ପରା । ବଂଶୀଧର ସେମାନଙ୍କୁ ବେଶ୍ ଉତ୍ସାହିତ କରନ୍ତି । ଗ୍ରାମର କୌଣସି ସଭାସମିତି ହେଲେ ସେହି ମନ୍ଦିର ନିକଟରେ ହିଁ ଷ୍ଟେଜ୍ ତିଆରି ହେଉଥିଲା । ଅଧିକାଂଶ ସଭାରେ ସଭାପତି ବା ବକ୍ତା ଭାବରେ ବଂଶୀଧର ହିଁ ନିମନ୍ତ୍ରିତ ହେଉଥିଲେ । ସେ କିନ୍ତୁ ଏତେ ବେଶି ସମୟ ଭାଷଣ ଦେଉଥିଲେ ଯେ ଶ୍ରୋତାମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟୁଥିଲା । ପ୍ରାୟ ସବୁ ସଭା ପାଇଁ ସ୍ୱତନ୍ତ୍ର ଭାବରେ ପ୍ରାରମ୍ଭିକ ସଂଗୀତ ସେ ହିଁ ଲେଖୁଥିଲେ ।

**ପୁନଶ୍ଚ ଆତ୍ମନିର୍ବାସନ :**

ପ୍ରାୟ ୧୯୫୮ ବେଳକୁ ବଂଶୀଧର ଗାଁ ସ୍କୁଲକୁ ବେଶ୍ ଆଗେଇ ନେଇ ଥାଆନ୍ତି । ସ୍କୁଲର ପରିଚାଳନା ସମିତି ସହିତ ତାଙ୍କର କ'ଣ ଟିକିଏ ମତଭେଦ ହୋଇଥାଏ ବୋଧହୁଏ । ତେଣୁ ସେ ଜିଦ୍‌ରେ ଗାଁ ଛାଡ଼ି କଟକ ଚାଲିଆସିଲେ । କାହାରି ଅନୁରୋଧ ତାଙ୍କୁ ଅଟକାଇ ପାରି ନଥିଲା । ଏକମାତ୍ର ଉପାର୍ଜନର ଉପାୟ ଥିଲା ଘରୋଇ ଟିଉସନ । ସେଠି ମଧ୍ୟ ନିଜର ଦକ୍ଷତା ବଳରେ ସେ ଅନେକ ଅଳ୍ପବୟସ୍କ ଯୁବକମାନଙ୍କୁ ପ୍ରଭାବିତ କରିପାରିଥିଲେ ।

୧୯୫୯ରେ କଟକର ଦରଘାବଜାରରେ ଥିବା ଶ୍ରୀଧର ଦାସଙ୍କର ଗୃହ 'ବେତାର ଭବନ'ର ଜାଫ୍ରିଦିଆ ଛୋଟ ବଖରାଟିରେ ବଂଶୀଧର ଖୁବ୍ ଦୟନୀୟ ଭାବରେ ଚଳୁଥିଲେ । ଷ୍ଟୋଭ, ଡେକ୍‌ଚି ବାସନ କେତେଖଣ୍ଡ ସପ ତକିଆ ସାଙ୍ଗକୁ ମାର୍କସଙ୍କର ଦାସ କ୍ୟାପିଟାଲ ଗ୍ରନ୍ଥ ଥିଲା ସେ ଘରର ସମ୍ପତ୍ତି ବୋଲି ସାମ୍ବାଦିକ ରାମହରି ବାବୁ କହନ୍ତି । କିନ୍ତୁ ସେ ନିଜ ଭଡ଼ା ଘରର ନାମକରଣ କରିଥିଲେ 'ନିର୍ଭୟ କନ୍ଦର' । ମନମୋହନ ମିଶ୍ରଙ୍କଠାରୁ ବଂଶୀଧରଙ୍କ ଠିକଣା ବୁଝି ଯେଉଁଦିନ ଯୁବକ ରାମହରି ପ୍ରଥମେ ବଂଶୀବାବୁଙ୍କୁ ଦେଖା କରିବାକୁ ଆସିଥିଲେ, ବଂଶୀବାବୁ ତାଙ୍କୁ ପ୍ରଥମ ଦେଖାରେ କହିଥିଲେ, "ପୂର୍ବରୁ ସୂଚନା ନ ଦେଇ ଆସିଥିବା ମଣିଷ ପାଇଁ ଏ ଦ୍ୱାର ଖୋଲା

ନାହିଁ ।” ସେଦିନ ରାମହରି ବାବୁ ଫେରି ଆସିଲେ ମାତ୍ର କୌତୂହଳବଶତଃ ପୁଣି ଚାରି ପାଞ୍ଚ ଦିନ ପରେ ‘ନିର୍ଭୟ କନ୍ଦର’ ଘରକୁ ଗଲେ । ସେତେବେଳକୁ ସେ ‘ଉତ୍କଳିକା’ ବୋଲି ଗୋଟିଏ ଛୋଟ ଖବରକାଗଜ ବାହାର କରିଥାଆନ୍ତି । ସେଥିପାଇଁ ବଂଶୀବାବୁଙ୍କ ସାକ୍ଷାତକାରଟିଏ ଆଣିବାକୁ ସେ ଚାହିଁଥିଲେ । ମାତ୍ର ବଂଶୀଧର ସାକ୍ଷାତକାରରେ ତାଙ୍କ ଚିନ୍ତାର ପ୍ରତିଫଳନ ହେବ ନାହିଁ ବୋଲି ସନ୍ଦେହ ପ୍ରକାଶ କରିଥିଲେ ଓ ନିଜେ ଉତ୍କଳିକା ପାଇଁ ଧାରାବାହିକ ଭାବରେ ଲେଖିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ, ଯାହା ଉତ୍କଳିକାର ପ୍ରଥମ ସଂଖ୍ୟାରେ ସୂଚିତ ହୋଇଥିଲା; ମାତ୍ର ସେ ଆଉ ଉତ୍କଳୀକାକୁ ଲେଖା ଦେଇ ନଥିଲେ । ନିଜକୁ ଯଥାସମ୍ଭବ ଅସଂପୃକ୍ତ ରଖିବାକୁ ଚାହିଁଥିବା ଏହି ବ୍ୟକ୍ତି କିନ୍ତୁ କଥାଛଳରେ ଅନେକ କଥା ରାମହରି ବାବୁଙ୍କୁ କହିଥିଲେ, ଯାହା ଥିଲା ଏହିପରି ।

୧୮୪୮ରେ ‘Communist manifesto’ ବାହାରିଥିଲା । ୧୮୪୮-୪୯ରେ ଇଂଲଣ୍ଡରୁ New Rheinische Zeitung ଓ ୧୮୪୦ରେ North Star ଖବରକାଗଜମାନ ବାହାରିଥିଲା । ସେଥିରେ ମାର୍କସ ଓ ଏଙ୍ଗେଲସଙ୍କର ରଚନାମାନ ଧାରାବାହିକ ଭାବରେ ବାହାରୁଥିଲା । ବ୍ରିଟିଶ୍ ମ୍ୟୁଜିୟମରେ ଏହି ପତ୍ରିକାମାନ ଗଚ୍ଛିତ ଥିଲା, ଯାହା ବଂଶୀଧର ବାରମ୍ବାର ପାଠ କରି, ତାହାଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ସେ ଲଣ୍ଡନରେ National Union of Journalists ସହିତ ସମ୍ପୃକ୍ତ ଥିଲେ । ତାଙ୍କର ବିଚାର ଥିଲା, “ଯେ କୌଣସି ଶ୍ରମିକ କୌଣସି କାର୍ଯ୍ୟକୁ ଯଦି ଗୋଷ୍ଠୀ ବିରୋଧୀ ବୋଲି ଭାବେ, ସେ ତା’ର ଶ୍ରମକୁ ସେହି କାର୍ଯ୍ୟ ପାଇଁ ପ୍ରତ୍ୟାହାର କରିବା ଉଚିତ । “He should withdraw his labour from such work” ‘ଗାନ୍ଧିଜୀ ଯଦି ବଞ୍ଚିଥାଆନ୍ତେ, ତେବେ କଂଗ୍ରେସ ଜେଲରେ ରହିଥାଆନ୍ତେ’ ବୋଲି ସେ କହୁଥିଲେ । ୧୯୫୯ ବେଳକୁ ମହାରାଷ୍ଟ୍ର ଓ ଗୁଜୁରାଟ ଅଲଗା ହେବାର ଅୟୋଜନ ଆରମ୍ଭ ହୋଇଥାଏ । ତେଣୁ ବଂଶୀବାବୁ ବ୍ୟସ୍ତ ହୋଇ କହନ୍ତି, “ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଏକାଠି ହୋଇ ପୂର୍ଣ୍ଣାଙ୍ଗ ଓଡ଼ିଶା କ’ଣ ଗଠିତ ହୋଇପାରନ୍ତା ନାହିଁ । ଆମ ନେତୃତ୍ୱ ବଡ଼ ଦୁର୍ବଳ, ଏମାନଙ୍କର will power ନାହିଁ ।

ବଂଶୀବାବୁ ବିଦେଶରୁ ଫେରିବା ପରେ ପ୍ରାୟ ସତୁରୀ ଦଶକରେ ଇଂଜିନିୟର ବୁଦ୍ଧନାଥ ଓତା ନାମକ ଭଦ୍ରବ୍ୟକ୍ତି (ରାମହରି ବାବୁଙ୍କ ଭିଣୋଇ ହିସାବ) ଲଣ୍ଡନ ଯାଇଥିଲେ । ସେ ପ୍ରଥମେ London Corporationର Electrical Engineer ଥିଲେ ଓ ପରେ ଇଲେକଟ୍ରିକାଲ ଶ୍ରମିକ ସଂଗଠନର ନେତା ହୋଇଥିଲେ । ସେଠାରେ ସେ ବଂଶୀଧର ମିଶ୍ରଙ୍କ ନାମ ଓ ପ୍ରଭାବ ସମ୍ପର୍କରେ ବହୁକଥା ଶୁଣିଥିଲେ ।

୧୯୫୮ରେ ପ୍ରଫେସର N.G. Ranga (ତତ୍କାଳୀନ ଲୋକସଭାରେ ସ୍ୱତନ୍ତ୍ର ଦଳର ସାଧାରଣ ସଂପାଦକ, ଲୋକସଭାର ସ୍ୱତନ୍ତ୍ର ଦଳର ବିଶିଷ୍ଟ ନେତା ଓ ବିରୋଧି ଦଳର ନେତା) କଟକ ଆସିଥାଆନ୍ତି । ପଣ୍ଡିତ ପ୍ରବୋଧ କୁମାର ମିଶ୍ର ସେ ସମୟରେ ଜୋବ୍ରାରେ ତାଙ୍କ ମାମୁ ଉପେନ୍ଦ୍ର ମିଶ୍ରଙ୍କ ଘରେ ଥାଆନ୍ତି ଓ ସଂସ୍କୃତ ପଢ଼ାଉଥାଆନ୍ତି । ସେ ଓ ତାଙ୍କ ବନ୍ଧୁ ବୈଷ୍ଣବ ଷଡ଼ଙ୍ଗୀ (S.C.B. Medical Collegeର telephone operator) ମିଶି ବଂଶୀବାବୁଙ୍କୁ ସାଙ୍ଗରେ ଧରି ଚାଲି ଚାଲି ଟାଉନହଲ୍‌କୁ ଗଲେ । ସେଦିନ ପ୍ରଫେସର ରଙ୍ଗାଙ୍କର ଟାଉନହଲ୍‌ରେ ଭାଷଣ ଦେବାର କାର୍ଯ୍ୟକ୍ରମ ଥାଏ । ବହୁତ ଗହଳି ହୋଇଥାଏ । ବଂଶୀବାବୁ ବାଟସାରା ପ୍ରଫେସର ରଙ୍ଗା ଓ ଭି.କେ. କୃଷ୍ଣମେନନ୍‌ଙ୍କ ସହିତ ତାଙ୍କର ସମ୍ପର୍କ ଇତ୍ୟାଦି କଥା କହି କହି ଯାଉଥାଆନ୍ତି । ବଂଶୀବାବୁ ଯାଇ ପଛ ସିଟ୍‌ରେ ବସିଲେ । ପ୍ରବୋଧ ବାବୁଙ୍କ ଭାଷାରେ "ଆମେ ଆଗ୍ରହ କରିଥାଉ ସାର୍ ଯାଇ ଆଗ ସିଟ୍‌ରେ ବସନ୍ତେନି; କିନ୍ତୁ ସେ ଯାହା ବୁଝିଥିବେ ସେଥିରୁ ତାଙ୍କୁ ଟଳାଇ ପାରିବ କିଏ ?" ପ୍ରଫେସର ରଙ୍ଗା ଉଠି ଭାଷଣ ଦେଲେ । ତାଙ୍କ ଭାଷଣରେ କେଉଁ ତଥ୍ୟ ଥିଲା କେଜାଣି ତାହା ବଂଶୀଧରଙ୍କୁ ଉତ୍ତେଜିତ କଲା । ସେ ନିଜ ସିଟ୍‌ରୁ ଉଠିପଡ଼ି କହିଲେ, "Prof. Ranga, I am Surat Alley, I am here." ସଭାସ୍ଥଳ ସ୍ତବ୍ଧ ହୋଇଗଲା । ସେ ସଭାରେ ନବକୃଷ୍ଣ ଚୌଧୁରୀ ଓ ମନମୋହନ ମିଶ୍ର ଥିଲେ । ମନମୋହନ ବାବୁ ତଳକୁ ଓହ୍ଲାଇ ଆସି ବଂଶୀବାବୁଙ୍କ ହାତ ଧରି ମଞ୍ଚ ଉପରକୁ ନେଇଗଲେ । ତାଙ୍କ ପାଇଁ ଦର୍ଶକମଣ୍ଡଳୀ ଭିତରୁ ଗୋଟିଏ ଚୌକି ମଞ୍ଚକୁ ନିଆଗଲା । ମାତ୍ର ସେ ସଭାରେ ଚୁପ୍ ହୋଇ ବସିଲେ । ତୁଣ୍ଡ ଖୋଲିଲେ ନାହିଁ । ସେ ସଭାରେ ବାରିଷ୍ଟର ମଧୁ ମହାନ୍ତି, ଶରତ ପଟ୍ଟନାୟକ ଓ ଗିରିଜା ଭୂଷଣ ପଟ୍ଟନାୟକ ମଧ୍ୟ ଏହି ଦୃଶ୍ୟ କଥା କହି ଭାବପ୍ରବଣ ହୋଇପଡ଼ନ୍ତି ।

ଦରଘାବଜାରରେ ଥିବା ସମୟରେ ସେ କବି ବିଦ୍ୟୁତ୍‌ପ୍ରଭାଙ୍କର କେତେଦିନ ଗୃହଶିକ୍ଷକ ମଧ୍ୟ ଥିଲେ । ନିମାଇଁ ଚରଣ ଦାସ (ବିଦ୍ୟୁତ୍‌ପ୍ରଭାଙ୍କ ବାପା)ଙ୍କ ସହିତ ତାଙ୍କର ଉତ୍ତମ ସମ୍ପର୍କ ଥିଲା ଓ ବଂଶୀବାବୁ କଟକ ଛାଡ଼ିବା ପରେ ମଧ୍ୟ ବାରମ୍ବାର ନିଜ ବହିପତ୍ର ଧରି ଖଣ୍ଡସାହୀ ଆସୁଥିଲେ । କଟକରେ ସେତେବେଳେ ଭଞ୍ଜଜୟନ୍ତୀ ଏକ ବିଶିଷ୍ଟ ସାଂସ୍କୃତିକ ଅନୁଷ୍ଠାନର ମାନ୍ୟତା ପାଇଥାଏ । ବଂଶୀବାବୁ କେତେଥର ଭଞ୍ଜଜୟନ୍ତୀ ସଭାରେ ଭାଷଣ ମଧ୍ୟ ଦେଇଛନ୍ତି । କିନ୍ତୁ ନିଜକୁ ଯଥାସମ୍ଭବ ସେ ଅନ୍ୟଠାରୁ ଦୂରେଇ ରଖୁଥିଲେ । ସତେ ଯେପରି ସେ ଓଡ଼ିଶାର ପରିବେଶରେ ଶ୍ୱାସରୁଦ୍ଧ ହୋଇପଡୁଥିଲେ । ପ୍ରାୟ ଦେଢ଼ବର୍ଷ ଦରଘାବଜାରର 'ନିର୍ଭୟ କନ୍ଦର'ରେ ସେ ରହିଥିଲେ । ପରିଣତ ବୟସରେ ହାତରେ ରାନ୍ଧି ଖାଇ ତାଙ୍କର ଶରୀର ଅସୁସ୍ଥ ହୋଇପଡ଼ିଲା । ଥରେ ସେ ଗାଁକୁ

ଆସିଥାଆନ୍ତି । ଗାଧୋଇ ସାରି ଫେରିବା ବେଳେ ଡାକ୍ତର ଅଭିରାମ ଦ୍ୱିବେଦୀ (ସୁରେନ୍ଦ୍ର ଦ୍ୱିବେଦୀଙ୍କ ବଡ଼ଭାଇ) ଦେଖାହେଲେ । କହିଲେ, "ଆପଣଙ୍କ ଦେହ ଖୁବ୍ ଅସୁସ୍ଥ, ଆପଣ ଆଉ କଟକ ଯାଆନ୍ତୁନି, ବିଶ୍ରାମ ନିଅନ୍ତୁ ।" ବାସ୍ ବଂଶୀବାବୁ କେନାଲ କୂଳରୁ ଫେରିଲେ ଆଉ ଶୋଇପଡ଼ିଲେ ଯେ ଉଠିପାରିଲେ ନାହିଁ । ରକ୍ତହୀନତା ଓ ପୁଷ୍ଟିହୀନତା ଭଳି ରୋଗରେ ସେ ଢେର୍‌ଦିନ ଭୋଗିଲେ । ସ୍କୁଲ ସହିତ ହୋଇଥିବା ମତପାର୍ଥକ୍ୟ ସେତେବେଳକୁ 'କିଛି ମେଣ୍ଟିଯାଇଥାଏ । ସ୍କୁଲର ଉଦ୍ୟୋକ୍ତାମାନଙ୍କର ତଥା ନିଜର ଆଗ୍ରହରେ ସେ ପୁଣି ସ୍କୁଲକୁ ଚାଲିଲେ । 'ନିର୍ଭୟ କନ୍ଦର'ର ଜିନିଷପତ୍ର ବହୁଦିନ ପରେ ଘରକୁ ଆସିଲା ।

କଟକରେ ଥିବା ସମୟରେ ତାଙ୍କ ନିକଟକୁ କେହି ଆସନ୍ତୁ ବୋଲି ସେ ଚାହୁଁ ନଥିଲେ । ତେବେ ପ୍ର. ଶ୍ରୀଶଚନ୍ଦ୍ର ପଟ୍ଟନାୟକ, ଗୋବିନ୍ଦ ମହାନ୍ତି, ରାମହରି ମିଶ୍ର, ପ୍ରବୋଧ କୁମାର ମିଶ୍ର, ବୈଷ୍ଣବ ଷଡ଼ଙ୍ଗୀଙ୍କ ଭଳି କେତେକ ଆଗ୍ରହୀ ବ୍ୟକ୍ତି ତାଙ୍କ ନିକଟକୁ ଯାଉଥିଲେ । ବସିବା ପାଇଁ ସ୍ଥାନ ନଥିବା ସେହି ଜାଫ୍ରିଦିଆ ଘରେ ବିଲାତ ଫେରନ୍ତା ଭଦ୍ରବ୍ୟକ୍ତିଙ୍କୁ ଦେଖି ତାଙ୍କ ଚିନ୍ତା ଚେତନା ସହିତ ପରିଚିତ ହୋଇଥିଲେ ।

**ଦୁଃଖଦ ଅନୁଭୂତି—ଆର୍ତ୍ତତ୍ରାଣଙ୍କ ମୃତ୍ୟୁ :**

୧୯୬୫ ଜୁନ୍ ମାସରେ ବଡ଼ ଜୋଇଁ ଆର୍ତ୍ତତ୍ରାଣଙ୍କର ମୃତ୍ୟୁ ହୁଏ । ପ୍ରାୟ ଦୁଇବର୍ଷ ଆଗରୁ ସେ ପୀଡ଼ିତ ଥିଲେ । ଡାଇବେଟିସ୍, ବ୍ଲଡ୍‌ପ୍ରେସର କେତେ କ'ଣ ବେମାର । ଚିକିତ୍ସା ମଧ୍ୟ ଚାଲିଥିଲା । କଟକ ବଡ଼ଡାକ୍ତରଖାନାରେ ସେ ଦୀର୍ଘଦିନ ରହି ଚିକିତ୍ସିତ ହୋଇଥିଲେ । ବଂଶୀବାବୁ ବେଳେ ବେଳେ ଦେଖିବାକୁ ଯାଉଥିଲେ ତାଙ୍କୁ । ଯେଉଁଦିନ ମିତୁ ଅଷ୍ଟମରୁ ନବମ ଶ୍ରେଣୀକୁ ପ୍ରମୋଶନ ପାଇଲା, ସେହିଦିନ ଭୋରୁ ସମ୍ବାଦ ପହଞ୍ଚିଲା ଯେ ଆର୍ତ୍ତବାବୁ ଚାଲିଗଲେ । ଘରେ କାନ୍ଦବୋବାଳି ପଡ଼ିଲା । ବଲ୍ଲୀକୁ ଗାଁ ଲୋକମାନେ ଖୁବ୍ ଶ୍ରଦ୍ଧା କରୁଥିଲେ । ତେଣୁ ତା'ର ବୈଧବ୍ୟରେ ସମବେଦନା ଜଣାଇବାକୁ ଗଙ୍ଗାଧର କୁଟୀରରେ ଖୁବ୍ ଗହଳି ହେଲା । ବଂଶୀବାବୁ କିନ୍ତୁ ନିର୍ବିକାର ଭାବରେ ଘରୁ ସ୍କୁଲ ଗଲେ । ରେଜଲଟ୍ ବାହାର କରାଇବାର ବନ୍ଦୋବସ୍ତ କରିସାରି, ଜିନିଷପତ୍ର କ'ଣ ସବୁ ଧରି ଗୋଟିଏ ଲୋକ ସାଙ୍ଗରେ ଜଟଣୀ ଗଲେ । ବଲ୍ଲୀବୋଉ କନ୍ୟାର ଏତାଦୃଶ ଦାରୁଣ ବିପତ୍ତିରେ ବାୟାଣୀ ଭଳି ହେଉଥାଆନ୍ତି । ଏଗାର ବର୍ଷର ଝିଅ ମିତୁ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଥାଏ । ଏ ସମୟରେ କିଏ ଅବା ଏହି ପରିବାରକୁ ସାନ୍ତ୍ୱନା ଦେଇପାରିବ । ବଂଶୀବାବୁ ଜଟଣୀରୁ ଫେରି ପତ୍ନୀଙ୍କୁ ଆଶ୍ୱାସନା ଦେବା ଦୂରର କଥା, ତାଙ୍କୁ ଜଟଣୀ ତଥା ଶ୍ରଦ୍ଧେୟା କନ୍ୟା ବଲ୍ଲୀ ବିଷୟରେ କିଛି ହେଲେ କହିନଥିଲେ । ଦୀର୍ଘଦିନ ସେ

ନିରବ ହୋଇଯାଇଥିଲେ । ସନ୍ତାନହୀନା କନ୍ୟାର ବୈଧବ୍ୟ ହୁଏତ ସେ ମର୍ମେ ମର୍ମେ ଅନୁଭବ କରୁଥିଲେ ମାତ୍ର ପ୍ରକାଶ କରିବାକୁ କୌଶଳ ତାଙ୍କୁ ଜଣାନଥିଲା । ତେଣୁ ଦୁଃଖରେ ଭାଙ୍ଗିପଡ଼ିବା ତାଙ୍କ ଦ୍ୱାରା ହେଉନଥିଲା ।

ସେହି ବର୍ଷ ରଥଯାତ୍ରା ସମୟରେ ବଂଶୀବାବୁଙ୍କ ଘରେ ଚୋର ପଶିଲା । ବଲ୍ଲୀବୋଉଙ୍କ ବେକରେ ଥିବା ଧନିଆଁ ଫାଳ ହାର କାଟିନେବା ସମୟରେ ସେଥିରୁ ଖଣ୍ଡେ ବଲ୍ଲୀବୋଉଙ୍କ ବେକ ସନ୍ଧିରେ ରହିଯାଇଥିଲା । ସାକାଲୁ ସକାଳୁ ମିତୁ ସେ ଖଣ୍ଡକ ପାଇ ତା' ବୋଉକୁ କହିଲା । ଖୁବ୍ ଖୋଜା ହେଲା । ସମସ୍ତେ ଆହା କଲେ । ସେହି ହାରଟି ଶ୍ରୀମତୀ ଦେବୀ ଓରଫ ବଲ୍ଲୀବୋଉଙ୍କୁ ତାଙ୍କ ବାପା ବିବାହ ବେଳେ ଦେଇଥିଲେ । ସ୍ୱାମୀଙ୍କ ବାଟ ଚାହିଁ କିଶୋରୀରୁ ପ୍ରୌଢ଼ା ପାଲଟିଥିବା ବଲ୍ଲୀବୋଉଙ୍କ ପାଇଁ ସେହି ହାରଟି ହିଁ ଥିଲା ଶ୍ରେଷ୍ଠ ସମ୍ପଦ । ଜୀବନରେ ଆଉ ଗୋଟିଏ ହାର ଲଗାଇବା କଥା ସେ ଚିନ୍ତା ମଧ୍ୟ କରିନଥିଲେ । ସେ ହାରଟି ଚୋର ନେବା ପରେ ସ୍ୱାଭାବିକ ଭାବରେ ବଲ୍ଲୀବୋଉ କାନ୍ଦିଲେ; କିନ୍ତୁ ବଂଶୀବାବୁ ମିତୁକୁ କହିଲେ, "ବୋଉକୁ ବୁଝାଇ ଦେ । ଭଗବାନଙ୍କ ସୃଷ୍ଟିରେ କେଉଁଠି ହେଲେ ସେ ଜିନିଷ ଅଛି । ଆମଘରେ ଯେତେଦିନ ରହିବାର ଥିଲା ରହିଲା । ଏଥିରେ ବ୍ୟସ୍ତ ହେବା ଲୋଡ଼ା ନାହି ।" ଏହି ଦାର୍ଶନିକ ସୁଲଭ କଥା ବଲ୍ଲୀବୋଉଙ୍କ ଦୁଃଖ କେତେ ଉପଶମ କରାଇଥିଲା, ସେ କଥା ଆମେ ଜାଣି ନାହୁଁ; ମାତ୍ର ଦୀର୍ଘଦିନ ଏହା ଗ୍ରାମବାସୀଙ୍କ ତୁଣ୍ଡରୁ ତୁଣ୍ଡକୁ କଥିତ ହେଉଥିଲା । ଚୋରୀ ବିଷୟରେ କିନ୍ତୁ ବଂଶୀଧର ପୋଲିସ୍‌ରେ ରିପୋର୍ଟ କଲେ ନାହିଁ । କାରଣ ପୋଲିସ୍ ବାରମ୍ବାର ଆସିଲେ ତାଙ୍କୁ ଭଲ ଲାଗିବ ନାହିଁ । ତାଙ୍କ ଭାଷାରେ "ପୋଲିସ୍‌ର ଚା' ଜଳଖିଆ ଖର୍ଚ୍ଚ କରିବା ମୋ ପକ୍ଷରେ କଷ୍ଟକର ।" ଶେଷ ପର୍ଯ୍ୟନ୍ତ ହାର ମିଳିଲା ନାହିଁ । ପାଞ୍ଚବର୍ଷ ପରେ ତାଙ୍କ ବଡ଼ଝିଅ ତା' ବୋଉର ଖାଲିବେକ ପାଇଁ ଗୋଟିଏ ସୁନା ଚେନ୍ ଗଢ଼ାଇ ଦେଇଥିଲା । ସେ ସୁନା ଚେନ୍‌ର କଥା ପର ସମୟରେ ଆଲୋଚିତ ହେବ ।

**ପ୍ରାଚୀନ ଶାସ୍ତ୍ର ତଥା ଜ୍ୟୋତିଷ ସମ୍ପର୍କୀୟ ଧାରଣା :**

ବଂଶୀବାବୁ ଅଚ୍ୟୁତାନନ୍ଦଙ୍କ ମାଳିକା ସମ୍ପର୍କରେ ଥିଲେ ବେଶ୍ ଆଗ୍ରହୀ । ତେଣୁ ସେ ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠ ନିକଟରେ ଥିବା ଜାଗୁଳେଇ ଠାକୁରାଣୀଙ୍କ ପାଖରେ ରହୁଥିବା ବାସୁଦେବ ମହାନ୍ତିଙ୍କ ନିକଟକୁ ବରାବର ଯାଉଥିଲେ । ବାସୁଦେବ ମହାନ୍ତି ଥିଲେ କୁଷ୍ଠରୋଗାକ୍ରାନ୍ତ; ମାତ୍ର ସନ୍ନ୍ୟାସୀ ସୁଲଭ ଦିବ୍ୟ ଜୀବନ ବିତାଇ ସେ ଅନ୍ୟମାନଙ୍କ ମନରେ ନିଜପାଇଁ ବେଶ୍ ସମ୍ଭ୍ରମ ସୃଷ୍ଟି କରିପାରିଥିଲେ । ତାଙ୍କ ପାଖରେ ବଂଶୀବାବୁ ବସି ବହୁତ ପ୍ରାଚୀନ ସାହିତ୍ୟର ଆଲୋଚନା କରୁଥିଲେ । ମିତୁକୁ ମଧ୍ୟ ତାଗିଦ କରିଥିଲେ

ସ୍କୁଲରୁ ଫେରିବା ବାଟରେ ଯେମିତି ହେଲେ ବାସୁବାବୁଙ୍କ ଘରବାଟେ ପଶିଆସିବୁ ଓ ତାଙ୍କର କବିତା ସବୁ ଗୋଲ ଗୋଲ ଅକ୍ଷରରେ ଉତାରି ନେବୁ । ମିତୁ କେବେ କେମିତି ତାଙ୍କ ଘରକୁ ଯାଇ ଅଷ୍ଟଗୁଞ୍ଜରୀ, ନବଗୁଞ୍ଜରୀ, ଶରଣପଞ୍ଜର ସହିତ ତାଙ୍କ ନିଜ ଲିଖିତ ଅନେକ ପଦ୍ୟ ଉତାରି ଦେଇଥିଲା ।

ବଂଶୀବାବୁ ପରିସ୍ଥିତିର ଦାୟରେ ଜାତକ ବା ଜ୍ୟୋତିଷ ଉପରେ ନିର୍ଭର କରୁଥିଲେ । ତାଙ୍କ ଭିତରେ ଗୋଟିଏ ଦୋଷୀଭାବ ଥିଲା, ଯେ ତାଙ୍କ ଅନୁପସ୍ଥିତି ହିଁ ତାଙ୍କ ବଡ଼ଝିଅର ବିଡ଼ମ୍ବିତ ବୈବାହିକ ଜୀବନ ପାଇଁ ଦାୟୀ । ସେଥିପାଇଁ ସେ ଭିକ ମାଗିବାକୁ ଆସି ହାତ ଦେଖୁଥିବା ମଣିଷଙ୍କଠାରୁ, ସାଧୁସନ୍ଥଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଘରକୁ ଡାକୁଥିଲେ । ପତ୍ନୀଙ୍କର ଶତ ବିରୋଧ ସତ୍ତ୍ୱେ ସେମାନଙ୍କ ସହିତ ଗପ କରୁଥିଲେ । କିନ୍ତୁ ତାଙ୍କ ଭିତରେ ଯେଉଁ ଯୁକ୍ତିଶୀଳ ମଣିଷଟିଏ ଗୁପ୍ତ ଥିଲା, ସେ ମଧ୍ୟ ନିଜକୁ ଜାହିର କରୁଥିଲା । ସେ ପ୍ରଥମେ ନିଜର ମୃତ ଜ୍ୟେଷ୍ଠ ଜାମାତାଙ୍କ ଜାତକଟି ଆଗନ୍ତୁକ ଜ୍ୟୋତିଷଙ୍କୁ ଦେଖାଇ ଦେଉଥିଲେ । ଜ୍ୟୋତିଷ ଯଦି ପ୍ରକୃତ ପାଠ ଜାଣିଥିବେ, ସେ ନିଶ୍ଚୟ କହିବେ ଏହି ଜାତକ ଯାହାର ସେ ମୃତ । ଯଦି କହି ନ ପାରିଲେ, ସେ ବୁଝିଯାଉଥିଲେ ଯେ ଲୋକଟି ଭଣ୍ଡ । କେବେ କେବେ ବହୁତ ଶାସ୍ତ୍ରତତ୍ତ୍ୱ ଜାଣିଥିବା ବ୍ୟକ୍ତି ବାରମ୍ବାର ଜାତକ କଷିବା ପରେ ମୃତବ୍ୟକ୍ତିଙ୍କ ଜାତକ କଷୁଥିବା ଜାଣି ବିରକ୍ତ ମଧ୍ୟ ହୁଅନ୍ତି; କିନ୍ତୁ ବଂଶୀବାବୁ ନିଜ ଇଚ୍ଛାରେ ଅଟଳ ରହିଛନ୍ତି । ସାନଝିଅ ମିତୁର ବିବାହ ସମୟରେ ଜାତକ ମେଳକ ଉପରେ ସେ ସର୍ବାଧିକ ଗୁରୁତ୍ୱ ଦେଇଥିଲେ ।

**ଯେତେ ମତ ସେତେ ପଥ :**

ପ୍ରାୟ ୧୯୬୦ରୁ ୧୯୬୪ ଭିତରେ ମହାଯୋଗୀ ଶ୍ରୀ ଅରବିନ୍ଦଙ୍କର ନୂତନ ଦର୍ଶନତତ୍ତ୍ୱ ସମଗ୍ର ଭାରତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । "ମଣିଷ ଦିନେ ଉତ୍ତରଣର ଅଭୀପ୍‌ସା ନେଇ ଦେବତାରେ ରୂପାନ୍ତରିତ ହୋଇଯିବ", ଏଭଳି ବିଚାର ଖଣ୍ଡସାହୀ ଗ୍ରାମକୁ ମଧ୍ୟ ଆସିଥିଲା । ଡାକ୍ତର ସତ୍ୟବାଦୀ ମିଶ୍ର ଥିଲେ ମହାଯୋଗୀ ଶ୍ରୀ ଅରବିନ୍ଦଙ୍କର ଅନୁଗତ । ସେ ବାରମ୍ବାର କହୁଥିଲେ ଯେ ପୃଥିବୀରେ ସ୍ୱର୍ଗର ଅବତରଣ ଅବଶ୍ୟ ଘଟିବ । ଏକଥା ସେ ସାନଭାଇ ବଂଶୀଧରଙ୍କ ସହିତ ଆଲୋଚନା କରୁଥିଲେ । ବଂଶୀବାବୁ କିନ୍ତୁ ଯୁକ୍ତି କରୁଥିଲେ ଯେ ମଣିଷ ମନ ଭିତରୁ ହିଂସା, ଦ୍ୱେଷ ନ ଯିବା ପର୍ଯ୍ୟନ୍ତ ପୃଥିବୀ ସ୍ୱର୍ଗରେ ପରିଣତ ହେବାର ନୁହେଁ । ତା'ପରେ ସବୁ ଅଶାନ୍ତି ସତ୍ତ୍ୱେ ପୃଥିବୀ ହିଁ ଆମର ଆପଣାର । ସ୍ୱର୍ଗ କାମନା ସ୍ୱାର୍ଥପରତାର କାମନା । ତଥାପି ସେ ଭାଇନାଙ୍କ ସହିତ ଶ୍ରୀ ଅରବିନ୍ଦଙ୍କ ତତ୍ତ୍ୱ ସମ୍ପର୍କରେ ବ୍ୟାପକ ଆଲୋଚନା କରୁଥିଲେ ।

**ପରିଣତ ବୟସର ଶ୍ରେଷ୍ଠ ଅନୁଭବ—ମିତୁର ବିବାହ :**

୧୯୫୩ରେ ଜନ୍ମ ହୋଇଥିବା ଝିଅ ମିତୁ ୧୯୬୮ରେ ମ୍ୟାଟ୍ରିକ୍ ପାସ୍ କଲା । ନନା ଚାହାନ୍ତି ମିତୁ ସି.ଟି. ଟ୍ରେନିଂ ନେଇ ମାଷ୍ଟରାଣୀ ହେଉ । ୧୯୬୮ ଜୁନ୍ ମାସ ସ୍ନାନ ପୂର୍ଣ୍ଣମୀରେ ନାନୀ ଯାଇ ପହଞ୍ଚେ । ଉଦ୍ଦେଶ୍ୟ ନେମଳେର ଅଚ୍ୟୁତାନନ୍ଦ ପୀଠକୁ ଦର୍ଶନ କରିବା ପାଇଁ ଯିବ । ମିତୁର ସି.ଟି. ଟ୍ରେନିଂ ନେବା କଥା ଶୁଣି ସେ ବିରକ୍ତ ହୁଏ ଓ "ଦୁଇ ବର୍ଷ ସେ ମୋ ପାଖରେ ରହି କଲେଜରେ ପଢ଼ିବ" କହି ଜବରଦସ୍ତ ମିତୁକୁ ପାଖକୁ ନେଇଯାଏ । ମିତୁ ସେଠାରେ ଖୋର୍ଦ୍ଧା କଲେଜରେ ପାଠ ପଢ଼େ । ଜବାବ ଅନୁସାରେ ଦୁଇବର୍ଷ ହିଁ ନାନୀ ପାଖରେ ତାକୁ ରହିବାକୁ ହୁଏ । କାରଣ ୧୯୭୦ରେ ଫାଷ୍ଟଇଅର ଡିଗ୍ରୀ ପରୀକ୍ଷା ଦେବା ପରେ ତା'ର ବିବାହ ହୋଇଯାଏ ।

ବଂଶୀବାବୁ ଜ୍ୱାଇଁ ଦେଖିବାକୁ ଜଟଣୀ (ବଲ୍ଲୀ ରହୁଥିବା ସ୍ଥାନ) ଆସନ୍ତି ଓ ଯୁବକମାନେ ଆତ୍ମମର୍ଯ୍ୟାଦାସମ୍ପନ୍ନ ହେବା ଦରକାର ବୋଲି ଭାଷଣ ଶୁଣାନ୍ତି ଭାବୀ ଜାମାତାଙ୍କୁ । ଭାବୀ ଜାମାତା ଡଃ ଜଗନ୍ନାଥଙ୍କୁ ଦେଖି ସେ ସନ୍ତୁଷ୍ଟ ହୋଇଥିଲେ । ୧୯୭୦ ମେ ମାସ ୮ ତାରିଖରେ ବହୁପ୍ରତୀକ୍ଷିତ ବିବାହ ଅନୁଷ୍ଠିତ ହୁଏ । ବିବାହ ସମୟରେ ସେ ଲେଖିଥିବା ଗୀତ ଏ ପର୍ଯ୍ୟନ୍ତ ମିତୁ ସାଇତି ରଖିଛି । ସତେ ଯେମିତି ଜୀବନସାରା ଅନେକ ଗୀତ ଲେଖିଥିବା ବଂଶୀଧର ନିଜର ସବୁତକ ଭାବପ୍ରବଣତା ଅଜାଡ଼ି ଦେଇ ସେ ଗୀତ ଲେଖିଛନ୍ତି, ତାକୁ ଯିଏ ପଢ଼ିଛି ସେ କାନ୍ଦିଛି । ମିତୁର ପ୍ରଥମ କନ୍ୟା ସନ୍ତାନ ଜନ୍ମ ନେଲା ୧୯୭୧ରେ । ସେତେବେଳେ ବଂଶୀବାବୁଙ୍କ ଆନନ୍ଦ କହିଲେ ନ ସରେ । ଛୋଟ ଝିଅକୁ ଧରି ମିତୁ ଖଣ୍ଡସାହୀ ଆସିଥାଏ । ସେଠାରୁ ତରୋତ ଯିବ ତା' ଶାଶୁଘର । କେନାଲ କୂଳକୁ ତାକୁ ଛାଡ଼ିବାକୁ ଆସିଥାନ୍ତି ବଂଶୀବାବୁ । ସେଦିନ କିନ୍ତୁ ପଥରରୁ ପାଣି ଝରିଥିଲା । ଝିଅ ଶାଶୁଘରକୁ ଗଲାବେଳେ ଯିଏ ଠାକୁରଘରେ ପଶି ଦୁଆର ଆଉଜେଇ ସ୍ଥିର ହୋଇ ବସିଥିଲେ ସେହି ବଂଶୀଧର ଅଜା ଭୂମିକାରେ ଖୁବ୍ ସୁନ୍ଦର ଦିଶୁଥିଲେ । ନିଜ ପିଲାଙ୍କଠାରୁ ନାତି ନାତୁଣୀଙ୍କ ପ୍ରତି ସ୍ନେହ ଯେ କେତେ ବେଶି ଏକଥା ସେଦିନ ସେଠାରେ ଉପସ୍ଥିତ ସମସ୍ତେ ଅନୁଭବ କରିଥିଲେ ।

ବାପ୍ତରୀ ମସିହାରେ ମିତୁ ପୁଣି ବାହାରିଲା ପାଠ ପଢ଼ିବ । ତା' ସ୍ୱାମୀଙ୍କ ଖୋର୍ଦ୍ଧାଡାକ୍ତରଖାନାରେ ପୋଷ୍ଟିଂ ହୋଇଥାଏ । ତେଣୁ ବି.ଏ. ପରୀକ୍ଷାଟା ଅନ୍ତତଃ ଦେଇଦେବା ଦରକାର ବୋଲି ବଂଶୀବାବୁ ଚାହୁଁଥିଲେ । ବୋଉ ଓ ନାନୀର ଶତ ବାରଣ ସତ୍ତ୍ୱେ ମିତୁ ବି.ଏ. ପରୀକ୍ଷା ଦେଲା । ଦ୍ୱିତୀୟ ସନ୍ତାନ ଜନ୍ମ ହେବା ପୂର୍ବରୁ ତା'ର ବି.ଏ. ପରୀକ୍ଷା ସରିଲା । ପୁତ୍ର ସନ୍ତାନ ସହିତ ସେ ୧୯୭୩ରେ ସମଗ୍ର ଓଡ଼ିଶାରେ ଓଡ଼ିଆ

ସମ୍ମାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଲା । ୧୯୭୫ରେ ମିତୁ ବାଣୀବିହାରରୁ ଏମ୍.ଏ. ପାସ୍ କଲା । ୧୯୭୭ରେ ସେ ଅଧ୍ୟାପିକା ଭାବରେ ଯୋଗଦେଲା ବି.ଜେ.ବି. (ସାନ୍ଧ୍ୟ) କଲେଜରେ । ସେତେବେଳକୁ ବଂଶୀବାବୁ ବେଶ୍ ରୁଗ୍ଣ ଓ ବୟସ୍କ । ଅଭାବ ମଧ୍ୟ ବାଧୁଥିଲା । କିନ୍ତୁ ସେ ବରାବର ଶିକ୍ଷାର ଉପଯୋଗିତା ସମ୍ପର୍କରେ ମିତୁକୁ ଚିଠି ଲେଖୁଥିଲେ । ପ୍ରାଚୀନ ଭାରତର ବହୁ ଗୁରୁଙ୍କ ଉଦାହରଣ ଦେଇ ଶିକ୍ଷା ବ୍ୟବସ୍ଥା କିଭଳି ହେବା ଉଚିତ ସେ ସମ୍ପର୍କରେ ବହୁ ଉପଦେଶ ଦେଉଥିଲେ । ଭାରତ ଗୁରୁର ଦେଶ । ବିବେକାନନ୍ଦ ଓ ଶ୍ରୀରାମକୃଷ୍ଣଙ୍କ ଉଦାହରଣ ଦେଇ ସେ କହୁଥିଲେ, ଯେଉଁଦିନ ଦକ୍ଷିଣେଶ୍ୱରର ଅକ୍ଷର ପରିଚୟ ନ ଥିବା ବ୍ରାହ୍ମଣଙ୍କ ପାଦତଳେ ଉଚ୍ଚଶିକ୍ଷିତ ଯୁକ୍ତିଶୀଳ ଯୁବକ ନରେନ୍ଦ୍ରନାଥ ଦତ୍ତ ମୁଣ୍ଡ ନୁଆଁଇଥିଲେ, ସେହିଦିନଠାରୁ ଭାରତ ବିଶ୍ୱର ଶିକ୍ଷାଗୁରୁ ହେବାର ଦକ୍ଷତା ଅର୍ଜନ କରିଛି । ଏସବୁ ସହିତ ପଢ଼ାପଢ଼ିରେ ସବୁବେଳେ ନିଷ୍ଠା ରଖିବାକୁ ସେ ଉପଦେଶ ଦେଉଥିଲେ ।

**ବଲ୍ଲୀବୋଉଙ୍କର ଅସ୍ତ୍ରୋପଚାର :**

୧୯୭୭ ଫେବୃୟାରୀରେ ମିତୁ ବି.ଜେ.ବି. ସାନ୍ଧ୍ୟ କଲେଜରେ ଚାକିରୀ ଆରମ୍ଭ କଲା । ସେହିବର୍ଷ ତା' ବୋଉର ଦେହ ଅସୁସ୍ଥ ଥାଏ । ଦୀର୍ଘ ଦିନରୁ ଗର୍ଭାଶୟ ରୋଗ ଭୋଗୁଥିବା ଶ୍ରୀମତୀ ଦେବୀ (ବଲ୍ଲୀବୋଉ) ଆଉ ରୋଗକୁ ଲୁଚାଇ କଷ୍ଟ ସହିବା ଅବସ୍ଥାରେ ମଧ୍ୟ ନଥିଲେ । ପ୍ରାୟ ଦୁଇବର୍ଷ ଆଗରୁ ବଲ୍ଲୀବୋଉ ଜଣେ ସାଧୁ (ବଲ୍ଲୀ ଘରକୁ ଆସୁଥିବା)ଙ୍କ ପାଖରୁ ମନ୍ତୁରା ଜଳ ପାଦୁକ ପ୍ରଭୃତି ନେଇ ନିଷ୍ଠାର ସହିତ ତାକୁ ସେବନ କରୁଥିଲେ । ପରିଣତ ବୟସରେ ଶରୀରରେ ଅସ୍ତ୍ରୋପଚାର କରାଇବାକୁ ସେ ଚାହୁଁ ନଥିଲେ । ମାତ୍ର ସେହି ଦୁଇବର୍ଷ ଭିତରେ ରୋଗ ବଢ଼ିଲା ସିନା କମିଲା ନାହିଁ । ତେଣୁ ସେ ସାନଜ୍ୱାଇଁ (ଡାକ୍ତର ଜଗନ୍ନାଥ ମହାପାତ୍ର)ଙ୍କ ସହିତ ପରାମର୍ଶ କରି ବଂଶୀବାବୁଙ୍କୁ କିଛି ନ ଜଣାଇ ଭୁବନେଶ୍ୱର ଆସିଲେ । ୧୯୭୭ ସରସ୍ୱତୀ ପୂଜା ବେଳେ କ୍ୟାପିଟାଲ ହସ୍ପିଟାଲ୍‌ରେ ତାଙ୍କର ଅସ୍ତ୍ରୋପଚାର ବେଶ୍ ସଫଳତାର ସହିତ ହେଲା । ବଂଶୀଧରଙ୍କୁ ମିତୁ ଏ ଘଟଣା ଲୁଚାଇଥିଲା । ମାତ୍ର ବଲ୍ଲୀ ତା' ବୋଉକୁ ଦେଖିବାକୁ ଆସି ମିତୁ ଉପରେ ଢେର୍ ବିରକ୍ତ ହୋଇଥିଲା । ଭୁବନେଶ୍ୱରରୁ ଯାଇ ସେ ତା' ନନାଙ୍କୁ ବୋଉ ଅପରେସନ୍ କଥା ଚିଠି ଲେଖି ଜଣାଇଦେଲା । ବଂଶୀବାବୁ ଏ ଖବର ପାଇ ଅଜ୍ଞାନ ହୋଇଗଲେ । ସାହି ପଡ଼ିଶା ଲୋକେ ଆସି ତାଙ୍କୁ ସାନ୍ତ୍ୱନା କଲେ ।

ସେ ସମୟରେ ତାଙ୍କ ଘରେ ଖଗେଶ୍ୱର ବୋଲି ପିଲାଟିଏ କାମ କରୁଥିଲା । ସେ ପିଲାଟି ଖୁବ୍ ଦୁଷ୍ଟ ଥିଲା; ମାତ୍ର ବଂଶୀଧର ତାକୁ ଖୁବ୍ ଶ୍ରଦ୍ଧା କରୁଥିଲେ । ସେ

କହୁଥିଲେ, "ଦସ୍ୟୁ ରତ୍ନାକର ତ ପୁଣି ବାଲ୍ମିକୀ ହୋଇପାରିଲା ।" କିନ୍ତୁ ହାୟ ବଲ୍ଲୀବୋଉଙ୍କ ଅନୁପସ୍ଥିତିରେ ସେହି ଦସ୍ୟୁ ରତ୍ନାକର ଘରର ସିନ୍ଦୁକ ଖୋଲି କେତେକ ବାସନ ଚୋରିକରି ନେଇ ବିକି ଦେଇଥିଲା । ବଂଶୀବାବୁଙ୍କର ଖୁବ୍ ମୂଲ୍ୟବାନ୍ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ବହିର ଦୁର୍ଲଭ ଚିତ୍ରମାନ କାଟି ନେଇଥିଲା । କେବଳ ସେତିକି ନୁହେଁ, ଦୁଷ୍ଟ ପିଲାଙ୍କ ସାଙ୍ଗରେ ତାଙ୍କ ଘରେ ଭୋଜି କରି ଖାଇଥିଲା । ତା'ର ଗୋଟିଏ ଡାଏରୀ ପରେ ମିତୁର ହସ୍ତଗତ ହୋଇଥିଲା । ଯେଉଁଥିରେ ସେ ଲେଖିଥିଲା ଯେ ଥରେ ଫୁଟନ୍ତା ଭାତ ଭିତରକୁ ବେଙ୍ଗଟାଏ ହେଇଁ ପଡ଼ିଥିଲା । ତେଣୁ ଖଗ ସେ ଭାତ ବଂଶୀବାବୁଙ୍କୁ ଦେଇ ନିଜେ ସେଦିନ ପକୁଡ଼ି କରି ଖାଇଥିଲା । ଅମଣିଷପଣିଆର ଏହି ନିଦର୍ଶନକୁ ବଂଶୀବାବୁ ନିର୍ବିକାରରେ ସହ୍ୟ କରିଥିଲେ । ମଣିଷ ମାତ୍ରେ ଭୁଲ୍ କରେ । ବଲ୍ଲୀବୋଉ ଖଗ କଥା ଜାଣି ବ୍ୟସ୍ତ ହେଲେ । "ପକୁଡ଼ି ଗଣ୍ଡାଏ ବୁଢ଼ା ମଣିଷକୁ ଦେଲୁନି" ବୋଲି ବିରକ୍ତି ପ୍ରକାଶ କଲେ; କିନ୍ତୁ ବଂଶୀବାବୁ ସେସବୁ କଥା ପଢ଼ିଲେ ବିରକ୍ତ ହେଉଥିଲେ । "ପିଲାଲୋକ, ପକୁଡ଼ି ଖାଇବାକୁ ମନ ହୋଇଥିବ । ସେ କଥା ଏତେଥର କହିବା କ'ଣ ଦରକାର ?"

ଏକଥା ଗାଁରେ ପ୍ରଘଟ ହେବା ପରେ ଖଗ ଅବଶ୍ୟ ନିଜ ଇଚ୍ଛାରେ ତାଙ୍କ ଘରୁ ଚାଲିଯାଇଥିଲା; ମାତ୍ର ବଂଶୀବାବୁ ତାକୁ ତଡ଼ିଦେଇ ନଥିଲେ । ସଙ୍ଗଦୋଷରୁ ଖୁବ୍ ଭଲପିଲା ଏଭଳି ଭୁଲ୍ କାମ କରିଥାଆନ୍ତି ବୋଲି ବାରମ୍ବାର କହି ସେ ଖଗ ସପକ୍ଷରେ ଯୁକ୍ତି କରୁଥିଲେ ।

କାହାରି ନିନ୍ଦା କରିବାକୁ ସେ ଭଲପାଉ ନଥିଲେ । 'ପରନିନ୍ଦା ପରଚର୍ଚ୍ଚା' ଆମ ସମାଜକୁ ନଷ୍ଟ କରିଦେଲା ବୋଲି ବିବ୍ରତ ହେଉଥିଲେ । କେହି ଅନ୍ୟର ନିନ୍ଦା କଲେ ସେ ନିରବ ରହୁଥିଲେ ନ ହେଲେ ବ୍ୟକ୍ତିଙ୍କୁ ସେଥିପାଇଁ ବାରଣ କରୁଥିଲେ । ଛୋଟ ଛୋଟ ତ୍ରୁଟି ନେଇ ରାଗରେ ଅଗ୍ନିଶର୍ମା ହୋଇପଡୁଥିବା ବଂଶୀବାବୁ ବହୁତ ବଡ଼ ବଡ଼ ତ୍ରୁଟି କରୁଥିବା ମଣିଷମାନଙ୍କୁ ସହଜରେ କ୍ଷମା କରି ଦେଇଛନ୍ତି । ଏପରିକି ତାଙ୍କୁ ଗାଳି ଦେଉଥିବା ମଣିଷଙ୍କୁ ମଧ୍ୟ ଆପଣାର ମଣି ତାଙ୍କ ଭିତରେ ଥିବା ମଣିଷପଣିଆକୁ ଜାଗ୍ରତ କରାଇ ପାରିଛନ୍ତି ।

**ପୁନଶ୍ଚ ଚୋରି :**

ପ୍ରାୟ ୧୯୭୮-୭୯ ମସିହାର କଥା । ମିତୁ ନୂଆ ନୂଆ ଚାକିରୀ କରୁଥାଏ । ତା'ର ତିନିଦିନ ଲାଗ୍ ଲାଗ୍ ଛୁଟି ପଡ଼ିଲା । ତା' ସ୍ୱାମୀ ଆଉ ପିଲାମାନେ କହିଲେ ଯାଇ

ନନା ବୋଉଙ୍କ ପାଖରେ ବୁଲି ଆସ । ମିତୁ କିନ୍ତୁ ଗଲାନି । ତା' ଭିତରୁ କିଏ ଯେମିତି ତାକୁ ବାରଣ କରୁଥିଲା । ମିତୁ କିନ୍ତୁ ଚିଠି ଦେଇଥିଲା ଯିବ ବୋଲି । ତିନିଦିନ ଛୁଟି ସରିବା ଦିନ ରାତିରେ ବଂଶୀବାବୁଙ୍କ ଘରେ ଚୋର ପଶିଲେ । ଚୋରମାନେ ଦୁଆର ଭାଙ୍ଗି ଘର ଖୋଲିବା ପୂର୍ବରୁ ବଂଶୀବାବୁ ପରିସ୍ରା ଯିବେ ବୋଲି ଦୁଆର ଖୋଲିଦେଲେ । ଚୋରମାନେ ତାଙ୍କ ତଣ୍ଟିରେ ଛୁରୀ ଲଗାଇ ଦେଇ ବଲ୍ଲୀବୋଉଙ୍କୁ "ତୋ ଝିଅ କାହିଁ— କ'ଣ କେଉଁଠି ରଖିଛୁ ଦେଖା" କହି ଧମକାଇଲେ । "ବଂଶୀବାବୁ କିଛି ବୁଝି ନ ପାରି ପଚାରୁଥାଆନ୍ତି ଏମାନେ କିଏ ?" ବଲ୍ଲୀବୋଉ ତାଙ୍କ ବେକରୁ ହାର ଓ କାନରୁ କାନ ଝୁମୁକା କାଢ଼ି ସେମାନଙ୍କୁ ଦେଇଦେଲେ । ସିନ୍ଦୁକରେ ଥିବା ପଞ୍ଚମ ଜର୍ଜଙ୍କ ଟଙ୍କା ପ୍ରାୟ ୪୦-୫୦ଟା ହେବ (ଶ୍ରୀମତୀ ଦେବୀଙ୍କ ବିବାହ ସମୟରେ ତାଙ୍କ ମାମୁ ଉପହାର ଦେଇଥିଲେ) ଓ ଦୁଇ ହଜାର ଭଳି ଟଙ୍କା ନେଇ ସେମାନେ ଚାଲିଗଲେ । ଘରେ କିନ୍ତୁ କଂସା ବାସନ ପ୍ରଭୃତି ସେମିତି ପଡ଼ି ରହିଥିଲା । ବଲ୍ଲୀବୋଉ କହିଲେ, "ମୁଁ ବୁଢ଼ାଲୋକଙ୍କୁ ଧରି ପଡ଼ିଛି । ଔଷଧ ଖର୍ଚ୍ଚ ଆଣିବି କେଉଁଠୁ ?" ଚୋରମାନେ କହିଲେ, "ଆମେ ଆସି ଦେଇଯିବୁ ।" ଏସବୁ କଥା ଗ୍ରାମବାସୀମାନେ ପରଦିନ ସକାଳୁ ଜାଣିଲେ । ଯୋଗକୁ ମିତୁ ସେଦିନ ଖରାବେଳେ କେଉଁ ବନ୍ଧୁଙ୍କ ଗାଡ଼ି ସୁବିଧା କରି ଗାଁକୁ ଯାଇଥିଲା । ବଂଶୀବାବୁ ଭାବିଥିଲେ ମିତୁ ଖବର ପାଇ ଆସିଛି । କିନ୍ତୁ ନାଁ, ମିତୁ କେଉଁ ଅଦୃଶ୍ୟ ଶକ୍ତି ବଳରେ ଟାଣିହୋଇ ନନା ବୋଉଙ୍କୁ ଦେଖିବାକୁ ଦେଖିବାକୁ ଧାଇଁ ଯାଇଥିଲା । ବୋଉର ଖାଲି କାନ ସେ ଜନ୍ମହେଲା ଦିନୁଁ ଦେଖିନଥିଲା । କିନ୍ତୁ ସବୁଠୁ ଆଶ୍ଚର୍ଯ୍ୟ କଥା ସେହି ମାନସିକ ଅବସ୍ଥାରେ ମଧ ଶ୍ରୀମତୀ ଦେବୀ ବଂଶୀବାବୁଙ୍କ ଖାଇବା ପାଇଁ ଭାତ ଡାଲି ଆଉ ଶାଗଭଜା କରିଥିଲେ । ଜଣେ କିଭଳି ଅନୁଭୂତିଶୂନ୍ୟ ହୋଇ ପଥର ଭଳି ବଂଚି ରହିପାରେ, ଶ୍ରୀମତୀ ଦେବୀଙ୍କୁ ଦେଖିଲେ ଜଣାଯାଉଥିଲା ।

ଅନ୍ୟାନ୍ୟ ଚୋରୀ ଭିତରେ ଆମ୍ବ, ପଣସ ଓ ନଡ଼ିଆ ଚୋରି ତ ସବୁବେଳେ ଲାଗି ରହିଥିଲା । ଯେଉଁ ପଣସଟି ଆସନ୍ତାକାଲି କାଟିବେ ବୋଲି ବଲ୍ଲୀବୋଉ ଲୋକ ଯୋଗାଡ଼ କରୁଥିବେ, ସେହି ପଣସ ସେଦିନ ରାତିରେ ନିଶ୍ଚୟ ଚୋରି ହୋଇଯିବ । ଶୀତଦିନେ ମିତୁ ଲଗାଇଥିବା ଗେଣ୍ଡୁଗଛରୁ ଗେଣ୍ଡୁଫୁଲ ନିଶ୍ଚୟ କିଏ ନେଇଯିବ, ଆଉ ମିତୁ ବ୍ୟସ୍ତହେଲେ ବଂଶୀବାବୁ ବୁଝାଇଦେବେ, "ଲକ୍ଷ୍ମୀଠାକୁରାଣୀ ପୂଜା ପାଇଁ ଫୁଲ ନେଲେ ରାଗନ୍ତିନି, ଠାକୁରାଣୀ ତ ପିନ୍ଧିବେ, ଆମ ଘରେ ପିନ୍ଧିଥାଆନ୍ତେ, ଆଉ କାହା ଘରେ ପିନ୍ଧିବେ ।" କାହାକୁ ଚୋର କହିବା ତାଙ୍କ ଜାତକରେ ନଥିଲା । ମଣିଷ ପରିସ୍ଥିତିର ଚାପରେ ଚୋରିକରେ ବୋଲି ସେ ବୁଝିଥିଲେ । କିନ୍ତୁ ତାଙ୍କ ବହି ଥାକରେ କିଏ ଭୁଲରେ

ହାତ ମାରିଦେଲେ ସେ ବିରକ୍ତ ହେଉଥିଲେ । ବହିକୁ ଯେ ଆଦର ନ କରେ, ପାଠ ତାକୁ ଆଦର କରିବନି ବୋଲି ସେ ବରାବର କହୁଥିଲେ । ଖଣ୍ଡିଏ ବହି ଟିକିଏ ଘୁଞ୍ଚିଗଲେ ସୁଦ୍ଧା ସେ ଜାଣି ଦେଉଥିଲେ ।

କିନ୍ତୁ ଅନ୍ୟ ସବୁ ଚୋରିପ୍ରତି ସେ ଥିଲେ ନିର୍ବିକାର । ଯେତେ ଦାମିକା ଦ୍ରବ୍ୟ ହେଲେ ମଧ୍ୟ ସେ ଜମା ଭାଙ୍ଗିପଡୁ ନଥିଲେ । ଅପର ପକ୍ଷରେ ଭାଙ୍ଗିପଡୁଥିବା ଲୋକକୁ ଧୈର୍ଯ୍ୟ ଦେଉଥିଲେ । ଗୋଟିଏ କଥାରେ କହିଲେ କୌଣସି ପାର୍ଥିବ ପଦାର୍ଥ ପ୍ରତି ତାଙ୍କର ବିଶେଷ ଆକର୍ଷଣ ନଥିଲା । ସବୁବେଳେ ସେ ସାଂସାରିକ ଜଞ୍ଜାଳଠାରୁ ଊର୍ଦ୍ଧ୍ୱତର ଜଗତରେ ବାସ କରୁଥିଲେ ।

**ଦୈନନ୍ଦିନ ଜୀବନଚର୍ଯ୍ୟା :**

ବଂଶୀବାବୁଙ୍କର ଜୀବନଚର୍ଯ୍ୟା ଥିଲା ପ୍ରାଚ୍ୟ ପାଶ୍ଚାତ୍ୟ ଦିନଚର୍ଯ୍ୟାର ଅପୂର୍ବ ସମନ୍ୱୟ । ସେ ପ୍ରାୟ ସାଢ଼େପାଞ୍ଚ ସୁଦ୍ଧା ବିଛଣା ଛାଡୁଥିଲେ । ବାଡ଼ିଦୁଆର ଖୋଲି, ରାତିରୁ ଥୁଆହୋଇଥିବା ପାଣିଡାଳ ଧରି ସେ ପ୍ରଥମେ ପାଇଖାନା ଯାଉଥିଲେ । ପାଇଖାନାରୁ ଫେରି ସେ ଡାଳଟି ପିଣ୍ଡାରେ ଥୋଇବା ଶବ୍ଦରେ ଯଦି ମିତୁର ନିଦ ନ ଭାଙ୍ଗୁଥିଲା, ସେ ତାକୁ ଡାକି ବିରକ୍ତ ମଧ୍ୟ ହେଉଥିଲେ । ତା'ପରେ ସେ ଦାନ୍ତ (ନକଲି) ସଫା କରୁଥିଲେ । ସେ ପ୍ରଥମେ ଚା' ପିଉ ନଥିଲେ; କିନ୍ତୁ ମିତୁର ବିବାହ ପରେ ଚା' ପିଇବାକୁ ଭାରି ଭଲ ପାଇଲେ । ଚା' ପିଇବା ପରେ ତେଲ ଲଗାଇ ସେ ଗାଧୋଇ ଯାଉଥିଲେ । ପ୍ରାୟ କେନ୍ଦ୍ରପଡ଼ା କେନାଲରେ ସେ ଗାଧୋଉଥିଲେ । ଦେହ ଭଲ ନ ଥିଲେ କୂଅମୂଳେ ଗାଧୋଉଥିଲେ । ଶୀତଦିନେ ବାରିପଟ ଚୂଲୀରେ ନଡ଼ିଆପତ୍ର ଜଳାଇ ପାଣି ଗରମ କରୁଥିଲେ । (ସେଠି ବସିବାବେଳେ ମଧ୍ୟ ସେ ଧୀରେନ୍ଦ୍ରନାଥ ନାୟକ ନାମକ ଛାତ୍ରଙ୍କୁ ପାଠ ପଢ଼ାଇଥିଲେ) । ସାତଟା ସାଢ଼େସାତଟା ସୁଦ୍ଧା ସେ ଠାକୁର ପୂଜା କରୁଥିଲେ । ମିତୁ ପୂର୍ବରୁ ଠାକୁର ବାସନ ମାଜି, ଫୁଲ ତୋଳି ରଖିଦେଉଥିଲା । ପୂଜାପରେ ସେ ପୂଜାହୋଇଥିବା କଦଳୀ, ଗୁଡ଼, ଲୁଣ, ଲଙ୍କା, ଅଦା, ଲେମ୍ବୁ ଇତ୍ୟାଦି ପକାଇ ସକାଳ ଜଳଖିଆ ଖାଉଥିଲେ । (ମିତୁର ପୁଅଝିଅ ସାନ ଥିବାବେଳେ ଥରେଅଧେ ଅଜାଙ୍କ ଖାଇବା ଦେଖି ମନ କରିଥିଲେ; ମାତ୍ର ଥରେ ଖାଇବା ପରେ ଆଉ କେବେ ସେଥିପ୍ରତି ଆଗ୍ରହ ଦେଖାଉ ନଥିଲେ) । ଦଶଟା ସୁଦ୍ଧା ଭାତ, ଡାଲି, ତରକାରୀ ପ୍ରସ୍ତୁତ କରୁଥିଲେ ବଲ୍ଲୀବୋଉ । ବଂଶୀବାବୁ ଆଠଟା ସୁଦ୍ଧା କାମସାରି ଦାଣ୍ଡ ପିଣ୍ଡାରେ ସପ ପକାଇ ବସି ଖବରକାଗଜ ପଢୁଥିଲେ, ନ ହେଲେ ଅଉ କିଛି ପଢ଼ାପଢ଼ି କରୁଥିଲେ । ପ୍ରାୟ ସାଢ଼େ ନଅଟା ବେଳକୁ ମିତୁ ଡାକୁଥିଲା, "ନନା ! ଭାତ ବଢ଼ାହେଲା, ପୂଜା କରିବ ଆସ,"

କେବେ ସେ ମଠା ବଦଳାଇ ପୂଜା କରୁଥିଲେ ତ କେବେ ଡେରି କରି ଦେଉଥିଲେ । ମିତୁ କିନ୍ତୁ ଭାତ ଡାଲି ନେଇ ଠାକୁରଘରେ ବିମାନ ସାମନାରେ ଥୋଇ ତା' ବୋଉ କହିବା ମୁତାବକ ମୁଣ୍ଡିଆ ମାରି ଦୁଆର ଆଉଜେଇ ଆଣୁଥିଲା । ପାଞ୍ଚମିନିଟ ପରେ ଦୁଆର ଖୋଲି ଭାତଥାଳି ଆଣି ଖାଇ ବସୁଥିଲା । ବଂଶୀବାବୁ ବି ସେଥିରେ ଖୁସି ହେଉଥିଲେ । "ମନଦେଇ ଠାକୁରଙ୍କୁ ଡାକିଲେ ଢେର୍ । ବାପା ମାଆଙ୍କୁ କ'ଣ ଆମେ ସଂସ୍କୃତ ଶ୍ଳୋକ ବୋଲି ଡାକୁଛୁ ?"

ଖାଇବାରେ ତାଙ୍କର କିଛି ବାରଣ ନଥିଲା । ଏପରିକି ଅଲଣା, ଦରସିଝା ବା ପୋଡ଼ା ତରକାରୀ ମଧ ସେ ପୋଛିପାଛି ନିର୍ବିକାରରେ ଖାଉଥିଲେ । ମିତୁ ବା ତା' ବୋଉ କିନ୍ତୁ ସେ ସବୁ ବାରୁଥିଲେ । ଖାଇବା ବେଳେ ସେ ଆଚାର୍ଯ୍ୟ ହରିହର ଅନୁବାଦ କରିଥିବା ପ୍ରାର୍ଥନା ଅବଶ୍ୟ ଗାଉଥିଲେ ।

ଘେନିବା ଆଗରୁ ମୁଖେ ସଦା ମୋ ନିତ୍ୟ ଭକ୍ଷ ।
ଘେନିବି ସତତ ମନେ ହରି ହେ ଦୟା ରଖ ।।
ଜୀବନୀ ଶକତିଦାତା ଅନ୍ନ ହିଁ ପୂର୍ଣ୍ଣ ବ୍ରହ୍ମ ।
ଉଦର ଭରଣ ନୁହେଁ ଜାଣ ଏ ଯଜ୍ଞ କର୍ମ ।।

ଖାଇବା ବେଳେ ସେ ପାଟି କରୁ ନଥିଲେ ବା ଅନ୍ୟ କିଏ ପାଟିତୁଣ୍ଡ କଲେ ସହିପାରୁ ନଥିଲେ । ସେ ଥିଲେ ମିତାହାରୀ । କେବେ ଲୋଭକରି କିଛି ଟିକିଏ ଅଧିକ ଖାଇବା ତାଙ୍କ ସ୍ୱଭାବ ବିରୁଦ୍ଧ ଥିଲା । ଏପରିକି ଚା'ରେ ସର ଟିକିଏ ପଡ଼ିଥିଲେ ସେ ସେଦିନ ବିସ୍କୁଟ ମଧ ଖାଉନଥିଲେ, କାରଣ ସରରେ ଖାଦ୍ୟସାର ଅଧିକ ଅଛି । ପିଠାପଣାକୁ ସେ ଭଲ ପାଉଥିଲେ । ଆମ୍ବ ଓ କଦଳୀ ଥିଲା ତାଙ୍କର ପ୍ରିୟ ଖାଦ୍ୟ ।

ପ୍ରାୟ ସାଢ଼େ ଦଶଟା ବେଳେ ସେ ସ୍କୁଲକୁ ବାହାରୁଥିଲେ । ଦୀର୍ଘ ଦୁଇ ମାଇଲ ବାଟ ଚାଲି ଚାଲି ସବୁଦିନେ ସେ ସ୍କୁଲ ଯାଉଥିଲେ । ଏପରିକି ଝଡ଼ବାତ୍ୟାରେ ମଧ ସେ ଘରେ ରହିବା କଷ୍ଟକର ଥିଲା । ସ୍କୁଲରେ ପାଠପଢ଼ା ସାରି ସେ ପ୍ରାୟ ପାଞ୍ଚଟା ବେଳେ ଫେରି ରାମେଶ୍ୱର ମହାଦେବଙ୍କ ମନ୍ଦିରରେ ବସୁଥିଲେ । ସେଠାରେ ପଶାଖେଳ ହେଉଥିଲା । ସେଠାରୁ ଫେରି ସେ ଦୋକାନରୁ କିଛି ସଉଦାପତ୍ର ଧରି ଘରକୁ ଫେରୁଥିଲେ । ଫେରିବା ପରେ ମିତୁ ସହିତ ପ୍ରାର୍ଥନା କରୁଥିଲେ । ତା'ପରେ ପାଠପଢ଼ିବା ଆରମ୍ଭ ହେଉଥିଲା । ମିତୁ ପାଞ୍ଚଖଣ୍ଡ ଗଣିତ କୌଣସି ମତେ କଷିସାରି ଗପବହି ଧରି ବସୁଥିଲା ସିନା ବଂଶୀବାବୁ କିନ୍ତୁ ନିର୍ବିକାରରେ ମ୍ୟାଗ୍ନିଫାଇଙ୍ଗ ଗ୍ଲାସ୍ ଧରି ତକିଆ ଉପରେ

ଲେପଟେଇ ପଡ଼ି ପାଠ ପଢୁଥିଲେ । ବେଳେ ବେଳେ ତାଙ୍କ ପିଠିରେ ମଶାମାନେ ବସି ରକ୍ତ ଶୋଷି ଚାଲୁଥିଲେ ହେଁ ସେସବୁ ତାଙ୍କୁ ବିଚଳିତ କରିପାରୁ ନଥିଲା । କିନ୍ତୁ ଲଣ୍ଠନ ତଳେ ସେ ନିଶ୍ଚୟ ଖଣ୍ଡିଏ ଇଟା ବା ଟାଇଲ ରଖୁଥିଲେ । କାରଣ ସିମେଣ୍ଟ ଘରେ କିରୋସିନ ତେଲ ଟାଣିହୋଇ ଅସୁବିଧା ହେବ ବୋଲି ସେ କହୁଥିଲେ । ତେଣୁ ସେ ବାବଦରେ ସେ ବେଶ୍ ସଚେତନ ଥିଲେ ।

ତାଙ୍କର ସ୍କୁଲ ଯିବା ବେଳକୁ ଗୋଟିଏ ଜୋତା ବା ଚପଲ ଥିଲା । ଘରେ ପିନ୍ଧିବାକୁ, ପାଇଖାନା ଯିବାକୁ, ଦାଣ୍ଡ ବାଡ଼ିକୁ ଯିବାକୁ ଏପରି କି ଖାଇବା ପିଢ଼ା ପାଖକୁ ଯିବାକୁ ଭିନ୍ନ ଭିନ୍ନ ଚପଲ ଥିଲା । ଅନ୍ୟମାନେ ତାଙ୍କ ଚପଲ ନେଇ ବେଶ୍ ଆମୋଦିତ ହେଉଥିଲେ ହେଁ ସେଥିପାଇଁ ସେ ବିବ୍ରତ ହେଉ ନଥିଲେ । ସେଇମିତି ତାଙ୍କର ଗୋଟିଏ ପ୍ୟାକେଟରେ ନାଲି, ନେଳି ଓ ବ୍ଲୁ ସ୍ୟାହି ପଶିଥିବା କଲମମାନ ଏକାଠି ଥିଲେ ବି ।ସେ ହାତମାରି କେଉଁ କଲମରେ କେଉଁ କାଳି ପଶିଥିଲା, କହିଦେଇ ପାରୁଥିଲେ । ଗୋଟିଏ ଛୋଟ ହେମଦସ୍ତା ଓ ତା'ର ପୁଆରେ ପାନ କୁଟା ହେଉଥିଲା । ସେ ହେମଦସ୍ତା ତଳେ ଖଣ୍ଡିଏ ଚିରା କମ୍ବଳ ଚଉତା ହୋଇ ରଖାହୋଇଥିଲା । ପାନ ଭାଙ୍ଗିବା ବେଳେ କେହି ତାଙ୍କ ପାଖରେ ବସିଲେ ସେ ବିରକ୍ତ ହେଉଥିଲେ । କାରଣ ଏକ ସମୟରେ ସେ ପ୍ରାୟ ପନ୍ଦର କୋଡ଼ିଏ ଖଣ୍ଡ ପାନ ଭାଙ୍ଗି ସଜାଡ଼ି ରଖୁଥିଲେ ।

ପ୍ରାୟ ଦଶଟା ବେଳକୁ ସେ ବିଛଣା ପକାଇ ଶୋଇ ପଡୁଥିଲେ । ରେଡ଼ିଓରେ ନାଟକ ଥିଲେ ନିଶ୍ଚୟ ଶୁଣୁଥିଲେ । ସନ୍ଧ୍ୟାରେ, ସକାଳେ ସମ୍ବାଦ ମଧ୍ୟ ସେ ଆଗ୍ରହ ସହିତ ଶୁଣୁଥିଲେ ।

ଜମିବାଡ଼ି ସମ୍ପର୍କରେ ସେ ଥିଲେ ଉଦାସୀନ । ତେଣୁ ସେ କଟକରେ ଥିବାବେଳେ ଥରେ ତାଙ୍କ ଘର କୋରକ ହେବାର ପରଓ୍ୱାନା ମଧ୍ୟ ଆସିଥିଲା । ଖଜଣା ଦେବାରେ ହେଳା କରିଥିଲେ, ମାତ୍ର ବଲ୍ଲୀବୋଉ ସତର୍କତାର ସହିତ ବାରମ୍ବାର ଏହି ଅସୁବିଧାକୁ ଏଡ଼ାଇ ଯାଉଥିଲେ ।

ବଂଶୀବାବୁ ସବୁବେଳେ ସରଳ ଜୀବନ-ଯାପନ କରିବାକୁ ପସନ୍ଦ କରୁଥିଲେ । ଘରେ ଗୋଟିଏ ଧୋତିକୁ ଦୁଇଖଣ୍ଡ କରି ଲୁଙ୍ଗି ଭଳି ପିନ୍ଧୁଥିଲେ । ସାର୍ଟ, ଗଞ୍ଜି ଇତ୍ୟାଦି ଶୀତଦିନେ ଦରକାର ହେଉଥିଲା । ନଚେତ୍ ସେ ଖଣ୍ଡିଏ ଧୋତି ପିନ୍ଧି ଧୋତିର ଚାଦରଟି ଘୋଡ଼ାଇ ହେଉଥିଲେ । ବାଡ଼ି ଖଣ୍ଡିଏ ଧରି, ବଟୁଆ ଅଣ୍ଟାରେ ଜାକି, ମଟର ଟାୟାରରେ ତିଆରି ଚପଲ ପିନ୍ଧି ସେ ପଦାକୁ ବାହାରୁଥିଲେ । ଘଣ୍ଟାଟିଏ ତାଙ୍କ ପଇତାରୁ ଝୁଲି ଅଣ୍ଟାରେ

ରହୁଥିଲା । ସବୁଠାରୁ ମଜା କଥା ହେଉଛି ଦଶଟଙ୍କା, ଟଙ୍କିକିଆ ବା ରେଜା ପଇସା ପାଇଁ ଅଲଗା ଅଲଗା କାଗଜ ମୁଣି ଥିଲା, ଯେଉଁଥିରେ ସେ ହାତ ମାରିଦେଇ ଜାଣିପାରୁଥିଲେ ତାହା କେତେଟଙ୍କିଆ ନୋଟ ବା ରେଜା ପଇସା । କେବେ କେମିତି ଟଙ୍କା ଗଣିବାରେ ଭୁଲ୍ ହେଲେ ବି ସେ କାହାକୁ କିଛି କହୁନଥିଲେ; ମାତ୍ର ପଢ଼ିବାକୁ ଆସୁଥିବା ପିଲାମାନଙ୍କ ଦ୍ୱାରା ବେଳେ ବେଳେ ଟଙ୍କା ଗଣାଇବାକୁ ପସନ୍ଦ କରୁଥିଲେ । ଏଭଳି ବିଚିତ୍ର ବିଚାର ଦେଖି ଅନ୍ୟମାନେ ବେଶ୍ ଆନନ୍ଦିତ ହେଉଥିଲେ ।

୧୯୬୮ରେ ମିତୁ ସେକେଣ୍ଡ ଡିଭିଜନରେ ମ୍ୟାଟ୍ରିକ୍ ପାସ୍ କରେ । ତା'ପରେ ବଂଶୀବାବୁ ସ୍କୁଲ ଯିବା ପ୍ରାୟ ଛାଡ଼ିଦିଅନ୍ତି । ବୟସ ଅଧିକ ହୋଇଛି । ଚାଲି ଚାଲି ପ୍ରତିଦିନ ପ୍ରାୟ ଦୁଇ ମାଇଲ ଯିବାଆସିବା ଶରୀର ପକ୍ଷେ ଅସହ୍ୟ ହୋଇଛି । ତଥାପି ଇଚ୍ଛା ହେଲେ ସେ ରିକ୍ସାରେ ବସି ସ୍କୁଲ ଯାଆନ୍ତି ଓ ଗୋଟିଏ ଦୁଇଟି କ୍ଲାସ୍ ତାଙ୍କୁ ତାଙ୍କ ଆଗ୍ରହରେ ଛାଡ଼ି ଦିଆଯାଏ । ପୂର୍ବରୁ ଖବର ପାଆନ୍ତୁ ବା ନ ପାଆନ୍ତୁ, ସମ୍ପୃକ୍ତ ବିଷୟର ସାର୍‌ମାନେ ବଂଶୀବାବୁଙ୍କୁ ନିଜ ନିଜ କ୍ଲାସ୍ ଛାଡ଼ିଦିଅନ୍ତି । ବେଳେ ବେଳେ ଗଣିତ ବା ଇଂରାଜୀର କୋର୍ସ ସରି ନଥିଲେ ବଂଶୀବାବୁଙ୍କୁ ସ୍ୱତନ୍ତ୍ର ଭାବରେ ସେ କ୍ଲାସ୍‌ମାନ ନେବାକୁ ଅନୁରୋଧ ମଧ୍ୟ କରାଯାଏ । ତା'ପରେ କୋର୍ସ ସରିବାର ସମ୍ପୂର୍ଣ୍ଣ ଦାୟିତ୍ୱ ସେ ଆଗ୍ରହରେ ନେଇଯାଆନ୍ତି ।

କିନ୍ତୁ ଏକଥା ମଧ୍ୟ ଅଧିକ ଦିନ ଚାଲିପାରିଲା ନାହିଁ । କ୍ରମେ ତାଙ୍କ କ୍ଲାସ୍‌ରେ ପିଲାମାନେ ଅମନୋଯୋଗୀ ହେଲେ । କାରଣ ଶ୍ରେଣୀଗୃହର ଶୃଙ୍ଖଳା ରକ୍ଷା କରିବା ପାଇଁ ବୟସ୍କ ବଂଶୀଧର ଅସମର୍ଥ ହେଉଥିଲେ । ତେଣୁ ମୁଷ୍ଟିମେୟ ଭଲ ପଢୁଥିବା ପିଲାଙ୍କ ଆଗ୍ରହ ସତ୍ତ୍ୱେ ସେ ସ୍କୁଲ ଯିବା ଛାଡ଼ିଦେଲେ । ତା'ପରେ ମଧ୍ୟ ପ୍ରାୟ ୫/୬ ବର୍ଷ ପିଲାମାନେ ତାଙ୍କ ପାଖକୁ ଅବଶ୍ୟ ଟିଉସନ୍ ହେବାକୁ ଆସୁଥିଲେ । ଯଦି କିଏ ଆଗ୍ରହରେ ୫/୭ ଟଙ୍କା ଦେଇଥିଲେ ତ ଉତ୍ତମ; କିନ୍ତୁ ସେ କେବେ କାହାକୁ ଟିଉସନ ପାଇଁ ପଇସା ମାଗୁ ନଥିଲେ । କାରଣ ଶିକ୍ଷା ବିକ୍ରି କରାଯାଏ ନାହିଁ, ଦାନ କରାଯାଏ ବୋଲି ସେ ବିଶ୍ୱାସ କରୁଥିଲେ ।

**ପରମ୍ପରାର ପୂଜାରୀ ବଂଶୀଧର :**

ବଂଶୀଧରଙ୍କ ପିତୃପୁରୁଷ ଦୁର୍ଗାଦେବୀଙ୍କ ପୂଜକ ଥିଲେ । ଗଙ୍ଗାଧରଙ୍କ ଘରକୁ ପୁଅହୋଇ ଆସିଥିବାରୁ ଜ୍ୟେଷ୍ଠ ଅଂଶ ଭାବରେ ଦୁର୍ଗାଦେବୀ ବଂଶୀବାବୁଙ୍କ ଘରକୁ ଆସିଥିଲେ । ଅଷ୍ଟଧାତୁରେ ନିର୍ମିତ ସେହି ପ୍ରତିମା ବଂଶୀଧରଙ୍କ ଗୃହର ଅଧିଷ୍ଠାତ୍ରୀ ଥିଲେ ଓ

ସମଗ୍ର ପରିବାର ଉପରେ ତାଙ୍କର ଅଖଣ୍ଡ ପ୍ରଭାବ ଅନୁଭୂତ ହେଉଥିଲଲା । ଯେ ବ୍ୟାକୁଳରେ ଡାକିଲେ ଅବଶ୍ୟ ଦୁଃଖ ଶୁଣୁଥିଲେ ।

ବଂଶୀଧର ସେହି ଦେବୀଙ୍କର ଉପାସନା ନିଷ୍ଠାର ସହିତ କରୁଥିଲେ । ପ୍ରଥମେ କେତେବର୍ଷ ତାଙ୍କ ଘରେ ଦୁର୍ଗାପୂଜା ଷୋହଳ ଦିନ ବ୍ୟାପି ପାଳିତ ହେଉଥିଲା । ତା'ପରେ ଷୋଳପୂଜା ନବଦିନାତ୍ମକ ପୂଜାରେ ପରିବର୍ତ୍ତିତ ହେଲା । ପୁଣି ତାହାର ପରିସର ସଂକୁଚିତ ହୋଇ ତିନିଦିନ (ତ୍ରିଦିନାତ୍ମିକା) ପୂଜାରେ ପର୍ଯ୍ୟବସିତ ହୋଇଗଲା । ସେହି ବର୍ଷମାନଙ୍କରେ ସପ୍ତସତୀ ଚଣ୍ଡୀପାଠ କରିବା ପାଇଁ ପଣ୍ଡିତମାନେ ଆସୁଥିଲେ । ଗୃହସ୍ଥ ବଂଶୀଧର ତାଙ୍କୁ ଗୁଆ ଦେଇ ଚଣ୍ଡୀପାଠ କରିବା ପାଇଁ ବରଣ କରୁଥିଲେ । ମାତ୍ର କିଛିବର୍ଷ ପରେ ଦେଖାଗଲା ଯେ ପଣ୍ଡିତମାନଙ୍କ ପାଇଁ ଚଣ୍ଡୀପାଠରେ ଆଗ୍ରହଠାରୁ ଉପାର୍ଜନ ଲାଳସା ଅଧିକ ହେଉଛି । ପୁଣି ସେମାନେ ଚଣ୍ଡୀପାଠ ପାଇଁ ଯଥେଷ୍ଟ ଅଧିକ ଅର୍ଥ ଦାବୀ କଲେ, ଯାହା ପୂରଣ କରିବା ସ୍ୱଳ୍ପ ବେତନଭୋଗୀ ଶିକ୍ଷକ ବଂଶୀଧରଙ୍କର ନଥିଲା । ତେଣୁ ସେ ନିଜେ ଚଣ୍ଡୀପାଠ ଅଭ୍ୟାସ କଲେ । ପ୍ରାୟ ମାସକ ଆଗରୁ ସେ ଚଣ୍ଡୀପାଠ ଆରମ୍ଭ କରୁଥିଲେ ଓ ତିନିଦିନ କାଳ ଶୁଦ୍ଧପୂତ ହୋଇ ଚଣ୍ଡୀ ପଠନ କରୁଥିଲେ । ଚଣ୍ଡୀପାଠ ସମୟରେ ସାଧାରଣତଃ କଥାବାର୍ତ୍ତା କରାଯାଏ ନାହିଁ । କିନ୍ତୁ ବଂଶୀଧର ଦରକାର ପଡ଼ିଲେ ଦୀପ ତେଜିବାକୁ କି ଆଉ କିଛି ଆନୁସଙ୍ଗିକ କାର୍ଯ୍ୟ କରିବାକୁ ଝିଅକୁ ଡାକୁଥିଲେ ।

କାହିଁକି ମନ୍ତ୍ରପାଠ ସମୟରେ କଥା କହୁଛନ୍ତି ବୋଲି ପ୍ରଶ୍ନ କଲେ ଉତ୍ତର ମିଳୁଥିଲା, "ମା' କ'ଣ ଜାଣିନି, ମୁଁ ମନଦେଇ ନିଷ୍ଠାର ସହିତ ଚଣ୍ଡୀପାଠ କରୁଛି ବୋଲି ।"

ଦୁର୍ଗାପୂଜା ସମୟରେ ବିମାନରେ ବସିଥିବା ସବୁ ଦେବଦେବୀ ଆଉ ଗୋଟିଏ ଖଟୁଲିରେ ବସନ୍ତି । ଦୁର୍ଗାଦେବୀ ନୂଆ ଶାଢ଼ି ଓ ଅଳଙ୍କାର ମଣ୍ଡିତା ହୋଇ ଭିନ୍ନ ବିମାନରେ ବସନ୍ତି । ତାଙ୍କ ପାଦତଳେ ଗୋଟିଏ କାଠ ଡବା ରଖାଯାଇଥାଏ । ଯାହାକୁ ମା'ଙ୍କର ହାତବାକ୍ସ ବୋଲି କୁହାଯାଏ । ସେଥିରେ ରୂପା ଟଙ୍କାଟିଏ ପଡ଼ିଥାଏ । ଆଉ ଗୋଟିଏ ଖଟୁଲିରେ ବହି, ଖାତା, ଲେଖନୀ, ତାଳପତ୍ର, ଦୁଆତ, କଲମ ଇତ୍ୟାଦି ରହେ । ଚତୁର୍ଥ ପୂଜା ସ୍ଥାନ ହେଉଛି କଳସ । ଏହିଭଳି ଚାରୋଟି ସ୍ଥାନ ପୂଜା ହୁଏ । ବାଲଧୂପ ବେଳେ ଘରେ ଥିବା କୋଠୀ, ସିନ୍ଦୁକ, ଆଲମାରୀ ପ୍ରଭୃତିକୁ ମଧ ଭିନ୍ନ ଭିନ୍ନ ଭୋଗପାତ୍ର ଅର୍ପଣ କରାଯାଏ । ମହାଷ୍ଟମୀ ଦିନ ଚଉଷଠି ପ୍ରକାର ଖାଦ୍ୟ ଭୋଗହୁଏ । ପ୍ରତ୍ୟେକ ଦିନ ଶଙ୍ଖୁଡ଼ି ଧୂପରେ ମାଛ ରନ୍ଧାଯାଏ ଓ ତାହା ଭୋଗଠାରୁ କିଞ୍ଚିତ୍ ଦୂରରେ ରଖାଯାଇ ସ୍ୱତନ୍ତ୍ର ଭାବରେ ପାଣି ଛଡ଼େଇ ଦିଆଯାଏ । ଶ୍ରୀମତୀ ଦେବୀ କୁହନ୍ତି ଯେ ଦେବୀଙ୍କ ସହିତ ମର୍ତ୍ତ୍ୟ ଭ୍ରମଣରେ ଆସିଥିବା ଚଣ୍ଡୀଚାମୁଣ୍ଡାମାନେ ସେ ମାଛ ଖାଉଥିବେ । ବିଜୟା ଦଶମୀ ଦିନ କଳସ

ବିସର୍ଜନ ହୁଏ । ଖଣ୍ଡସାହୀ ଗ୍ରାମର ସମସ୍ତଙ୍କ ଘରୁ ଗୋଟିଏ ଗୋଟିଏ କଳସ ଏକାଠି ହୋଇ ପ୍ରସେସନ କରି ଲୁଣାନଦୀ ପର୍ଯ୍ୟନ୍ତ ଯାଆନ୍ତି ଓ ଡଙ୍ଗାରେ ବସି ଘଣ୍ଟଘଣ୍ଟାର ଶବ୍ଦ ସହିତ କଳସଗୁଡ଼ିକୁ ବିସର୍ଜନ କରାଯାଏ । ସେଦିନ ମଣ୍ଡାପିଠା ଖାଇ ଠାକୁରାଣୀ ବିସର୍ଜିତ ହୁଅନ୍ତି । ଦଶହରା ଚାରିଦିନ ଚାରି ସ୍ଥାନରେ ଯେଉଁଭଳି ଠାକୁରମାନେ ବାଣ୍ଟିହୋଇ ବସନ୍ତି, ସେଥିପାଇଁ ଚାରିଟି ମଣ୍ଡଳ ମୁରୁଜରେ ଅଙ୍କାହୁଏ । ଏହି ମଣ୍ଡଳ ତିଆରିରୁ ଜଣଙ୍କର ପରମ୍ପରା, ପୂଜାପ୍ରତି ଆଗ୍ରହ ତଥା କର୍ତ୍ତବ୍ୟ ସଚେତନତା ବାରି ହୋଇପଡ଼େ ।

ଦୁର୍ଗାପୂଜା ବ୍ୟତୀତ ପ୍ରଥମାଷ୍ଟମୀ, ଶାମ୍ବଦଶମୀ, ଗୁରୁବାର ପୂଜା, ରେଖାପଞ୍ଚମୀ, ଜ୍ୟେଷ୍ଠପୂର୍ଣ୍ଣମୀ, ଦୀପାବଳୀ ପ୍ରଭୃତି ତାଙ୍କ ଘରେ ପାଳିତ ହୋଇଥିଲା । ସବୁଥିରେ ଲାଗି ରହୁଥିଲା ଶ୍ରୀମତୀ ଦେବୀଙ୍କ କୁଶଳୀ ହାତର ସ୍ପର୍ଶ । ଦୀପାବଳୀ ପରଦିନ ଅଗଣାରେ ବୋଇତ ଆଙ୍କିବା, କାର୍ତ୍ତିକ ମାସ ପଞ୍ଚକରେ ଚଉରାମୂଳେ ଚିତା ପକାଇବାରେ ଥିଲା ତାଙ୍କର ଆନନ୍ଦ ।

ଦୁର୍ଗାପୂଜା ଓ ଚଣ୍ଡୀପାଠ ତାଙ୍କ ପରିବାରର ରକ୍ତରେ ସଞ୍ଚରିତ ହୋଇଥିଲା କହିଲେ ଚଳେ । ସେ ପରିଣତ ବୟସରେ ନିଷ୍ଠାର ସହ ନିଜେ ଚଣ୍ଡୀପାଠ କରି ଦୁର୍ଗାପୂଜା କରୁଥିଲେ । ଯେତେବେଳେ ସମ୍ପୂର୍ଣ୍ଣ ଅକ୍ଷମ ହୋଇ ଭୁବନେଶ୍ୱରରେ ଆସି ତାଙ୍କ ଝିଅ ମିତୁ ଘରେ ରହିଲେ, ସେତେବେଳେ ତାଙ୍କୁ ଦେଖିବାକୁ ପର୍ଶୁରାମ ଦ୍ୱିବେଦୀ ଦିନେ ପୂଜା ଛୁଟି ମଧ୍ୟରେ ଆସିଥିଲେ । ସେତେବେଳକୁ ସେ ଶଯ୍ୟାଶାୟୀ । ହେଲେ ସ୍ମୃତିଶକ୍ତି ଓ ବାକ୍‌ଶକ୍ତି ଠିକ୍ ଥାଏ । ଶଯ୍ୟା ପାଖରେ ଭୂମିଷ୍ଠ ପ୍ରଣାମ ଜଣାଇବା ପରେ ସେ ପଚାରିଲେ, "ଚଣ୍ଡୀପାଠ କରୁଛ ? ବର୍ତ୍ତମାନ ତ ଦୁର୍ଗାପୂଜା ସମୟ ।" ଯେତେବେଳେ ନାସ୍ତିବାଚକ ଉତ୍ତର ଶୁଣିଲେ, ପାଖରେ ବସାଇ ନିଜେ ସପ୍ତସତୀ ଚଣ୍ଡୀର ତେରଟି ଯାକ ଅଧ୍ୟାୟ ଧୀରେ ଧୀରେ ପଢ଼ି, ତା'ର ଅର୍ଥ ବୁଝାଇ କଥାଟିକୁ ସମ୍ପୂର୍ଣ୍ଣ କରିଦେଲେ । ପ୍ରାୟ ଦୁଇତିନି ଘଣ୍ଟା ଲାଗିଥିବ । ଶେଷରେ ଉପଦେଶ ହେଲା କିଛି ନ ହେଲେ ଦୁର୍ଗାପୂଜା ସମୟରେ ତିନିଦିନ ଚଣ୍ଡୀପାଠ କରିବ । ଆଶ୍ଚର୍ଯ୍ୟର ବିଷୟ, ଏତେବର୍ଷ ଭାରତ, ଓଡ଼ିଶା, ଗାଁ ସଂସ୍କୃତି ଓ ଗୀତା ତଥା ଚଣ୍ଡୀପାଠ ଛାଡ଼ିଲା ପରେ ସେ ସ୍ମୃତି ଫେରିଲା, ଜାଗ୍ରତ ହେଲା ଓ ନିର୍ଭୁଲ ଭାବେ ସ୍ୱଷ୍ଟୋଚ୍ଚାରିତ ହୋଇପାରିଲା ? ଏହା ଭାବବିହ୍ୱଳ ହୋଇ କହନ୍ତି ପର୍ଶୁରାମ ଦ୍ୱିବେଦୀ ।

ଥରେ ଗାଁ ପିଲାଏ ମାର୍ଗଶୀର ଶୁକ୍ଳ ତ୍ରୟୋଦଶୀ ଗୀତାଜୟନ୍ତୀ ଦିନ ଗୋଟିଏ ସଭାର ଆୟୋଜନ କରି ବଂଶୀବାବୁଙ୍କୁ ଗୀତା ସମ୍ବନ୍ଧରେ କିଛି କହିବାକୁ ଡାକିଥିଲେ । ବଂଶୀବାବୁ ପ୍ରଥମରୁ ଅଷ୍ଟାଦଶ ଅଧ୍ୟାୟ ଯାଏ ସବୁ ଯୋଗରୁ ମୁଖ୍ୟାଂଶ ଆବୃତ୍ତି କରି, ଅର୍ଥ

କରି ସମ୍ପୂର୍ଣ୍ଣ ଗୀତାର ସନ୍ଦେଶକୁ ଏପରି ଭାବରେ ଉପସ୍ଥାପିତ କରିଥିଲେ ଯେ ପିଲାଏ ସ୍ତମ୍ଭୀଭୂତ ଓ ମନ୍ତ୍ରମୁଗ୍ଧ ପରି ହୋଇ ମଜ୍ଜି ଯାଇଥିଲେ । ପରବର୍ତ୍ତୀ କାଳରେ ୧୯୭୯ ମସିହାରେ ଫୁଲବାଣୀର ବାଲିଗୁଡ଼ାଠାରେ ଆୟୋଜିତ ଗୀତାଜୟନ୍ତୀରେ ପ୍ରବଚନ ଦେବାକୁ ତାଙ୍କୁ ନିମନ୍ତ୍ରଣ କରାଯାଇ, ସମ୍ମତି ନିଆଯାଇ ତାଙ୍କ ନାମ ନିମନ୍ତ୍ରଣ ପତ୍ରରେ ଛପାଯାଇଥିଲା । ହେଲେ ସେ ବାର୍ଦ୍ଧକ୍ୟଜନିତ ଦୁର୍ବଳତା ଯୋଗୁ ଯାଇପାରବେନି ବୋଲି ପାଞ୍ଚଦିନ ଆଗରୁ ତାରବାର୍ତ୍ତା ଦେଇ ଦୁଃଖର ସହ ଜଣାଇ ଦେଇଥିଲେ । ସେ ସମୟରେ ବିଭିନ୍ନ ସ୍ଥାନରେ ଭଞ୍ଜଜୟନ୍ତୀ ଉତ୍ସବ ହେଉଥାଏ । ବଂଶୀବାବୁ କେବେ ମୁରାରୀ ମୋହନ ଜେନା, ବିଚିତ୍ରାନନ୍ଦ କର, ଦ୍ୱିତୀୟ ଭଞ୍ଜ କବି ଗୋଲକ ଚନ୍ଦ୍ର ପ୍ରଧାନ ଓ ପଣ୍ଡିତ ପ୍ରବୋଧ ମିଶ୍ର ପ୍ରଭୃତିଙ୍କ ସହିତ ସଭାରେ ବକ୍ତୃତା ଦିଅନ୍ତି । ସେଠାରେ ବକ୍ତାମାନଙ୍କୁ ନିଜ ନିଜ ପାଣ୍ଡିତ୍ୟ ପ୍ରଦର୍ଶନର ସୁଯୋଗ ମିଳିଥାଏ । ବଂଶୀବାବୁ ଗୋଟିଏ ସଭାରେ ଭଞ୍ଜଙ୍କୁ ଏଭଳି ନୂତନ ଦୃଷ୍ଟିକୋଣରୁ ଉପସ୍ଥାପିତ କରିଥିଲେ ଯେ ଦ୍ୱିତୀୟ ଭଞ୍ଜ ଗୋଲକ ପ୍ରଧାନ ମହୋଦୟ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ । ସଂସ୍କୃତ ସାହିତ୍ୟରେ ତାଙ୍କର ବ୍ୟୁତ୍ପତ୍ତି ଥିଲା । ତେଣୁ ଭଞ୍ଜ ସାହିତ୍ୟକୁ ବୃହତ୍ତର ପୃଷ୍ଠଭୂମିରେ ଆଲୋଚନା କରିବା ତାଙ୍କ ପକ୍ଷରେ ସହଜସାଧ୍ୟ ହୋଇଥିଲା ।

ଖଣ୍ଡସାହୀରେ ଶ୍ରୀପଞ୍ଚମୀ ବେଳେ ତିନିଚା ରି ଦିନ ବାଦୀପାଲା ହୁଏ । ଶ୍ରୀ ଶ୍ରୀ ଗୋବିନ୍ଦଚନ୍ଦ୍ର ଜୀଉ ଠାକୁରଙ୍କ ସାମନାରେ ଜମିଦାର ଗୋପବନ୍ଧୁ ମିଶ୍ରଙ୍କ ପତ୍ନୀ ସରସ୍ୱତୀ ଦେବୀଙ୍କ ଦ୍ୱାରା ପ୍ରତିବର୍ଷ ଏହି ଅନୁଷ୍ଠାନ କରାଯାଏ । ସେହିପରି ଜମିଦାର ପତ୍ନୀଙ୍କ ଆଗ୍ରହରେ ପ୍ରତିବର୍ଷ ଦୋଳରେ ସାତଦିନ ବ୍ୟାପୀ ଯାତ୍ରାପାର୍ଟିମାନେ ଆସି ଯାତ୍ରା କରନ୍ତି । (ଏହି ଗୋପବନ୍ଧୁ ବାବୁଙ୍କ ବିଷୟରେ ବୈଷ୍ଣବ ପାଣି ମହାଶୟ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି) ବଂଶୀବାବୁ ନିଶ୍ଚୟ ପାଲା ଦେଖିବାକୁ ଯାଆନ୍ତି । ସେତେବେଳର ପ୍ରସିଦ୍ଧ ଗାୟକମାନେ ଥିଲେ, ହରି ନାଥ, ବୈଷ୍ଣବ ପ୍ରଧାନ ପ୍ରଭୃତି । ବଂଶୀବାବୁ ପାଲା ସରିବା ଯାଏ ବସି ଗାୟକଙ୍କ ସହିତ ଶାସ୍ତ୍ର ଅର୍ଥ କରୁଥିଲେ ଓ ସଂଗୀତ (ପରିବେଶ ଉପଯୋଗୀ) ଗାଇବାକୁ ଅନୁରୋଧ କରୁଥିଲେ । ବେଳେ ବେଳେ ମିତୁ ମଧ୍ୟ ନନାଙ୍କ ସାଙ୍ଗରେ ସେହି ରାତିରେ ପାଲା ଦେଖି ଫେରି ତା' ବୋଉଠାରୁ ଗାଳି ଶୁଣୁଥିଲା ।

କିନ୍ତୁ ବଂଶୀବାବୁ ରାତି ଅନିଦ୍ରା ହୋଇ ଯାତ୍ରା ଦେଖିବାକୁ ପସନ୍ଦ କରୁନଥିଲେ । ମିତୁକୁ ଏଥିପାଇଁ ଛାଡ଼ିବାକୁ ମଧ୍ୟ ତାଙ୍କର ଇଚ୍ଛା ନଥାଏ । କିନ୍ତୁ ନୂଆବୋଉ (ଗୋପବନ୍ଧୁ ମିଶ୍ର ବଂଶୀବାବୁଙ୍କ ବଡ଼ଭାଇ ହିସାବ) ସରସ୍ୱତୀ ଦେବୀ ମିତୁକୁ ଡକାଇ ପଠାନ୍ତି । ତା'ପରେ ବଂଶୀବାବୁ ଆଉ ମନାକରି ପାରନ୍ତି ନାହିଁ । ସାତଦିନରୁ ପ୍ରାୟ ଦୁଇଦିନ ମିତୁ ଯାତ୍ରା

ଦେଖିବାକୁ ଯାଏ । କିନ୍ତୁ ଡେରିଯାଏ ଶୋଇଲେ ସେ ଖୁବ୍ ବିରକ୍ତି ହୁଅନ୍ତି । ରାତି ଅନିଦ୍ରା ଥିଲେ ମଧ୍ୟ ସକାଳୁ ଉଠି ଗାଧୋଇ ଖାଇବା ପରେ ବିଶ୍ରାମ ନେବା ଦରକାର ବୋଲି ସେ କହନ୍ତି । ମିତୁ ମଧ୍ୟ ନନାଙ୍କ କଥା ମାନିଥାଏ । ନନା ସକାଳୁ ବାଡ଼ିଦୁଆର ଖୋଲି ଝାଡ଼ା ଗଲା ବେଳକୁ ଝଞ୍ଜିର ଶବ୍ଦ ଶୁଣି ସେ ଉଠିପଡ଼େ । ଯଦି ଯାତ୍ରା ଦେଖିବା ପରଦିନ ଉଠି ନ ପାରେ, ବୋଉ ତା'ପାଇଁ ନନାଙ୍କୁ ବୁଝାଇ କହନ୍ତି । ପାଲାକାରମାନେ କିନ୍ତୁ ବଂଶୀବାବୁ ଯାଇନଥିଲେ ଡକାଇ ପଠାନ୍ତି । ତାଙ୍କୁ ଆଦର କରି ଶ୍ରୋତା ଭାବରେ ବସାଇ ନିଜର ପାଲା ପରିବେଷଣ କରିବାକୁ ସୁଖ ପାଆନ୍ତି ।

**ଗୁରୁମନ୍ତ୍ର ପ୍ରଦାନ :**

ବଲ୍ଲୀବୋଉଙ୍କର ବହୁତ ଇଚ୍ଛା ଥାଏ ପୁରୀ ଯିବେ ଓ ସ୍ୱାମୀ ସ୍ତ୍ରୀ ଉଭୟ ଗୁରୁମନ୍ତ୍ର ଗ୍ରହଣ କରିବେ । ଗୁରୁମନ୍ତ୍ର ଗ୍ରହଣ ନ କଲେ ପୂଜାପାଠ ସବୁ ବେକାର ବୋଲି ତାଙ୍କର ଧାରଣା ଥାଏ । ବଲ୍ଲୀ ବାରମ୍ବାର ବୋଉର ଆଗ୍ରହ ଦେଖି ତା' ନନାଙ୍କୁ କହେ । ବଂଶୀବାବୁ କିନ୍ତୁ ପ୍ରତିଥର ଏ କଥାଟି ଏଡ଼ାଇ ଯାଆନ୍ତି । ପୁରୀ ଯିବାପାଇଁ ଟଙ୍କା ପଇସା ଯୋଗାଡ଼ ହୁଏ; ମାତ୍ର କାର୍ଯ୍ୟକ୍ରମ ସ୍ଥଗିତ ରହେ । ବଲ୍ଲୀ ମଧ୍ୟ ଏକାଧିକ ଥର ଏଥିପାଇଁ ଟଙ୍କା ପଠାଏ । କିନ୍ତୁ ଶେଷରେ ବଂଶୀବାବୁ ନିଜର ଇଷ୍ଟଦେବ ଶ୍ରୀରାମକୃଷ୍ଣ ପରମହଂସଙ୍କ ପରି ନିଜ ପତ୍ନୀଙ୍କୁ ଦୀକ୍ଷା ଦିଅନ୍ତି । ମା' ଶାରଦାଙ୍କୁ ରାମକୃଷ୍ଣ ପୂଜା କରି ମା' ଭାବରେ ସାମ୍ବୋଧନ କରିଥିଲେ ବୋଲି ଆମେ ଜାଣୁ; ମାତ୍ର ବଂଶୀଧର ନିଜର ପତ୍ନୀ ଶ୍ରୀମତୀ ଦେବୀଙ୍କୁ ଶିଷ୍ୟା ଭାବରେ ଗ୍ରହଣ କରିଥିଲେ । ନିଜର ଗୁରୁମନ୍ତ୍ର (ଯାହା ସେ ଲକ୍ଷ୍ମୀଦେବୀଙ୍କଠାରୁ ପ୍ରାପ୍ତ ହୋଇଥିଲେ) ପତ୍ନୀଙ୍କୁ ପ୍ରଦାନ କରି ନିଜର ଦାୟିତ୍ୱ ନିର୍ବାହ କରିଥିଲେ । ଏହା ଥିଲା ପ୍ରାୟ ୧୯୭୫ ମସିହା ବେଳର ଘଟଣା । ଶ୍ରୀମତୀ ଦେବୀ ଭୁବନେଶ୍ୱର ଆସିବା ପରେ କେତେଥର ପୁରୀ ଯାଇଛନ୍ତି; କିନ୍ତୁ ସ୍ୱାମୀଙ୍କ ସହିତ ପୁରୀ ମନ୍ଦିର ଯିବା ଇଚ୍ଛାଟି ତାଙ୍କର ଶେଷ ପର୍ଯ୍ୟନ୍ତ ପୂରଣ ହୋଇପାରି ନାହିଁ । ସେହି ଅବସୋସ ଧରି ସେ ମୃତ୍ୟୁବରଣ କରିଛନ୍ତି ।

ପ୍ରତିଦିନ ଶ୍ରୀମତୀ ଦେବୀ ଅଭ୍ୟାସ କରି ଭାଗବତ ପଢ଼ନ୍ତି । ସୁଲଳିତ କଣ୍ଠରେ ଚମ୍ପୂ, ଚଉପଦୀ, ଭଜନ ଗାଇପାରନ୍ତି । ଏଥିସହିତ ବୈଷ୍ଣବ ପାଣି ଓ ବାଳକୃଷ୍ଣ ମହାନ୍ତିଙ୍କ ଗୀତାଭିନୟର ସଂଗୀତମାନ ମଧ୍ୟ ଗାଆନ୍ତି । ସେ ଭଲ ବଙ୍ଗଳା ପଢ଼ିପାରୁଥିଲେ । (ସେ ପିଲାଥିବା ସମୟରେ ବିଦ୍ୟାଳୟମାନଙ୍କରେ ବଙ୍ଗଳା ପଢ଼ିବା ଥିଲା ବାଧ୍ୟତାମୂଳକ), ପ୍ରତି ଗୁରୁବାର ସେ ମୁଣ୍ଡ ଧୋଇ ଧଳାଶାଢ଼ି ପିନ୍ଧନ୍ତି ଓ ଅଳତା ମଧ୍ୟ ଲଗାନ୍ତି । ଗୋଟିଏ

କଥାରେ କହିଲେ, ଶ୍ରୀମତୀ ଦେବୀ ହିଁ ଥିଲେ ବଂଶୀଧରଙ୍କ ଗୃହର ଲକ୍ଷ୍ମୀ । ତାଙ୍କ ସୁପରିଚାଳନା ଯୋଗୁ ବଂଶୀଧରଙ୍କୁ ଅଭାବ ବାଧୁ ନଥିଲା ।

**ଭକ୍ତି ଓ ଶକ୍ତିର ସମନ୍ୱିତ ବ୍ୟକ୍ତିତ୍ୱ :**

ବିଦେଶ ଯିବା ପୂର୍ବରୁ ସାମ୍ୟବାଦୀ ଚେତନାରେ ପରିପୁଷ୍ଟ ହୋଇଥିଲା ବଂଶୀଧରଙ୍କ ବ୍ୟକ୍ତିତ୍ୱ । ତାଙ୍କଦ୍ୱାରା ସଂପାଦିତ 'ଯୁବକ' ବିଦେଶୀ ସରକାରଙ୍କର କ୍ରୂର ଚକ୍ଷୁରେ ପଡ଼ି ବାରମ୍ବାର ବାଜ୍ୟାପ୍ତ ହୋଇଥିଲା । ବିଦେଶରେ ଥିବାବେଳେ ସେ ସାନଭାଇ ଦୁଆରୀଙ୍କୁ ଚିଠି ଲେଖି ଲାବଣ୍ୟବତୀ, ବୈଦେହୀଶବିଳାସ, ଭାଗବତ ପ୍ରଭୃତି ମଗାଇ ପଢୁଥିଲେ । ପୁଣି ବିଦେଶଯିବା ପୂର୍ବରୁ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କ ପ୍ରତି ଆକୃଷ୍ଟ ଥିଲେ । ପ୍ରତିବର୍ଷ କଳ୍ପତରୁ ଉତ୍ସବ ଅର୍ଥାତ୍ ଇଂରାଜୀ ନବବର୍ଷର ପ୍ରଥମ ଦିନ ସେ ନିଶ୍ଚୟ କଟକର ରାମକୃଷ୍ଣ ମଠକୁ ଯାଉଥିଲେ । ବିଦେଶରୁ ଫେରିବା ପରେ ବିବେକାନନ୍ଦ ଶତବାର୍ଷିକୀ ଉପଲକ୍ଷେ ଗାଁ ସ୍କୁଲରେ ଯେଉଁ ବିରାଟ ସଭା ଅନୁଷ୍ଠିତ ହେଉଥିଲା, ସେଥିପାଇଁ ସେ ସ୍ୱାଗତ ସଂଗୀତ ଲେଖିଥିଲେ । ସେ ବର୍ଷ କଟକ ଜିଲ୍ଲାର ସବୁ ସ୍କୁଲକୁ ନେଇ ବିବେକାନନ୍ଦଙ୍କ ସମ୍ପର୍କୀୟ ପ୍ରବନ୍ଧ ପ୍ରତିଯୋଗିତା ହୋଇଥିଲା, ଯେଉଁଥିରେ ତାଙ୍କ ଝିଅ ମିତୁ ମଧ ପ୍ରଥମ ହୋଇଥିଲା; କିନ୍ତୁ ସାଲେପୁର ଯାଇ ସେ ତା'ର ପୁରସ୍କାର ଆଣିପାରି ନଥିଲା ।

ଗୃହର ଇଷ୍ଟଦେବୀ ମା' ଦୁର୍ଗାଙ୍କୁ ନେଇ ସେ ଅନେକ ସଂଗୀତ ଲେଖିଥିଲେ । ଠାକୁରାଣୀ ।ଯ ଚିର ଜାଗ୍ରତ, ଏକଥା ସେ କେବଳ କଥାରେ କହୁ ନଥିଲେ ତାଙ୍କ ଆଚରଣରେ ମଧ ତାହା ପ୍ରତିଫଳିତ ହେଉଥିଲା । ମାଆଙ୍କୁ ଭଜିଲେ ବାପାଙ୍କୁ ପାଇବା ସହଜ ହେବ ବୋଲି ସେ ବାରମ୍ବାର କହୁଥିଲେ । ଅସମ୍ଭବ ନିଷ୍ଠା ନେଇ ସେ ଦଶହରାରେ ଚଣ୍ଡୀପାଠ କରୁଥିଲେ, କାରଣ ଅନ୍ୟ ପଣ୍ଡିତମାନେ ଶ୍ରୀ ଶ୍ରୀ ଚଣ୍ଡୀପାଠ ପାଇଁ ଯେଉଁ ବ୍ୟବସାୟିକ ମନୋଭାବ ପୋଷଣ କରୁଥିଲେ, ତାହା ବଂଶୀଧରଙ୍କ ମନକୁ ପାଉନଥିଲା । ଭକ୍ତି କହିଲେ କିଛି ଉପଚାର ନୁହେଁ, ଆଡ଼ମ୍ବର ନୁହେଁ ବରଂ ସମର୍ପଣର ଭାବନା, ଏ କଥା ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ଶ୍ରୀରାମକୃଷ୍ଣ ବିବେକାନନ୍ଦଙ୍କ ପ୍ରଶ୍ନର ଉତ୍ତରରେ ଯାହା କହିଥିଲେ, ତାହା ହିଁ ଥିଲା ତାଙ୍କପାଇଁ ଈଶ୍ୱର ଉପଲବ୍ଧି ଶ୍ରେଷ୍ଠ ଉପାୟ । ନାସ୍ତିକ ନରେନ୍ ଯେଉଁଦିନ ଶ୍ରୀରାମକୃଷ୍ଣଙ୍କୁ ପଚାରିଥିଲେ, 'ଆପଣ ଠାକୁରଙ୍କୁ ଦେଖିଛନ୍ତି ?' ରାମକୃଷ୍ଣ ପରମହଂସଙ୍କ ଆସ୍ତିସୂଚକ ଉତ୍ତର ଶୁଣି ସେ ପୁନର୍ବାର ପଚାରିଥିଲେ, 'ତାଙ୍କ ସହିତ କଥା କହିଛନ୍ତି ?' ଉତ୍ତରରେ ଗୁରୁ କହିଥିଲେ, "ହଁ ତୁମକୁ ଯେଉଁଭଳି ଦେଖୁଛି ଓ କଥା କହୁଛି ଠିକ୍ ସେମିତି ମୁଁ ଈଶ୍ୱରଙ୍କୁ ଦେଖିଛି ଓ କଥାବାର୍ତ୍ତା ମଧ କରିଛି ।" ତେଣୁ

ନିଜ ପରିବାର ବିଶେଷକରି ତାଙ୍କ ଝିଅକୁ ସେ ଏହିଭଳି ଈଶ୍ୱରଙ୍କ ଉପସ୍ଥିତ ସମ୍ପର୍କରେ ବାରମ୍ୱାର ବୁଝାଉଥିଲେ । ବିଶ୍ୱର କୋଣ ଅନୁକୋଣରେ ସେହି ଈଶ୍ୱରଙ୍କ ସତ୍ତାକୁ ଉପଲବ୍ଧି କରିବା ହିଁ ମନୁଷ୍ୟ ଜୀବନର ସର୍ବୋତ୍ତମ ସାର୍ଥକତା ।

ବଂଶୀଧର ଶ୍ରୀରାମକୃଷ୍ଣଙ୍କର ଅନୁଗତ ଥିଲେ ବୋଲି ବାରମ୍ୱାର କୁହାଯାଇଛି । ଶ୍ରୀରାମକୃଷ୍ଣ ସେବକ ସମାଜ ଓ ଶ୍ରୀରାମକୃଷ୍ଣ ମିଶନ ସ୍କୁଲରୁ ତାଙ୍କର ଛାତ୍ରଜୀବନର ମୂଳଦୁଆ ଆରମ୍ଭ ହୋଇଥିଲା । ବିଦେଶରୁ ଫେରିବା ପରେ ପ୍ରାୟ ୧୯୫୭ଠାରୁ ସେ କଟକର ଶ୍ରୀରାମକୃଷ୍ଣ ।ସବକ ସମାଜ ସହିତ ପୁନର୍ବାର ସଂପୃକ୍ତ ହୋଇଗଲେ । କଳ୍ପତରୁ ଉତ୍ସବର ପୂର୍ବଦିନର ଅଧିବାସ କୀର୍ତ୍ତନ ଓ ଉତ୍ସବ ଦିନର ପ୍ରାର୍ଥନା ସଂଗୀତ ଗାନ କଲେ । ସେତେବେଳେ କୃଷ୍ଣଚନ୍ଦ୍ର ସେନଗୁପ୍ତ ହିଁ ରାମକୃଷ୍ଣଙ୍କ କଳ୍ପତରୁ ଉତ୍ସବର ସଂଗୀତମାନ ରଚନା କରୁଥିଲେ । ସେ ଥିଲେ ବଂଶୀଧରଙ୍କର ଶିକ୍ଷାଗୁରୁ । କୃଷ୍ଣଚନ୍ଦ୍ର ସେନଗୁପ୍ତ ମୋ ବାଇଧନ କବି ଭାବରେ ଓଡ଼ିଆ ସାହିତ୍ୟରେ ବେଶ୍ ପରିଚିତ । ଥରେ ବଂଶୀଧର ସ୍ୱପ୍ନ ଦେଖିଲେ ଯେ କୃଷ୍ଣଚନ୍ଦ୍ର ସେନଗୁପ୍ତ ତାଙ୍କୁ କହୁଛନ୍ତି, "ତୁମକୁ କଳ୍ପତରୁ ଉତ୍ସବ ପାଇଁ ଗୀତ ଲେଖିବାକୁ ହେବ ।"– (ଏକଥା ସେ ବାରମ୍ୱାର କହିଥାଆନ୍ତି) । ତାଙ୍କର ଦେହାନ୍ତରେ ବଂଶୀଧର ଭାବବିହ୍ୱଳ ହୋଇ ସଂଗୀତ ଲେଖିଛନ୍ତି—

"ମନରେ ପଡ଼େ ମୋର ବାଲ୍ୟ ଜୀବନ
ଯେବେ ମୁଁ ପଢୁଥିଲି 'ମୋ ବାଇଧନ'
ଉତ୍କଣ୍ଠା ହେଲା
କୃଷ୍ଣବାବୁଙ୍କୁ ଥରେ ଦେଖନ୍ତି ଭଲା ।
ବିଦ୍ୟାର୍ଥୀ ହୋଇ କଟକକୁ ଆସିଲି
ଭକତି ଭରେ ତାଙ୍କ ପାଖେ ବସିଲି ରେ
ତାଙ୍କରି ବାଣୀ
ଅଲିଭା ଗାର ମନେ ଦେଇଛି ଟାଣି ।
ତାଙ୍କରି ତିରସ୍କାର ସ୍ନେହ ମିଶ୍ରିତ
ପ୍ରସ୍ତର ତଳେ ଯଥା ସ୍ୱଚ୍ଛ ସରିତ ରେ
ଧୋଇ ଦେଇଛି
ବହୁ ଛାତ୍ର ଜୀବନୁଁ ଦୁଷ୍କୃତି ପୋଛି ।"

ଏହି ସଂଗୀତ ଭିତରେ ଆମେ ଜଣେ ଛାତ୍ରଙ୍କୁ ଦେଖୁ, ଯେ ନିଜ ଜୀବନକୁ ଆଲୋକିତ କରିଥିବା ଓ ବହୁ ଛାତ୍ରଙ୍କୁ ଆଲୋକର ପଥ ଦେଖାଇଥିବା ଗୁରୁଙ୍କୁ ନିଜର

ଭକ୍ତି ପୁଷ୍ପାଞ୍ଜଳି ଅର୍ପଣ କରୁଛନ୍ତି । ଭକ୍ତିର ଅପୂର୍ବ ଶକ୍ତି ସମ୍ପର୍କରେ ସେ ଅବହିତ ଥିଲେ । ପଥର ତଳେ ଥିବା ସ୍ୱଚ୍ଛ ନୀରା ତଟିନୀ ଭଳି ତାଙ୍କର ଚେତନା ସର୍ବଦା ଊର୍ଦ୍ଧ୍ୱାୟିତ ଥିଲା । ଅନେକ ଛାତ୍ରଙ୍କ ଗୁରୁ ହୋଇ ମଧ୍ୟ ତାଙ୍କ ଭିତରେ ଛାତ୍ରଟିଏ ବଂଚି ରହିଥିଲା ।

**କବିତ୍ୱ ଓ ପରମ୍ପରାନୁରକ୍ତି :**

ବଂଶୀଧର ଅନେକ କବିତା ଲେଖିଛନ୍ତି, ଯେଉଁଥିରୁ କେତେକ ବିସ୍ମୃତି ଗର୍ଭରୁ ଉଦ୍ଧାର କରାଯାଇଛି । ସେଗୁଡ଼ିକୁ ଆମେ ତିନି ଭାଗରେ ବିଭାଜନ କରିପାରିବା । ପ୍ରଥମ ବିଭାଗରେ ଶ୍ରୀରାମକୃଷ୍ଣଙ୍କ କଳ୍ପତରୁ ଉତ୍ସବ ଓ ଅଧିବାସ ଉତ୍ସବପାଇଁ ରଚିତ ସଂଗୀତ । ସାଧାରଣତଃ ବଂଗଳାଶ୍ରୀ, ରାମକେରୀ, ଆଷାଢ଼ଶୁକ୍ଳ, ଶଙ୍କରାଭରଣ ଭଳି ପାରମ୍ପରିକ ସ୍ୱରରେ ଏଗୁଡ଼ିକ ରଚିତ । ଅନ୍ୟ କେତୋଟି ବଂଗଳା ଭାଷା ଓ ଓଡ଼ିଆ ଅକ୍ଷରରେ ସେହି ଶ୍ରୀରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ଉଦ୍ଦେଶ୍ୟରେ ରଚିତ । ଦ୍ୱିତୀୟ ଭାଗରେ ଜଗନ୍ନାଥ ବିଦ୍ୟାପୀଠର ବାର୍ଷିକ ଉତ୍ସବ । କୌଣସି ଶିକ୍ଷକଙ୍କ ବିଦାୟ ଉତ୍ସବ ପ୍ରଭୃତିକୁ ଅନ୍ତର୍ଭୁକ୍ତ କରାଯାଇପାରେ । ଏଥିସହିତ କିଛି ବିବାହ ଗୀତିକାକୁ ମଧ୍ୟ ସ୍ଥାନିତ କରାଯାଉ । ତୃତୀୟ ବିଭାଗଟି ଏ ସବୁଠାରୁ ଭିନ୍ନ ଓ ଗୁରୁତ୍ୱପୂର୍ଣ୍ଣ । ବିଜ୍ଞାନର ଛାତ ତଥା ଶିକ୍ଷକ ବଂଶୀଧର ତାଙ୍କ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ପତ୍ର, ଫଳ, କାଣ୍ଡ ପ୍ରଭୃତିର ଶ୍ରେଣୀବିଭାଗ, ତାର ଇଂରାଜୀ ନାମ ପ୍ରଭୃତିକୁ ସଂଗୀତ ଆକାରରେ ଲେଖିଥିଲେ, ଯାହା ସେ ସମୟର ଛାତ୍ରଛାତ୍ରୀମାନଙ୍କ ନିମିତ୍ତ ବେଶ୍ ଉପଯୋଗୀ ହୋଇଥିଲା । ସଂଗୀତର ଆବେଦନକୁ ନେଇ ଏଗୁଡ଼ିକୁ ମନେ ରଖିବା ସହଜ ହେଉଥିଲା । ଏ ସବୁକୁ ଏକତ୍ର କରି ଏକ କ୍ଷୁଦ୍ର ଆଲୋଚନା—ଏହା ସହିତ ତାଙ୍କର ଏକ ଅନୂଦିତ କବିତାକୁ ଏହି ପର୍ଯ୍ୟାୟରେ ରଖାଯାଇଛି ।

**ଶ୍ରୀରାମକୃଷ୍ଣ ଓ ବିବେକାନନ୍ଦଙ୍କ ସମ୍ପର୍କୀୟ ସଂଗୀତ :**

ଏହି ପ୍ରର୍ଯ୍ୟାୟରେ ପ୍ରାୟ ୧୫/୨୦ ସଂଗୀତ ମିଳିଛି, ଯହିଁରେ କବିଙ୍କର ଆସ୍ଥା ଓ ବିଶ୍ୱାସ ସହିତ ବିଶ୍ୱମାନବର ଆର୍ତ୍ତି ଏକୀଭୂତ ହୋଇଯାଇଛି । ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଅବତାର ପୁରୁଷ । ସେ ଯୀଶୁ, ମହମ୍ମଦ, ଲାଓସେ, ବ୍ୟାସ, ବାଲ୍ମିକୀ, କପିଳ, ଶଂକର, ନାନକ ଓ କବୀର ବେଶରେ ବାରମ୍ବାର ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ଏବେ ସେ ରାମକୃଷ୍ଣ ନାମରେ ଜନ୍ମ ନେଇ ଦକ୍ଷିଣେଶ୍ୱରକୁ ନିଜର ଲୀଳାଭୂମି ଭାବରେ ବାଛି ନେଇଛନ୍ତି । ସେ ହିଁ ଏକାଧାରରେ ରାମ ଓ କୃଷ୍ଣ ।

"ରାମର କୋଦଣ୍ଡ କୃଷ୍ଣ ପାଞ୍ଚଜନ୍ୟେ
ତଥାଗତ ଧର୍ମ ଚକ୍ର ପ୍ରବର୍ତ୍ତନେ
ଈଶାର ପର୍ବତ ଶିଖର ନିର୍ଘୋଷେ
ଛୁଟିଛି ସୁଧାର ଧାର
ଛାଡ଼ି ସଂସାର ଜଂଜାଳ—
ବାଞ୍ଛା କଳ୍ପତରୁ ସ୍ନିଗ୍ଧ ଛାୟାତଳେ, କାଲି ହୋଇଯିବା ମେଳ ।"
(ଅଧିବାସ କୀର୍ତ୍ତନ, ତା ୧।୧।୧୯୭୬)

କଳ୍ପତରୁ ସକଳ କାମନା ସାର୍ଥକ କରିପାରନ୍ତି । ତେଣୁ କଳ୍ପତରୁ ଉତ୍ସବର ପବିତ୍ର ଲଗ୍ନରେ ସେ ପ୍ରାଣଖୋଲି ମହାପୁରୁଷଙ୍କ ଦିବ୍ୟ ଚେତନାକୁ ଆବାହନ କରିଛନ୍ତି । ସେ ଗୁହକର ବନ୍ଧୁ, ସୁଦାମା, ଦାସିଆ ବାଉରୀ ଓ ସାଲବେଗର ମଧ ବନ୍ଧୁ । ଦୀନବନ୍ଧୁ ନାମ ତାଙ୍କର ସାର୍ଥକ ହୋଇଛି । ମାତ୍ର ତାଙ୍କ ପାଦତଳେ ପହଞ୍ଚିବାକୁ ହେଲେ ସକଳ ମୋହମାୟା ଅହଂକାରକୁ ତ୍ୟାଗ କରିବାକୁ ହେବ । ଏଠାରେ କବି ବଂଶୀଧର ଯେଉଁ ତଥ୍ୟ ଉପସ୍ଥାପନ କରିଛନ୍ତି, ତାହା ବେଶ୍ ଯୁକ୍ତିସଂଗତ ତଥା ଆଧୁନିକ ମାନସିକତା ସଂଜାତ ।

"ବର୍ହିମୁଖୀ ଜିତେନ୍ଦ୍ରିୟ ହୁଏ ଦଶାନନ
ଅନ୍ତର୍ମୁଖୀ ହେଲେ ହୁଏ ଦଶରଥ ଜାଣ
ମନରେ ରଖରେ ରଥି
କରିପାରିଲେ ଚିହ୍ନିବୁ ସେହି ଦାଶରଥି ।" (୧।୧।୧୯୮୧)

ଯଦି ମଣିଷର ମନ ବହିର୍ମୁଖୀ ହୁଏ, ସେ ଦଶଶିର ରାବଣରେ ପରିଣତ ହୁଏ; ମାତ୍ର ଅନ୍ତର୍ମୁଖୀ ହେଲେ ସେ ହୁଏ ଦଶରଥ । ଯେଉଁଠି ଦଶରଥ ରାଜା, ସେ ରାଜ୍ୟ ଅବଶ୍ୟ ଯୁଦ୍ଧବିହୀନ ଅଯୋଧ୍ୟା ହେବ । ଯେଉଁ ରାଜ୍ୟରେ ରାବଣ ରାଜା, ସେ ରାଜ୍ୟରେ ସମୃଦ୍ଧି ଅବଶ୍ୟ ଅଛି; କିନ୍ତୁ ତାହା ଲଙ୍କା । ପୁଣି ସେ କହନ୍ତି ଯେ ଯଦି ପ୍ରଭୁଙ୍କର ଅହେତୁକୀ କୃପା ହେବ, ତେବେ ଅବଶ୍ୟ ସଂସାରର ମୋହମାୟା ଅଦିନ କୁହୁଡ଼ି ପରି ଅପସରି ଯିବ ।

ବଂଶୀଧର ସର୍ବଦା ଦୁଃଖ କରୁଥିଲେ ଯେ ସଂସାରରେ ସତ୍ୟନ୍ୟାୟର ରାଜତ୍ୱ ଶେଷ ହୋଇଛି । ସମାଜରେ ବିଭିନ୍ନ ବ୍ୟକ୍ତିବିଶେଷ ଓ ସେମାନଙ୍କର କ୍ରିୟାକଳାପ ଦେଖି ସେ ଅସୁଖୀ ହୋଇଥିଲେ । ତେଣୁ ଶ୍ରୀରାମକୃଷ୍ଣଙ୍କ ପାଇଁ ଜଣାଣ ଲେଖିଲାବେଳେ ସେ ବ୍ୟାକୁଳରେ ଗାଆନ୍ତି—

"ଦେଖି ଏ ଦୁନିଆଁ ଦଶା ମନୁ ଉଡ଼େ ଆଶା
କହିବାକୁ ଏ ଦୁର୍ଗତି ମୁଖେ ନାହିଁ ଭାଷା
ଘେନି ଦାସ ଟୀକା ଭାଲେ
'ସତ୍ୟ' 'ନ୍ୟାୟ' ଅବରୁଦ୍ଧ 'ଅର୍ଥ' କାରାଗାରେ ।"

(ଅପ୍ରକାଶିତ ସଂଗୀତ)

ଏସବୁ ସତ୍ୱେ ମଧ୍ୟ ସେ ନିରାଶ ନୁହନ୍ତି । ଯେଉଁଠି ଅହରହ ଦୟାର ସମୀର ବହୁଛି, ସେଠାରେ କେବଳ ଶ୍ରଦ୍ଧାର ପାଲ ଟାଣିଦେଇ ମନର ମଙ୍ଗ ଧରି ରହିଲେ ହିଁ ଜଣେ ଭବସାଗର ପାରି ହୋଇପାରିବ । କିନ୍ତୁ ମନର ମଙ୍ଗ ଧରିବା ସହଜ ନୁହେଁ । ସେଥିପାଇଁ ସାଧନା ତପସ୍ୟା ଓ ସତ୍‌ଗୁରୁ କୃପା ଲୋଡ଼ା

ସଂଗୀତ ଭିତରେ ସେ ଭାରତୀୟ ପାରିବାରିକ ଜୀବନର ଐଶ୍ୱର୍ଯ୍ୟର ଉଦ୍‌ଘୋଷଣା କରିଛନ୍ତି । ବ୍ୟାସ ବାଲ୍ମିକୀ କପିଳଙ୍କ ତ୍ୟାଗ ତପସ୍ୟା କଥା କହି ସେ ନିରବ ରହିନାହାନ୍ତି । ଭାରତୀୟ ନାରୀର ଆଦର୍ଶ ଭାବେ ଘୋଷା, ଜାନକୀ, ସାବିତ୍ରୀ, ଗାର୍ଗୀ, ଦମୟନ୍ତୀ, ଅନସୂୟା, ଲୋପାମୁଦ୍ରା, ଶୈବ୍ୟା, ଅରୁନ୍ଧତୀଙ୍କ କଥା ମଧ୍ୟ ଉଲ୍ଲେଖ କରିଛନ୍ତି । ତାଙ୍କର କାମନା—

"ଭାରତ ଭୂମିର ଯେତେ ବନିତା
କରନ୍ତୁ ଆଦର୍ଶ ସାବିତ୍ରୀ ସୀତା
ନରର ଆଦର୍ଶ ହେଉ ପିନାକୀ
ନିର୍ଦ୍ଦେଶିଛ ବଜ୍ର ଗମ୍ଭୀରେ ଡକେ
ଉଠିବ ନବ ଭାରତ
ଶ୍ରମିକ କୃଷକ ଶ୍ରମ ଲଙ୍ଗଳର
ଗୌରବେ ହୋଇ ଭୂଷିତ ।"

(୧୯୬୩ରେ ବିବେକାନନ୍ଦ ଶତବାର୍ଷିକୀ ଉପଲକ୍ଷେ ରଚିତ)

ଏହି ପଦ ଭିତରେ ଆମେ କେବଳ ନାରୀପୁରୁଷଙ୍କରଆଦର୍ଶ ଓ ତ୍ୟାଗ କଥା ଦେଖୁନାଁ, ତା' ସହିତ ଶ୍ରମିକ ଓ କୃଷକ ପାଇଁ ସହାନୁଭୂତି ଓ ସମ୍ମାନ ଦେଖୁଥାଉ । ଯେଉଁଦିନ ନବୀନ ଭାରତ ପୁନର୍ବାର ଜାଗ୍ରତ ହେବ ସେ କୃଷକ ଓ ଶ୍ରମିକର ସ୍ୱେଦର ଗୌରବରେ ଅବଶ୍ୟ ଭୂଷିତ ହେଇଥିବ । ଏହା ତାଙ୍କର ସାମ୍ୟବାଦୀ ମାନସିକତାର ପରିଚାୟକ ।

ତାଙ୍କର ବିଶ୍ୱାସ ଥିଲା ଯେ ସ୍ୱର୍ଗରେ ସମସ୍ତେ ଦେବତା; କିନ୍ତୁ ସର୍ବତ୍ୟାଗୀ, ଶ୍ମଶାନବାସୀ ଶିବ ହିଁ ଏକମାତ୍ର ମହାଦେବ । ତେଣୁ ତ୍ୟାଗସଂଜାତ ସମ୍ମାନ ହିଁ ଚିରସ୍ଥାୟୀ ହୋଇଥାଏ । ଏଥିସହିତ ବାତ୍ୟା, ମରୁଡ଼ି, ଭୂମିକମ୍ପ, ଦାରିଦ୍ର୍ୟ, ଅଭୁକ୍ତ ଶିଶୁର କ୍ରନ୍ଦନ ମଧ୍ୟ ତାଙ୍କୁ ବେଶ୍ ଆଲୋଡ଼ିତ କରିଛି ।

ଏସବୁ ସଂଗୀତ ପାରମ୍ପରିକ ସ୍ୱରରେ ଓ ସ୍ଥାନୀୟ ଛାତ୍ରଛାତ୍ରୀଙ୍କ ଆଗ୍ରହ ଫଳରେ ନିର୍ଦ୍ଦିଷ୍ଟ ଦିନମାନଙ୍କରେ ଗାନ କରାଯାଇଛି । ପୁଣି କଳ୍ପତରୁ ଗୀତିକାରେ ପ୍ରକାଶିତ ହୋଇ ଶ୍ରୀରାମକୃଷ୍ଣ ଆଶ୍ରିତ ଭକ୍ତମାନଙ୍କ ନିକଟରେ ପହଞ୍ଚିଛି । କିନ୍ତୁ ଏ ସବୁର ଦୀର୍ଘସ୍ଥାୟୀ ପ୍ରଭାବ ଯେ ଥାଇପାରେ ବା ଥିବା ସମ୍ଭବ ତାହା ଆକଳିତ ହୋଇ ନାହିଁ । ଦୀର୍ଘଦିନ ଧରି ସଂଗୀତ ରଚନାରେ ନିମଗ୍ନ ଏହି କବି ମଧ୍ୟରେ ଭକ୍ତ, ଯୋଗୀ, ବିଜ୍ଞାନୀ ଓ ଦାର୍ଶନିକ ଏକୀଭୂତ ହୋଇ ନିଜର ଚିନ୍ତାଧାରାକୁ ପାଠକ/ଶ୍ରୋତାଙ୍କ ନିକଟରେ ପହଞ୍ଚାଇବାର ଯତ୍‌ପରୋନାସ୍ତି ପ୍ରୟାସ କରିଛନ୍ତି ।

କେବଳ ଭକ୍ତି ଓ ସମର୍ପଣ ନୁହେଁ ବରଂ ବୈଜ୍ଞାନିକ ଯୁକ୍ତିଶୀଳତା ନେଇ କିଛି ସଂଗୀତ ରଚନା କରିଛନ୍ତି । ଯେମିତି ୧-୧-୧୯୭୬ରେ ରଚିତ ସଂଗୀତର ପଦଟିଏ—

"ନିରାଶ ହୁଅନା ତୁ ପାଗଳା ମନ
ସରାଗେ ନିର୍ଗୁଣ ହୁଅଇ ସଗୁଣ
ହିମ ପରଶରେ ଅନନ୍ତ ଜଳଧି
ତୁଷାର ହୁଏ ଯେସନ ।"

ଦିନେ ନରର ଦୁର୍ଦ୍ଦଶାରେ ବ୍ୟାକୁଳ ହୋଇ ରାଜପୁତ୍ର ତଥାଗତ ବୁଦ୍ଧ ପାଲଟିଥିଲେ । ଯେତେବେଳେ ଜଡ଼ବାଦ ପ୍ରବଳ ହୋଇଛି, ଦ୍ୱେଷ ହିଂସା ମୁଷ୍ଟିମେୟଙ୍କର ଧନ ଓ ସ୍ୱାର୍ଥ ଲାଳସାରେ ପୃଥିବୀ ବ୍ୟାକୁଳ ହୋଇ ତ୍ରାହି ତ୍ରାହି ଡାକୁଛି, ସେତେବେଳେ ପୂଜକ ବ୍ରାହ୍ମଣ ବେଶରେ ପ୍ରଭୁ ରାମକୃଷ୍ଣ ଅବତାର ଗ୍ରହଣ କରିଛନ୍ତି । ତାଙ୍କର ଅହେତୁକୀ କୃପା ହିଁ ଏ ବିଶ୍ୱକୁ ଅଶାନ୍ତି ଅସନ୍ତୋଷରୁ ରକ୍ଷା କରିପାରିବ । ତାଙ୍କର ଅଭୟବାଣୀ ହିଁ ମଣିଷକୁ ଶ୍ରଦ୍ଧା, ଭକ୍ତି ଓ ଜ୍ଞାନ ପ୍ରଦାନ କରି ଆଶ୍ୱାସନା ଦେବାକୁ ସମର୍ଥ ।

୦୧-୦୧-୧୯୬୯ରେ ରଚିତ ସଂଗୀତଟି ରାମକେରୀ ରାଗରେ ଲିଖିତ । ଯେମିତି 'ମଥୁରାମଙ୍ଗଳ'ର ବର୍ଣ୍ଣନା ଅନୁସାରେ କଂସର ଭାରା ସହିନପାରି ଧରଣୀସୁନ୍ଦରୀ ବ୍ରହ୍ମାଙ୍କୁ ଗୁହାରୀ କରିଥିଲା, ଠିକ୍ ସେହିପରି ଧରିତ୍ରୀ କଳ୍ପତରୁ ରାମକୃଷ୍ଣଙ୍କ ପଦତଳେ ଦୟିନୀ କରୁଛି—

"ବାଟଭୁଲି ମୋର ସନ୍ତାନେ ଅବାଟରେ ଚାଲିଲେ
ସତ୍ୟ ନ୍ୟାୟ ଛାଡ଼ି ଗରବେ ଧନଲୋଭେ ମାତିଲେ
ମୋ ସନ୍ତାନ ମୋର ଦେହରେ ଦେଲେ ବିଷ ପୂରାଇ
'ରସା' ଥିଲି 'ରସ ବିହୀନ' ମୁହିଁ ଏବେ ବୋଲାଇ
ମୋ ଦେହକୁ ବାଣ୍ଟି କହନ୍ତି ଏହା ଦେଶ ମୋହରି
ଗାରେ ଏଣେତେଣେ ହୋଇଲେ ଛୁଟେ ରକ୍ତ ଲହରୀ ।

x x x

ରାବଣ କଂସର ଦାହରେ ଯେବେ କାନ୍ଦିଲି ମୁହିଁ
ଦାଶରଥି ନନ୍ଦନନ୍ଦନ ରୂପେ ତୁମେ ଆସିଲ ଧାଇଁ
ଜଡ଼ବାଦ ଦୈତ୍ୟ ପ୍ରକୋପ ଧର୍ମ ଦ୍ୱେଷ ଅସୁର
ଦମନ ପାଇଁ କି ଆସିଲ ତୁମେ ଦକ୍ଷିଣେଶ୍ୱର ।"

ଏହି କବିତା ଭିତରେ ଆମେ ପରିବେଶର କ୍ରମ ଅଧୋଗତି ସମ୍ପର୍କରେ ଚିତ୍ର ପାଇଥାଉ, ଯାହା ବଂଶୀଧରଙ୍କର ବିଜ୍ଞାନଦୀପ୍ତ ହୃଦୟର ସାଗ୍ରହ ଉଚ୍ଚାରଣ । ଶ୍ରୀରାମକୃଷ୍ଣ ପରମହଂସଙ୍କର ଏକାନ୍ତ ଅନୁଗତ, ତାଙ୍କର ବିଚାର ବିଶ୍ୱାସୀ ବଂଶୀଧର ସର୍ବଦା ସଂସାର ସମ୍ପର୍କରେ ନିଜର ସ୍ୱତନ୍ତ୍ର ମତ ରଖିଛନ୍ତି । ଏ ସଂସାର ଅସାର । ମାୟାର ଜାଲରେ ମଣିଷ ବନ୍ଦୀ । ତେଣୁ କାମିନୀ କାଞ୍ଚନ ତ୍ୟାଗୀ ବିବେକାନନ୍ଦ ହିଁ ତାଙ୍କର ଆଦର୍ଶ । ମାୟାର ଜାଲକୁ କାଟି ଉତ୍ତରଣର ମାର୍ଗରେ ଯିବାପାଇଁ ହେଲେ, ଗଭୀର ନିଷ୍ଠା ଓ ଆତ୍ମବିଶ୍ୱାସ ଲୋଡ଼ା । ସଂସାର ଅସାର ହୋଇପାରେ, ମାତ୍ର ପରିତ୍ୟଜ୍ୟ ନୁହେଁ । ସେଥିପାଇଁ ସେ ଶିବ-ପାର୍ବତୀ ବା ରାମ-ସୀତାଙ୍କ ଉଲ୍ଲେଖ ବାରମ୍ବାର କରିଛନ୍ତି । ତାଙ୍କର ବିଚାରରେ ଜଗଦମ୍ବା ଗୌରୀ ଆଗ ଓ ଶଂକର ପଛରେ ରହିଥାଆନ୍ତି । ସେହିଭଳି ରାମଚନ୍ଦ୍ର ରଘୁପତି ହୋଇପାରନ୍ତି, ରାଘବ ମଧ ହୋଇପାରନ୍ତି । କିନ୍ତୁ ପତିତପାବନ ହେବାପାଇଁ ହେଲେ ତାଙ୍କୁ ସୀତାରାମ ହୋଇ ଏକତ୍ର ବିରାଜମାନ ହେବାକୁ ପଡ଼ିବ ।

ବିବେକାନନ୍ଦଙ୍କ ପ୍ରସଙ୍ଗରେ ତାଙ୍କର ବିଚାର ହେଲା ଯେ ପ୍ରଭୁ ରାମକୃଷ୍ଣ ତାଙ୍କୁ ନିର୍ଦ୍ଦେଶ ଦିଅନ୍ତୁ । ସେ ଅଭିଃରଭିଃ ଗାନ ଗାଇ ଏ ବିଶ୍ୱକୁ ପୁନର୍ବାର ଜାଗ୍ରତ କରନ୍ତୁ । ବିବେକାନନ୍ଦଙ୍କ ବ୍ୟକ୍ତିତ୍ୱ ଏକାଧାରରେ କୁଳିଶୁଁ କଠୋରତର ଓ ସୁମନଠାରୁ ସୁକୋମଳ । ସଂଯମ ଓ ସେବା ହିଁ ତାଙ୍କର ମୂଳମନ୍ତ୍ର । ବଂଶୀଧରଙ୍କ ଭାଷାରେ—

"ବିବେକାନନ୍ଦର ଚରିତ୍ର ଖରସ୍ରୋତା ସରିତ
ଧୋଇନିଏ ନର ହୃଦରୁ ଅବସାଦ ଦୁରିତ
ଯୋଗ-କର୍ମ-ଭକ୍ତି ଜ୍ଞାନର ଏହା ସଂଗମ ସ୍ଥଳ
ଯେ ଯେତେ ପାରିବ ନେଇଯା ଅସରନ୍ତି ଭଣ୍ଡାର ।"

(ଅପ୍ରକାଶିତ ବିବେକାନନ୍ଦ ଶତବାର୍ଷିକୀ ଉପଲକ୍ଷେ ଗାନ କରାଯାଇଥିବା ସଂଗୀତ)

ହୃଦୟର ଦର୍ପଣ ମାଜି ପରିଷ୍କାର କରିପାରିଲେ ହିଁ ନିଜର ଛବି ଦିଶିବା ସମ୍ଭବ । ପୁଣି ଲୁହା ପରିଷ୍କାର ହେଲେ ହିଁ ଚୁମ୍ବକ ଯେପରି ତାକୁ ସହଜରେ ଟାଣିନିଏ, ସେହିପରି ମନ ଯଦି ନିର୍ମଳ ହେବ, ତେବେ ତାହା ସହଜରେ ଈଶ୍ୱରାର୍ପିତ ହୋଇପାରିବ, ଏହା ବିବେକାନନ୍ଦଙ୍କ ବାଣୀ । ଚିକାଗୋର ବିଶ୍ୱଧର୍ମ ମହାସଭାରେ ୧୮୯୩ ମସିହା ସେପ୍ଟେମ୍ବର ମାସ ୧୧ ତାରିଖରେ ସ୍ୱାମୀ ବିବେକାନନ୍ଦ ସମଗ୍ର ଭାରତୀୟ ସଂସ୍କୃତିର ପ୍ରତିନିଧି ଭାବରେ ଯୋଗଦେଇ ଯେଉଁ ଅଭୁତପୂର୍ବ ସାଫଲ୍ୟର ଅଧିକାରୀ ହୋଇଥିଲେ ତାହା ମଧ୍ୟ ବଂଶୀଧର ନିଜ ସଂଗୀତର ଏକାଧିକବାର ଉଲ୍ଲେଖ କରିଛନ୍ତି । ଭାରତୀୟ ଗୁରୁ ପରମ୍ପରା ସମ୍ପର୍କରେ ବେଶ୍ ସଚେତନ ଥିବା ଏହି ସ୍ରଷ୍ଟା ଶ୍ରୀରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ନିଷ୍ଠା, ଚାରିତ୍ରିକ ଶୁଦ୍ଧତା, ମାନବ ସମାଜ ପ୍ରତି ସହାନୁଭୂତି ଓ ଆଶାବାଦୀ ଜୀବନ ଦର୍ଶନ ସମ୍ପର୍କରେ ଅନେକ ସଂଗୀତ ରଚନା କରିଛନ୍ତି ।

ଏ ସବୁ ସଂଗୀତ ଭିତରେ ଭକ୍ତିର ଆକୂତିଠାରୁ ଚିନ୍ତାଶୀଳ ଦ୍ରଷ୍ଟାର ଦୂରଦୃଷ୍ଟି ଓ ସମୟ ପରିବର୍ତ୍ତନ ସମ୍ପର୍କୀୟ ଧାରଣା ହିଁ ଗୁରୁତ୍ୱପୂର୍ଣ୍ଣ । ପୁଣି ମହାନ ଭାରତୀୟ କବି ବିଶ୍ୱକବି ରବୀନ୍ଦ୍ରନାଥଙ୍କ କବିତାର ସ୍ୱରସାମ୍ୟ ଏଥିରେ ପରିଦୃଶ୍ୟମାନ । ଯେମିତି ରବିଠାକୁରଙ୍କର—

"ବକ୍ଷେ ତୋମାର ବାଜେ ବଂଶୀ ସେ କି ସହଜ ଗାନ
ସେଇ ସୁରେ ତେ ଜାଗବେ ଯେମନ ଦାଓ ମୋରେ ସେଇ କାନ

x x x

ସେଇ ଝଡ଼ ଯେନ ସହି ଆନନ୍ଦେ ଚିତ୍ତ ବୀନାର ତାରେ
ସପ୍ତସିନ୍ଧୁ ଦଶ ଦିଗନ୍ତ ନାଚାଓ ଯେ ଝଂକାରେ ।"

ବଂଶୀଧରଙ୍କ ସଂଗୀତରେ ଏହାର ସିଧାସଳଖ ପ୍ରଭାବ—

"ଦେବ ଯେବେ ଦିଅ ପ୍ରଭୁ ହେ ! ମୋତେ ଏପରି କାନ
ଦୁନିଆ କନ୍ଦଳେ ଶୁଣିବି ତୁମ ବଂଶୀର ସ୍ୱନ

x x x

ସପତ ସମୁଦ୍ର ଆକାଶ ନଚା ଯେଉଁ ଝଂକାରେ
ସେ ଝଡ଼ ସହେ ମୁଁ ଆନନ୍ଦେ ଚିତ୍ତ ବୀଣାର ତାରେ ।" ୧।୧।୧୯୮୦

ଓଡ଼ିଆ ସାହିତ୍ୟରେ ଭକ୍ତକବି ମଧୁସୂଦନ ରାଓ ତାଙ୍କର ସବୁଠାରୁ ପ୍ରିୟ କବି । ତାଙ୍କର ' କି ସୁନ୍ଦର ଆହା କି ଆନନ୍ଦମୟ ଏହି ବିଶାଳ ସଂସାର' ଓ 'ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ' ସଂଗୀତର ପ୍ରଭାବ ମଧ ବଂଶୀଧରଙ୍କ ସଂଗୀତରେ—

"ଯାହା ଲୋଡ଼ା ସବୁ ଦେଇଛ ତୁମ୍ଭେ ଦୟା ସାଗର
ଜନମ ଆଗରୁ ଦେଲଟି ମାତୃ ସ୍ତନରେ କ୍ଷୀର
ପିତୃହୃଦେ ଦେଲ ସେନେହ ପରିବାରରେ ଶ୍ରଦ୍ଧା
ପଡ଼ୋଶୀଙ୍କ ମେଳେ ବଢ଼ିଛି କିଛି ନ ପାଇ ବାଧା ।" ୧।୧।୧୯୮୦

ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସଂଗୀତ—

"ଆମାର ମାଥାନତ କରେ ଦାଓ ହେ ତୋମାର ଚରନ ଧୂଲାର ତଲେ
ସକଲ ଅହଂକାର ହେ ଆମାର ଡୁବାଓ ଚୋଖେର ଜଲେ ।"

ଏହି ସଂଗୀତର ଅନୁରୂପ—

"ତୁମରି କରୁଣା ପବିତ୍ର ସଲିଳେ
ଧୋଇଦିଅ ମୋର ପ୍ରାଣ
ତାହା ନ ହୋଇଲେ ଛୁଇଁ କି ପାରିବ
ତୁମରି ପୂତ ଚରଣ ।"

ବଂଶୀଧର ଓଡ଼ିଆ ବ୍ୟତୀତ ବଂଗଳାରେ ମଧ ଅନେକ ସଂଗୀତ ରଚନା କରିଛନ୍ତି । ରବିଠାକୁରଙ୍କର ଅନେକ ରଚନା ତାଙ୍କର କଣ୍ଠସ୍ଥ ଥିଲା । ଏଥିସହିତ ସେ ରାମପ୍ରସାଦ ଓ କମଲାକାନ୍ତଙ୍କ ଭଳି ବଂଗୀୟ ଦେବୀଭକ୍ତଙ୍କ ସଂଗୀତ ମଧ ଗାନ କରୁଥିଲେ । ବଂଗଳା ଭାଷା ଉପରେ ତାଙ୍କର ବେଶ୍ ଦଖଲ ଥିଲା । ଶ୍ରୀରାମକୃଷ୍ଣ ଲୀଳାମୃତ ଭଳି ପୁସ୍ତକମାନ ସେ ଆଗ୍ରହରେ ପାଠ କରୁଥିଲେ । ବଂଗଳା ଭାଷାରେ ଲିଖିତ ଭଗବଦ୍‌ଗୀତା ଓ ସପ୍ତଶତୀ ଚଣ୍ଡୀ ବ୍ୟତୀତ ସ୍ତବକୁସୁମାଞ୍ଜଳି ପ୍ରଭୃତି ତାଙ୍କ ବହି ଥାକରେ ରହିଥିଲା । ସେ ନିଜେ ରାମକୃଷ୍ଣଙ୍କର କଳ୍ପତରୁ ଉତ୍ସବ ଉପଲକ୍ଷେ ରଚନା କରିଥିବା ସଂଗୀତ ଏହିଭଳି—

"ଶଙ୍କରେର ମେଧା ସିଦ୍ଧାର୍ଥ ହୃଦୟ
ହନୁମାନ ନିଷ୍ଠା କରିୟା ସଂଚୟ
ଚଲିବେ ମାନବ ସାମ୍ୟ ମୈତ୍ରୀ ପଥେ ହୟେ ଜ୍ଞାନେ ଦୀପ୍ତିମାନ ।"
(୧।୧।୧୯୭୫)

କଳ୍ପତରୁ ତଳେ ଶତଧାରରେ ଅମୃତ ପ୍ରବାହିତ ହେଉଛି । ସେଠାରେ ଏକତ୍ର ହୋଇପାରିଲେ ହିଁ ସମଗ୍ର ଜୀବନର ପ୍ରାପ୍ତି ଗୋଟିଏ ମୁହୂର୍ତ୍ତରେ ମିଳିଯାଇପାରେ । ଥରେ ନିର୍ଭୟ ହୋଇ ଜ୍ଞାନ, ଭକ୍ତି ଓ ଶ୍ରଦ୍ଧାକୁ ଏକତ୍ର କରିବା ହିଁ ଭକ୍ତ ପକ୍ଷରେ ଯଥେଷ୍ଟ—

"ଏବାର ଗୋପନେ ଏସେ ପୂଜକ ବ୍ରାହ୍ମଣ ବେଶେ
ବାଜାଇଲ ମୈତ୍ରୀ ବୀଣା ସୁରଧୂନୀର ତଟେ
ସେଇ ବୀଣାର ଝଂକାର ବ୍ୟାପେ ଦିଗଦିଗନ୍ତର
ବେଁଧେଛେ ବିଶ୍ୱମାନବେ ପ୍ରେମଡୋରେ ଏଁଟେ ।"

**ବିଦ୍ୟାଳୟର ବାର୍ଷିକ ଉତ୍ସବ ଓ ଶିକ୍ଷକମାନଙ୍କର ବିବାହ ଉତ୍ସବେ ପାଇଁ ରଚିତ ସଂଗୀତ:**

ଖଣ୍ଡସାହୀର ଜଗନ୍ନାଥ ବିଦ୍ୟାପୀଠ ଥିଲା ତାଙ୍କପାଇଁ ବାର୍ଦ୍ଧକ୍ୟର ବାରାଣସୀ ତୁଲ୍ୟ ପବିତ୍ର ଓ ମନୋରମ । ସ୍କୁଲପାଇଁ ତାଙ୍କର ତ୍ୟାଗ ଥିଲା ଯଥେଷ୍ଟ । ସ୍କୁଲର ଛୋଟବଡ଼ ଉତ୍ସବରେ ସେ ଶିଶୁଭଳି ଆଗ୍ରହ ନେଇ ସାମିଲ ହେଉଥିଲେ । ସେହି ବିଦ୍ୟାଳୟର ବାର୍ଷିକ ଉତ୍ସବମାନଙ୍କରେ ବଂଶୀଧରଙ୍କ ଲିଖିତ ପ୍ରାରମ୍ଭିକ ଓ ବିଦାୟ ସଂଗୀତ ଗାନ କରାଯାଉଥିଲା । ପଲ୍ଲୀର ସ୍ନିଗ୍ଧ ଶ୍ୟାମଳ କୋଳରେ ଅବସ୍ଥିତ ଏହି ବିଦ୍ୟାନିକେତନରେ ଆମେ ଅନେକ ସୁଧୀଜନଙ୍କୁ ସ୍ୱାଗତ କରୁଛୁ । ଆପଣମାନଙ୍କ ଉପସ୍ଥିତି ଆମକୁ ଧନ୍ୟ କରିଛି । ତା' ପରର ପଦ ଭିତରେ କିନ୍ତୁ ବଂଶୀଧରଙ୍କର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ବେଶ୍ ଭାବେ ପ୍ରକାଶିତ—

"ପ୍ରବଳ ଝଂଜା ବହଇ ମହାଦ୍ରୁମେ ଉପାଡ଼ଇ
ପଥପ୍ରାନ୍ତ ଦୂର୍ବା କିନ୍ତୁ ରହିଥାଏ ଅଟଳ ।"

ଝଂଜା ବାତ୍ୟା ବିରାଟ ଦ୍ରୁମମାନଙ୍କୁ ନଷ୍ଟ କରିପାରେ, ବିରାଟ ଅନୁଷ୍ଠାନମାନେ କାଳର କବଳରେ ବିଲୀନ ହୋଇଯାଇ ପାରନ୍ତି; କିନ୍ତୁ ପଥପ୍ରାନ୍ତର ଦୂର୍ବାଦଳ ଭଳି ଏହି ବିଦ୍ୟାଳୟ ନିଜର ଉପସ୍ଥିତିକୁ ଜାହିର କରିବ । ଏହି ଅନୁଷ୍ଠାନ କେବେ କାଳର ଆଘାତରେ କ୍ଷୟ ହେବ ନାହିଁ । ଏତାଦୃଶ ବିଚାର ମଧ୍ୟରେ ଶିକ୍ଷାନୁଷ୍ଠାନଟିଏ ଗୌରବାନ୍ୱିତ ହୋଇଯାଏ ବିଦ୍ୟାଳୟର ପୁରାତନ ଛାତ୍ରସଂସଦର ସଭାପତି ଥିବା ବେଳେ ଛାତ୍ରସଂସଦର ଉତ୍ସବ ପାଇଁ ସେ ସଂଗୀତ ଲେଖିଥିଲେ—

"ଏହି ଶିଶୁ ଅନୁଷ୍ଠାନ ଲଭିଲା ଦିନୁଁ ଜନମ
ସଂକଟ ବାଧା ବିପଦ ସହିଅଛି ଅପାର
'ଶ୍ରେୟାଂସି ବହୁ ବିଘ୍ନାନି' ଏହି ବାଣୀ ମନେ ଘେନି
ସବୁ ପିଠିରେ ପକାଇ ହେଇଛି ଆଗଭର

x x x

ଏ କ୍ଷୁଦ୍ର ଶିଶୁ ଅଂକୁର ହେଉ ମହା ତରୁବର
ପତ୍ର ପୁଷ୍ପ ଫଳ ଦାନେ ତୋଷୁ ଏହିଅଞ୍ଚଳ ।"

ଏହି ନିବେଦନ ମଧ୍ୟରେ ବିଦ୍ୟାଳୟକୁ ଗଢ଼ିବା ପାଇଁ ନିଜର ଶ୍ରମ ଓ ସ୍ୱେଦ ଦାନ କରିଥିବା ବୟସ୍କ ମଣିଷଟିର ଅନ୍ତରର ସମସ୍ତ ଶୁଭେଚ୍ଛା ଏକତ୍ରିତ ହୋଇ ଶବ୍ଦ ରୂପ ଧାରଣ କରିଛି । ସେଥିପାଇଁ ଆଜି ମଧ୍ୟ ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠରେ ବଂଶୀଧର ମିଶ୍ରଙ୍କ ନାମ ସ୍ମରଣୀୟ ହୋଇ ରହିଛି ।

ଛାତ୍ରସଂସଦର ବାର୍ଷିକ ଉତ୍ସବ ପାଇଁ ସେ ଏକାଧିକ ସଂଗୀତ ଲେଖିଛନ୍ତି, ଯହିଁରେ ବିବେକାନନ୍ଦଙ୍କ ବାଣୀର ରୂପ ଦେଖି ଶ୍ରୋତା ମୁଗ୍ଧ ହୁଏ ।

"ଏହି ଆମ ଜନମ ସ୍ଥାନ ଶୈଶବର କ୍ରୀଡ଼ା ପ୍ରାଙ୍ଗଣ
ଆମ ଯୌବନର ପ୍ରମୋଦ ଉଦ୍ୟାନ ବାର୍ଦ୍ଧକ୍ୟର ତୀର୍ଥ ହିମ ଶିଖରି
ଘେନାକର ସୁଧା ମଣ୍ଡଳୀ
ଛାତ୍ରସଂସଦର ଶ୍ରଦ୍ଧା ଅଂଜଳି ।"

ପୁରାତନ ଛାତ୍ରସଂସଦର ଉଦ୍‌ଯାପନୀ ଉତ୍ସବର ଏକାଧିକ ସଂଗୀତ ସେ ରଚନା କରିଛନ୍ତି, ଯହିଁରେ ତାଙ୍କର ବିଦ୍ୟାଳୟ ପ୍ରତି ମମତ୍ୱବୋଧ ପ୍ରକାଶିତ । ଏଥିସହିତ ଶ୍ରମର ମର୍ଯ୍ୟାଦା, ଶୋଷଣବିହୀନ ସମାଜ ଗଠନ ପାଇଁ ଆକୃତି ଏ ସବୁର ମୂଳ କଥା ।

ଜଗନ୍ନାଥ ବିଦ୍ୟାପୀଠର ପ୍ରାଣ ପ୍ରତିଷ୍ଠାତା ଖଣ୍ଡସାହୀ ଅଞ୍ଚଳରେ ସର୍ବମାନ୍ୟ ଗୁରୁ ଦିବଂଗତ ଜୟକୃଷ୍ଣ ମିଶ୍ରଙ୍କ ପାଇଁ ସେ ସ୍ୱତନ୍ତ୍ର କୃତଜ୍ଞତାର ସଂଗୀତ ଲେଖିଛନ୍ତି—

"ଗ୍ରାମବାସୀ ତବ ଚରଣେ ବନ୍ଦି କୃତଜ୍ଞତା ପାଶେ ଅଛନ୍ତି ବନ୍ଦୀ
କୁସୁମୁଁ କୋମଳ କୁଳିଶୁଁ ଟାଣ ସଦା ଶୁଭକାମୀ ତୁମ୍ଭର ପ୍ରାଣ
ନିଜ ଶୈଶବର କଥା
ହୃଦୟେ ସୁମରି ତବ ପାଦତଳେ ନତ କରୁଥିବେ ମଥା ।

ଜଗନ୍ନାଥ ବିଦ୍ୟାପୀଠରେ ପ୍ରଧାନ ଶିକ୍ଷକ ସଚ୍ଚିଦାନନ୍ଦ ଦାଶ ଓ ମହାନ ସଂସ୍କୃତ କବି ବାଗ୍ମୀ ପ୍ରବୋଧ କୁମାର ମିଶ୍ରଙ୍କ ବିବାହ ପାଇଁ ସେ ବିବାହ ସଂଗୀତ ରଚନା କରିଥିଲେ, ସେହିପରି ଜୟରାମ ମହାନ୍ତିଙ୍କ ଭଳି ଛାତ୍ରବତ୍ସଳ ଶିକ୍ଷକଙ୍କ ଅବସର କାଳରେ ରଚନା କରିଥିବା ସଂଗୀତ—

"ଖାଲି ପଡ଼ିବ ଶ୍ରେଣୀ ତାଙ୍କ ବିହୁନେ
ସେ ହସ ହସ ମୁଖ ପଡ଼ିବ ମାନ ରେ
ଦାରୁଣ ବିହି
ଭଂଗା ନାବରେ ଛିଦ୍ର କଲା କିମ୍ପାଇଁ ରେ ।"

ପୁନଶ୍ଚ ଅନ୍ୟ ଏକ ବିଦାୟ ସଂଗୀତ—

"ଛାତ୍ରଛାତ୍ରୀଙ୍କର ସ୍ନେହ ଭକ୍ତି ଶ୍ରଦ୍ଧା
ଘେନ ଶିକ୍ଷକ ପ୍ରବର
ସତ୍ୟସ୍ରୋତେ ଆମ ପ୍ରାଣତରୀ ଭାସୁ
ଏହି ସୁଆଶିଷ କର ।"

ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସହିତ ବଂଶୀଧରଙ୍କର ଆତ୍ମିକ ସମ୍ପର୍କ ଥିଲା । ଗୋପବନ୍ଧୁ ଖଣ୍ଡସାହିରେ ବଂଶୀଧରଙ୍କର ଅତିଥି ହୋଇଥିଲେ । ଗୋପବନ୍ଧୁଙ୍କ ନିର୍ଦ୍ଦେଶ ନ ମାନି ବଂଶୀଧର ବି.ଏସ୍‌ସି.ପରୀକ୍ଷା ପୂର୍ବରୁ ବିଦେଶ ପାଠ ପଢ଼ିବେ ନାହିଁ ବୋଲି ଜିଦ୍ କରି ପାଠ ଛାଡ଼ି ଦେଇଥିଲେ । ସେହି ଗୋପବନ୍ଧୁଙ୍କର ଶ୍ରଦ୍ଧୋତ୍ସବ ନିମିତ୍ତ ବଂଶୀଧର ସଂଗୀତ ଲେଖିଛନ୍ତି । ସେହି ସଂଗୀତର ବିଭିନ୍ନ ପଦରେ ଉତ୍କଳଭୂମିର ଗୌରବ ଖାରବେଳ, ଲଲାଟେନ୍ଦୁ, ଅନଙ୍ଗଭୀମ, ନରସିଂହ ଦେବ, ଧର୍ମପଦ, କପିଳେନ୍ଦ୍ର ଦେବ, ଅଭିମନ୍ୟୁ, ଉପେନ୍ଦ୍ର ଭଂଜ, ସାରଳାଦାସ, ଦୀନକୃଷ୍ଣ, ଜଗନ୍ନାଥ ଦାସ, ବଳରାମ ଦାସ, ରାଧାନାଥ, ନନ୍ଦକିଶୋର, ମଧୁସୂଦନ, ଗଙ୍ଗାଧର, ଫକୀରମୋହନ ଓ ପଠାଣୀ ସାମନ୍ତଙ୍କ ଉଲ୍ଲେଖ ରହିଛି—

"ଭୁଲି ନିଜ ପୂର୍ବ ଗୌରବ ହୋଇଥିଲେ ଜଡ଼ ନିରବ
କେଉଁ ଦେବଦୂତ ଢାଳିଲା ଅମୃତ ଶୁଭକ୍ଷଣେ ସ୍ୱର୍ଗୁ ଓହ୍ଲାଇ ଆସି
ସତ୍ୟବାଦୀ ପୁଣ୍ୟପୀଠରେ ମଂଜୁ ବୁରିଅନା କୁଞ୍ଜରେ
ଜ୍ଞାନ ଭକ୍ତି ସେବା ତ୍ରିବେଣୀର ଧାର ଯାଇଥିଲା ଯହିଁ ଏକାଠି ମିଶି...
ଗୋପବନ୍ଧୁ ସେବା ଧରମ ତ୍ୟାଗ ପୂତ ସର୍ବ କରମ
ସେହି ଆଦରଶେ ଜାଗି ଉଠିଥିଲେ ଉତ୍କଳର ପୁର ପଲ୍ଲୀ ନିବାସୀ ।"

ତା ୧୯।୧୦।୧୯୬୩

ପୁଣି ସେ ଏକାଧିକ ଉଦ୍‌ବୋଧନ ସଂଗୀତ ରଚନା କରିଛନ୍ତି, ଯାହା ଯେ କୌଣସି ଉତ୍ସବର ପ୍ରାରମ୍ଭିକ ସଂଗୀତ ହୋଇପାରେ । ସେହି ସଂଗୀତଗୁଡ଼ିକ ଭାବ ଓ ସ୍ୱର ଉଭୟ ଦୃଷ୍ଟିରୁ ତେଜସ୍ୱୀ, ପରିଚ୍ଛନ୍ନ ଓ ହୃଦୟଗ୍ରାହୀ । ଜନ୍ମଭୂମିର ଶିରକୁ ଗୌରବରେ ଟେକି ଧରିବା ପାଇଁ ହେଲେ ପ୍ରଥମେ ଅତୀତ ପ୍ରତି ସମ୍ମାନଜନକ ଦୃଷ୍ଟି ଦେବାକୁ ହେବ । ହିମାଳୟ, ବିନ୍ଧ୍ୟ, ଦେଓମାଳି, ସହ୍ୟାଦ୍ରିଭଳି ପର୍ବତ, ଗଙ୍ଗା, ମହାନଦୀ, ନର୍ମଦା, କାବେରୀ ଭଳି ନଦୀ ସମସ୍ତ ଭାରତଭୂମିକୁ ପବିତ୍ର କରିଛନ୍ତି । ଏଠି ଆସି ଶକ, ହୁନ, ପଠାଣ, ମୋଗଲ, ପାର୍ଶୀ, ବୌଦ୍ଧ, ଜୈନ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ସମସ୍ତେ ସମ୍ମିଳିତ ହୋଇଯାଇଛନ୍ତି । ଏହା ଭାରତ ବ୍ୟାସ, ବାଲ୍ମିକୀଙ୍କ ସାଧନାର ପୀଠ । ଗୌତମ, ନାନକ, କବୀର, ଶଙ୍କରଙ୍କର ପଦସ୍ପର୍ଶରେ ଏ ମାଟି ପବିତ୍ର । ସାବିତ୍ରୀ, ସୀତା ଏହି ଭୂମିର କନ୍ୟା । ଭୀଷ୍ମ, ଭୀମ ଓ ଅର୍ଜୁନ ଏହି ମାଟିର ସନ୍ତାନ । ଏଥିସହିତ ତିଳକ, ସୁଭାଷ, ଗାନ୍ଧି, ଗୋପବନ୍ଧୁ ସମସ୍ତେ ସେହି ଉଜ୍ଜ୍ୱଳ ପରମ୍ପରାର ଯୋଗ୍ୟ ଉତ୍ତର ଦାୟାଦ—

"ଆମେ ସର୍ବେ ପରା ତାଙ୍କ ବଂଶଧର
ଜଗାଇ ଶ୍ରମିକ କୃଷକର ଦଳ
ଉଚ୍ଚେ ଟେକିଦେବା ଜନ୍ମଭୂମି ଶିର ସାମ୍ୟ ଧ୍ୱଜା ଧରି କରେ ।"

୧୯୬୭ ମସିହା ଅକ୍ଟୋବରର ବାତ୍ୟା ପରେ ସେ ବାତ୍ୟାବିଧ୍ୱସ୍ତମାନଙ୍କ ପ୍ରତି ସହାନୁଭୂତିରେ ସଂଗୀତ ଲେଖିଛନ୍ତି । ତା ୯-୧୦-୧୯୬୭ର ବାତ୍ୟା ପରେ ରଚିତ ଏହି ସଂଗୀତରେ ତୁଳସୀକ୍ଷେତ୍ର, ଆଳି, ପଟାମୁଣ୍ଡାଇ, ତିର୍ତ୍ତୋଲ, ଏରସମା, ମାର୍ଶାଘାଇ, ପାଟକୁରା, ମହାକାଳପଡ଼ାର ବିଧ୍ୱସ୍ତ ଚେହେରା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଦୁଃସ୍ଥ ଶିଶୁର ଆକୁଳ କ୍ରନ୍ଦନ ତାଙ୍କ ଚେତନାକୁ ଆନ୍ଦୋଳିତ କରିଛି । ସେ କେତେଦିନ କେବଳ ରେଡ଼ିଓ ଧରି, ଅନ୍ୟମନସ୍କ ହୋଇ ବସି ରହୁଥିଲେ ବୋଲି ଦେଖିଥିବା ଲୋକେ କହିଥାଆନ୍ତି ।

"କାନ୍ଥ ତଳରେ ଶିଶୁ ମାଆ କୋଳରେ
ମରି ପଡ଼ିଛି ଗୋରୁ ଗୁହାଳ ଘରେ
ନାହିଁ ଭରସା
ଆଠଲକ୍ଷ ଲୋକଙ୍କ ଏହି ଦୁର୍ଦ୍ଦଶା ।"

ଏହାପରେ ସେ ମନବୋଧ ଚଉତିଶାର ପଦ "ଏଣେ ତୁ ଦେଇଥିଲେ ତେଣେ ପାଇବୁ"ଟି ଉଲ୍ଲେଖ କରିଛନ୍ତି—

"ଏଣେ ତୁ ଦେଇଥିଲେ ପାଇବୁ ତେଣେ
ନିଜ ବିପଦ ବୋଲି ବିଚାର ମନେ
ହୃଦୟ ଖୋଲି
ଦୁଃସ୍ଥ ବିଭୂର ସେବା ଯାଆ ତୁ କରି ।"

ବଂଶୀଧର ଏକାଧିକ ବିବାହ ଗୀତିକା ରଚନା କରିଥିଲେ ବୋଲି ପୂର୍ବରୁ କୁହାଯାଇଛି । ସେଥିରେ ତାଙ୍କର ନବଦମ୍ପତିଙ୍କ ପ୍ରତି ଆଶୀର୍ବାଦ ସହିତ ସେମାନଙ୍କ ପାଇଁ କିଛି ଉପଦେଶ ଓ ସଂସାର ସମ୍ପର୍କୀୟ ଅନୁଭବର ରୂପାୟନ ଘଟିଛି । କେବେ ବର ଓ କନ୍ୟାଙ୍କ ନାମର ଅନ୍ୟ ଅକ୍ଷରକୁ ନେଇ କବିତା ଲେଖାଯାଇଛି ତ କେବେ କବିତାର ଦ୍ୱିତୀୟ ଅକ୍ଷରରେ ସେମାନଙ୍କ ନାମର ପ୍ରଥମ ଅକ୍ଷର ପରସ୍ପର ସହିତ ଛନ୍ଦି ହୋଇ ରହିଛନ୍ତି । ପ୍ରଥମରେ ଗ୍ରୀଷ୍ମ, ବର୍ଷା ବା ଶୀତଋତୁର ବର୍ଣ୍ଣନା ସହିତ ସେମାନଙ୍କ ପରିବାର ଓ ବାସଗୃହର ସାଜସଜ୍ଜା ବର୍ଣ୍ଣିତ । ତା'ପରେ ସମଗ୍ର ପ୍ରକୃତି କିଭଳି ନବଦମ୍ପତିଙ୍କୁ ସ୍ୱାଗତ କରିବା ପାଇଁ ଉଚ୍ଚକିତ, ସେ ବିଷୟର ବର୍ଣ୍ଣନା ରହିଛି—ତା'ପରେ ନବଦମ୍ପତିଙ୍କ ଉଦ୍ଦେଶ୍ୟରେ ରଚିତ ପଦମାନଙ୍କରେ ସେମାନଙ୍କୁ ଉପଦେଶ ଦିଆଯାଇଛି, ସେମାନେ ଅବଶ୍ୟ ମନେ ରଖିବେ ଯେ ସେମାନେ ଭାରତଭୂମିର ପୁଅ-ଝିଅ । ଦିନେ ଯାହାର କୋଳ ବୈଦେହୀ ଓ ଦାଶରଥି ଉଜ୍ଜ୍ୱଳ କରିଥିଲେ । ଶୈବ୍ୟା-ହରିଶ୍ଚନ୍ଦ୍ର, ସାବିତ୍ରୀ-ସତ୍ୟବାନ, ଦମୟନ୍ତୀ-ନଳ ଏହି ଭୂମିର ସନ୍ତାନ । ସେମାନେ ଅବଶ୍ୟ ମନେ ରଖିବେ ଯେ ସେମାନଙ୍କୁ ବିଶେଷ ଭାବରେ ସଂସାରର ଭାର ବହନ କରିବାକୁ ପଡ଼ିବ । ଦେବ-ଦ୍ୱିଜ ଓ ଗୁରୁଙ୍କ ପ୍ରତି ଭକ୍ତି ରଖିବାକୁ ପଡ଼ିବ । ତା ୧୯-୨-୧୯୬୭ରେ ରଚିତ ଏକ ବିବାହ ଗୀତିକାର ପଦଟିଏ ଏହିଭଳି—

"ବାସନା ନାରୀର ମାତୃତ୍ୱର ଟୀକା ସିନ୍ଦୂର ବିନ୍ଦୁ ଲଲାଟେ
ପ୍ରସନ୍ନେ ହୋଇବ ସ୍ୱାମୀ ସୋହାଗିନୀ ସମ୍ପଦେ ଅବା ସଂକଟେ ।"

ପୁରୋହିତ ଉଭୟଙ୍କ ହସ୍ତକୁ ଯେଉଁ କୁଶ ଗ୍ରନ୍ଥିରେ ବନ୍ଧନ କରିଥାନ୍ତି, ତାହା ଉଭୟଙ୍କ ପାଇଁ ବଜ୍ରଗ୍ରନ୍ଥି ସଦୃଶ ଦୃଢ ହେଉ ବୋଲି ସେ କାମନା କରିଛନ୍ତି ।

ଗୋଟିଏ ସମୟରେ ବିବାହ ଗୀତିକା ଥିଲା ଆତ୍ମୀୟସ୍ୱଜନଙ୍କର ବର ବା କନ୍ୟା ପାଇଁ ଆତ୍ମୀୟତାର ପରିପ୍ରକାଶ ସୂଚକ । ବଂଶୀଧରଙ୍କର ଏହି ଦିଗଟି ପ୍ରତି ଥିଲା ସସ୍ନେହ ଦୃଷ୍ଟି । କେହି ତାଙ୍କୁ ଅନୁରୋଧ କରନ୍ତୁ ବା ନ କରନ୍ତୁ, ସେ କାଗଜ କଲମ ଧରି ବସି ରହୁଥିଲେ ବିବାହ ଗୀତିକା ରଚନା କରିବାକୁ । ସେ ସମୟରେ ଖଣ୍ଡସାହୀରେ

ମୁଦ୍ରଣ ପାଇଁ ଏତେ ସୁବିଧା ନ ଥିବାରୁ କେବେ ଲିଥୋ (Cyclostyle) କରି ମଧ୍ୟ ସେ ନିଜ ଆଗ୍ରହରେ ବରଯାତ୍ରୀମାନଙ୍କୁ ବିବାହ ସଂଗୀତ ବାଣ୍ଟୁଥିଲେ । ଆଜି ଭିଡିଓ ଯୁଗରେ ଏତାଦୃଶ ବିଚାର ବେଶ୍ ପ୍ରାଚୀନ ମନେ ହୋଇପାରେ; ମାତ୍ର ଏହା ଭିତରେ ଏକ ଆବେଗ ଛଳଛଳ ବୟସ୍କ ମଣିଷର ନିରୁତା ଆଗ୍ରହ ଯେ ରହିଥିଲା, ତାହା ସ୍ୱୀକାର କରିବାକୁ ହୁଏ ।

**ବିଜ୍ଞାନ ଅନୁରାଗୀର କବିତ୍ୱ :**

ବଂଶୀଧର ମିଶ୍ର ଥିଲେ ବିଜ୍ଞାନର କୃତି ଛାତ୍ର । କେବଳ ଗଣିତ ହିଁ ଶତକଡ଼ା ଶହେ ନମ୍ବର ଦେବାରେ ସମର୍ଥ ବିଦ୍ୟା ବୋଲି ସେ କହୁଥିଲେ । ତିନିଅଙ୍କ ବିଶିଷ୍ଟ ନମ୍ବର କେବଳ ଗଣିତ ହିଁ ଦେଇପାରେ । ତାଙ୍କ ଭାଷାରେ "ମହାସୁଖ ମହାଦୁଃଖ ମଧ୍ୟେ ନାହିଁ ମଧ୍ୟମ ଠାବ ।" ବିଜ୍ଞାନସମ୍ମତ ବିଚାର ଥିଲା ଆଧୁନିକତା ପ୍ରତି ତାଙ୍କର ଅନୁରାଗର ନିଦର୍ଶନ । ଶିକ୍ଷକତାକୁ ବୃତ୍ତି ଭାବରେ ଗ୍ରହଣ କରି ନେଇଥିବା ବିଦେଶ ଫେରନ୍ତା ଶିକ୍ଷକ ଓଡ଼ିଆ ଛାତ୍ରଛାତ୍ରୀଙ୍କ ପାଇଁ ବିଜ୍ଞାନର ଅନେକ ତଥ୍ୟ ସଂଗୀତ ଆକାରରେ ପରିବେଷଣ କରିଥିଲେ । ସେହିପରି ତିନୋଟି ଗୀତ ଆମକୁ ମିଳିଛି । ପତ୍ର, ଫଳ ଓ କାଣ୍ଡ ଶୀର୍ଷକ ତିନୋଟି ଗୀତରେ ପତ୍ରର ଶ୍ରେଣୀବିଭାଗ ଏହିଭଳି—

"ପଲ୍ଲବ ମଧ୍ୟରେ ଆମ୍ବ ଯେ ସରଳ, ଯୌଗିକ ତେନ୍ତୁଳି ବେଲ
ଯୌଗିକ ମଧ୍ୟରେ ପକ୍ଷଳ ତିନ୍ତୁଳି, କରତଳ ସମ ବେଲ
ଆକାର ଭେଦରେ ଧାନ ଦୀର୍ଘାକୃତି, ବର ଅଣ୍ଡାକୃତି ଜାଣ
ପାନ ହୃଦାକୃତି ବାଉଁଶ କୃପାଣ, ପଦ୍ମ ଗୋଲ, ସାରୁ ବାଣ ।"

ଫଳର ବିଭାଗୀକରଣ ମଧ୍ୟରେ—

"ଉଦ୍ଭିଦର ଫଳଗୁଡ଼ିକ ହୁଏ ତିନି ପ୍ରକାର
ଏକ ପୁଷ୍ପେ ଏକ ଫଳକୁ କହନ୍ତି ଯେ ସରଳ
ଏକ ପୁଷ୍ପେ ବହୁ ଗରଭକୋଷ ଏକାଠି ହୋଇ
ଯେ ଫଳ ଜନ୍ମାଏ ତାହାକୁ ପେଣ୍ଡାଳିଆ ଯେ କହି
ବହୁ ପୁଷ୍ପ ଏକ ହୋଇଣ ଯେଉଁ ଫଳ ଜନ୍ମାଏ
ଉଦ୍ଭିଦ ବିଜ୍ଞାନେ ଏହାକୁ ଯଉଗିକ ବୋଲାଏ ।"

ରସାଳ ଫଳ ମଧ୍ୟରେ Drupe, Berry, Pepo, Pemo, Hesperidium, Legume ଓ Follicle କଥା ମଧ୍ୟ ସେ କହିଛନ୍ତି, ଯାହା ଓଡ଼ିଆ

ମାଧ୍ୟମ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କୁ ଉଦ୍ଭିଦ ବିଜ୍ଞାନର ଜଟିଳ ତତ୍ତ୍ୱକୁ ସରଳ ଭାବରେ ବୁଝାଇବାରେ ସହାୟକ ହୋଇଥାଏ ।

କାଣ୍ଡ ସମ୍ପର୍କରେ ତାଙ୍କର ବିଚାର ଏହିଭଳି—

"ଉଦ୍ଭିଦର କାଣ୍ଡଗୁଡ଼ିକ ହୁଏ ଦୁଇ ପ୍ରକାର
ପ୍ରଥମେ ଭୂଗର୍ଭା ଦ୍ୱିତୀୟେ ବୟବୀୟ ବିଚାର ।"

ଏହା ବିଜ୍ଞାନସମ୍ମତ ବିଭାଜନ ଓ ତାହାର ଅନ୍ୟାନ୍ୟ ବିଭାଜନ–ଯେପରି ଶଙ୍କୁ, ସ୍ତମ୍ଭ, ଗଣ୍ଠି, ଗମ୍ବୁଜ, ଦୁର୍ବଳ ଧାବକ, ଖର୍ବ ଧାବକ, ଚକ୍ର ଧାବକ ଓ ଶୟନଶୀଳ । ଆରୋହିଣୀ କାଣ୍ଡ, ଅର୍ଦ୍ଧଆରୋହୀ, ଆରୋହୀ, ଅଙ୍କୁର ଆରୋହୀ ପ୍ରଭୃତି । ଏହିଭଳି ଅନେକ ସଂଗୀତ ତାହାର ଯତ୍ନ ଅଭାବରୁ ନଷ୍ଟ ହୋଇଯାଇଛି ।

ସେହିପରି ବାର ରାଶି ସତେଇଶି ନକ୍ଷତ୍ରକୁ ସେ ସଂଗୀତ ଆକାରରେ ସ୍ମରଣଯୋଗ୍ୟ କରାଇଥିଲେ—

"ପ୍ରଥମେ ଅଶ୍ୱିନୀ ଦ୍ୱିତୀୟରେ ଦ୍ୱିଜା ତୃତୀୟେ କୃତ୍ତିକା ଜାଣ
ଚତୁର୍ଥେ ରୋହିଣୀ ପାଞ୍ଚ ମୃଗଶିରା ଆର୍ଦ୍ରାକୁ ଷଷ୍ଠରେ ଗଣ ।"

ଏହା ତାଙ୍କ ଝିଅ ମିତୁର ସ୍ମୃତିରୁ ହିଁ ଆନୀତ । ସେହିଭଳି ସପ୍ତଦ୍ୱୀପ, ନବଖଣ୍ଡ, ସପ୍ତପାତାଳ, ସପ୍ତସମୁଦ୍ର, ନବରତ୍ନ, ଶ୍ରୀକୃଷ୍ଣଙ୍କର ଅଷ୍ଟସଖୀ ଓ ଅଷ୍ଟପାଟବଂଶୀଙ୍କ ନାମ ବିପତ୍ତିର ଦ୍ୱାଦଶ ମାର୍ଗ, ମୁସଲମାନଙ୍କର ବାରମାସ ଓ ବାରମାସର ବିଭିନ୍ନ ପର୍ବ, ଅର୍ଜୁନଙ୍କର ବିଭିନ୍ନ ନାମ, ଦ୍ରୌପଦୀଙ୍କ ପାଞ୍ଚପୁତ୍ର–ପ୍ରତିବିନ୍ଧ୍ୟ, ଶ୍ରୁତସେନ, ଶ୍ରୁତକୀର୍ତ୍ତି, ଶତାନିକ, ଶ୍ରୁତକର୍ମା ପ୍ରଭୃତି ସେ ବେଶ୍ ଯତ୍ନର ସହିତ ନିଜ ହସ୍ତାକ୍ଷରରେ ଲେଖି ରଖିଥିଲେ, ଯାହା ଆଜିର ପାଠକକୁ ଚକିତ କରେ । ଏସବୁ ତାଙ୍କର ବହୁପାଠିତା ସହିତ ପରଂପରାନୁରାଗ ପଠନ ପରିଧିର ବ୍ୟାପ୍ତି ଓ ଗଭୀରତାର ପରିଚାୟକ । ସେହିଭଳି ବାର ମାସ ସହିତ ବିଭିନ୍ନ ରାଶି ଓ ନକ୍ଷତ୍ରକୁ ଯୋଗ କରି ସେ ଏକ ଚାର୍ଟ ତିଆରି କରିଥିଲେ, ଯାହା ଜ୍ୟୋତିଷମାନଙ୍କୁ ମଧ୍ୟ ଚକିତ କରୁଥିଲା । ତାହାର ରଫ୍‌ଟି ଆମ ନିକଟରେ ଗଚ୍ଛିତ ରହିଛି ।

**ଅନୁବାଦକ ଭାବରେ ବଂଶୀଧର :**

ବଂଶୀଧର ଓଡ଼ିଆ, ଇଂରାଜୀ ଓ ବଙ୍ଗଳାରେ କହି ଓ ଲେଖି ପାରୁଥିଲେ, ଯାହାର ଏକାଧିକ ଉଦାହରଣ ଆମେ ଦେଇଛୁ । ତାଙ୍କର ଏକ ଅନୁବାଦ The Begger

Maid (ବିଖ୍ୟାତ ଇଂରାଜୀ କବି ଟେନିସନ୍ଙ୍କର କବିତା)ର ଅନୁବାଦ ରହିଛି, ଯାହାକୁ ଆମେ ଏକ ଉଦାହରଣ ଭାବେ ନେଇପାରିବା ।

ବଂଶୀଧରଙ୍କର ଶ୍ରୀରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ଉଦ୍ଦେଶ୍ୟରେ ରଚିତ ଶତାଧିକ ଭଜନ କୀର୍ତ୍ତନ ରହିଛି, ଯାହା ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ ।

**ପୁନର୍ବାର ଗୃହତ୍ୟାଗର ପର୍ବ :**

ବଂଶୀଧରଙ୍କର ଏ ଗୃହତ୍ୟାଗ ଦୁଃସାହସିକ ବିଦେଶ ଯାତ୍ରା ନୁହେଁ ବା ଅଭିମାନପୂର୍ଣ୍ଣ କଟକ ଯାତ୍ରା ନୁହେଁ । ଦେହ ଯେତେବେଳେ ବୋଲ ମାନିଲା ନାହିଁ, ବଲ୍ଲୀବୋଉ ସବୁଦିନ ଦୈନିକ କାର୍ଯ୍ୟ ସହିତ ବଂଶୀବାବୁଙ୍କ ଯତ୍ନ ନେଇପାରିଲେ ନାହିଁ ବା ଝାଡ଼ା ପରିସ୍ରା ସଫା କରିପାରିଲେ ନାହିଁ । ଏପରି ହେଲା ଯେ ଇଷ୍ଟଦେବୀ ମା' ଦୁର୍ଗାଙ୍କର ପୂଜା ମଧ୍ୟ ଠିକ୍ ଭାବରେ ହୋଇପାରିଲା ନାହିଁ । ୧୮୮୨ ମସିହା ଦୁର୍ଗାପୂଜା ପରେ ଥଣ୍ଡା ପଡ଼ିବାରୁ ବଂଶୀବାବୁଙ୍କ ଦେହ ଖରାପ ହେଲା । ପରିସ୍ରା ହେଲା ନାହିଁ । ଦୁଇଦିନ ପରେ ଖବର ପାଇ ମିତୁ ଓ ଜଗନ୍ନାଥ ଗଲେ । ସାଂଗରେ ଆଣି ଆସିଲେ ବଂଶୀବାବୁଙ୍କୁ । କ୍ୟାଥେଡର ଦିଆଯାଇ ପରିସ୍ରା କରାଗଲା । ପ୍ରାୟ ଆଠଦଶ ଦିନ ସେ ବାଉଳାଚାଉଳା ହେଲେ । ମଣିଷ ଚିହ୍ନିପାରିଲେ ନାହିଁ । କିଛିଦିନ ଚିକିତ୍ସା ପରେ ସେ ସ୍ୱାଭାବିକ ହେଲେ । ଝିଅଘରେ ଭୁବନେଶ୍ୱରରେ ସେହିବର୍ଷ ଡିସେମ୍ବର ମାସରେ ଛାତ ଉପରେ ସକାଳୁ ବୁଲି ଫୁଲଗଛ ଦେଖୁଥିଲେ । "ମୋର ଖୁବ୍ ଭଲ ସମୟ ଆସୁଛି ଆଗକୁ" କହିବା ଭିତରେ ଛାତ ଉପରେ ପଡ଼ିଥିବା ଚଉକିଟିରେ ବସିପଡ଼ିଲେ । ମିତୁ ପାଖରେ ଠିଆହୋଇଥିଲା ଚା' କପ୍ ଧରି । କିନ୍ତୁ ଚଉକିଟି ଓଲଟି ଗଲା ଓ ବଂଶୀବାବୁ ପଡ଼ିଗଲେ । ଜଙ୍ଘ ହାଡ଼ ଖସିଗଲା । ଝାଡ଼ା ହୋଇଗଲା । ସେ ବେହୋସ ହୋଇଗଲେ । ଦେଢ଼ମାସ କାଳ ପ୍ଲାଷ୍ଟର ବନ୍ଧାହୋଇ ପଡ଼ିଲେ ସିନା ଗୋଡ଼ର ଆଉ ଉନ୍ନତି ହେଲା ନାହିଁ । ତେଣୁ ବଂଶୀଧରଙ୍କୁ ବାଧହୋଇ ମିତୁ ପାଖରେ ରହିବା ପାଇଁ ପଡ଼ିଲା । ଆଗରୁ ଥରେ ଜୋଇଁ ଡାକିଥିଲେ, "ନନା ! ଆମ ପାଖକୁ ଚାଲନ୍ତୁ । ଏ ବୟସରେ ଗାଁରେ ଏକୁଟିଆ ରହିବା ସମ୍ଭବ ନୁହେଁ । ଆମକୁ ବି ଭଲ ଲାଗୁନି ।" ଉତ୍ତରରେ ଅଶୀରୁ ଅଧିକ ବର୍ଷ ବୟସ୍କ ବଂଶୀବାବୁ କହିଥିଲେ, "ମଣିଷ କ'ଣ ତା' ସ୍ୱାଧୀନତା ଛାଡ଼ିଦେବାକୁ ପସନ୍ଦ କରେ ?" କିନ୍ତୁ ଏଥର ସ୍ୱାସ୍ଥ୍ୟପାଇଁ ସେ ଝିଅଘରେ ରହିଗଲେ । ରହିବାକୁ ଇଚ୍ଛା ପ୍ରକାଶ କଲେ । ଗୋଡ଼ ଭାଙ୍ଗିଯିବା ପରେ ମିତୁ, ତା' ପୁତୁରା, ଝିଆରୀ, ପୁଅଝିଅ ସମସ୍ତେ ତାଙ୍କ ସେବା କରିଛନ୍ତି । ସବୁଠାରୁ ତାଙ୍କୁ ବେଶି ବାଧୁଥିଲା ଗୃହର ଇଷ୍ଟଦେବୀ ମା' ଦୁର୍ଗାଙ୍କୁ ବଡ଼ଭାଇ ସ୍ୱର୍ଗତ ରାଧାନାଥ ମିଶ୍ରଙ୍କ ଘରେ ରଖି ଆସିବା ବ୍ୟାପାର ।

ସେତେବେଳକୁ ରାଧାନାଥ ମିଶ୍ର ଓ ତାଙ୍କ ପୁତ୍ର ବିନୋଦ ବିହାରୀ ମିଶ୍ର ଉଭୟ ସ୍ୱର୍ଗତ । କିନ୍ତୁ ତାଙ୍କ ନାତି ପ୍ରତାପଚନ୍ଦ୍ର ମିଶ୍ର ଠାକୁରାଣୀଙ୍କର ଏକନିଷ୍ଠ ସେବକ । ସେ ବିଲାତି ବାପା (ବିଲାତରୁ ଫେରିଥିବାରୁ)ଙ୍କର ମଧ୍ୟ ବେଶ୍ ଶ୍ରଦ୍ଧାର ପାତ୍ର । ତେଣୁ ବିଲାତି ବାପା ଶହୀଦନଗରରେ ରହିବା କଥା ଶୁଣି ସେ ନିଜ ତରଫରୁ ଠାକୁରାଣୀଙ୍କୁ ରଖିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ପରିବାରର ଜ୍ୟେଷ୍ଠ ଅଂଶ ରାଧାନାଥ ମିଶ୍ରଙ୍କ ଘରୁ ହିଁ ଦେବୀ ପ୍ରତିମା ବଂଶୀବାବୁଙ୍କ ଘରକୁ ଆସିଥିଲେ । ଦେବୀ ନିଜ ପୂଜା ଆରାଧନା ପାଇଁ ପ୍ରତାପଙ୍କଠାରୁ ଆଉ ଉପଯୁକ୍ତ ମଣିଷଟିଏ ବା ପାଇପାରିଥାଆନ୍ତେ କେଉଁଠୁ ? ତେଣୁ ଦୁର୍ଗା ଠାକୁରାଣୀ ତାଙ୍କ ଘରେ ରହିଲେ । ପ୍ରତାପ ପରମ ଆଦର ଯତ୍ନ ସହକାରେ ଦୁର୍ଗାପୂଜା ବର୍ତ୍ତମାନ ପର୍ଯ୍ୟନ୍ତ କରୁଛନ୍ତି । ପ୍ରଥମ ଦୁଇତିନି ବର୍ଷ ପୂଜା ବେଳକୁ ବଂଶୀଧର ଗାଁକୁ ଯିବାକୁ ଜିଦ୍ କରୁଥିଲେ । କ୍ରମେ ସେ ଜିଦ୍ ଊଣା ହୋଇଗଲା । କିନ୍ତୁ ଗଣେଶପୂଜା ପରେ ସେ ଅବଶ୍ୟ ସପ୍ତସତୀ ଚଣ୍ଡୀ ଆବୃତ୍ତି ଆରମ୍ଭ କରୁଥିଲେ ଓ ବଲ୍ଲୀବୋଉଙ୍କ ଶତ ବାରଣ ସତ୍ତ୍ୱେ ମିତୁକୁ ଚଣ୍ଡୀପାଠ କରିବାକୁ ଶିଖାଉଥିଲେ । ଚଣ୍ଡୀର ଆଖ୍ୟାନ ଭାବ ସହିତ ଦେବୀ ସାଧକର ସାଧନାର ବିବିଧ ସ୍ତର କିଭଳି ସମନ୍ୱିତ, ଏ ସମ୍ପର୍କରେ ମିତୁକୁ ସେ ପୂର୍ଣ୍ଣ ଧାରଣା ଦେଇଥିଲେ । କିନ୍ତୁ ଦଶହରା ବେଳକୁ ସେ ଖୁବ୍ ମର୍ମାହତ ହୋଇପଡୁଥିଲେ । ବାରମ୍ବାର ଦେବୀଙ୍କ ଶ୍ଲୋକ ଆବୃତ୍ତି କରି ଅନ୍ୟମନସ୍କ ହୋଇଯାଉଥିଲେ ।

ବଂଶୀବାବୁ ଶହୀଦନଗରରେ ମଧ୍ୟ ବେଶ୍ ଆନନ୍ଦରେ ଥିଲେ । ଜୋଇଁକୁ ଏତେ ଶ୍ରଦ୍ଧା ଓ ବିଶ୍ୱାସ କରୁଥିବା ମଣିଷ ଆଜି ସମୟରେ ବିରଳ । ଜୋଇଁଙ୍କ ତୁଣ୍ଡ ଶୁଣି ସେ ସୁନାପିଲାଟି ପରି ଔଷଧ ଖାଇ ଦେଉଥିଲେ । କେବେ କେମିତି ପିଲାଙ୍କ ଉପରେ ବିରକ୍ତ ହେଲେ ତାଙ୍କୁ ବିରକ୍ତ ମଧ୍ୟ ହେଉଥିଲେ । ତାଙ୍କ କହିବା ମୁତାବକ କାର୍ଯ୍ୟ ହୋଇ ନ ପାରିଲେ ବା କେବେ କେବେ ତାଙ୍କ ଇଚ୍ଛାରୁ ଟିକିଏ ଏପଟ ସେପଟ ହେଉଇଗଲେ ବଂଶୀଧରଙ୍କ ଧମକ "ମତେ ଗାଁରେ ନେଇ ଛାଡ଼ିଦେଇ ଆସ ।" ମିତୁ କାନ୍ଦିପକାଏ; କିନ୍ତୁ ପୁଣି ସେ ସହଜ ହୁଅନ୍ତି । ମିତୁର ଝିଆରୀମାନଙ୍କ ପାଇଁ ଗଣିତ କଷିଦିଅନ୍ତି ।

ବଂଶୀଧର ମିଶ୍ର ଖଣ୍ଡସାହୀ ଛାଡ଼ି ଶହୀଦନଗରରେ ମିତୁ ଘରେ ରହିଲେ । ଏହିଠାରେ ପ୍ରାୟ ୧୯୮୩-୮୪ ମସିହାରେ ତାଙ୍କର ଦେଖା ହୋଇଥିଲା ଔପନ୍ୟାସିକ ରାମପ୍ରସାଦ ସିଂହଙ୍କ ସହିତ । ସେ 'ସ୍ୱରାଜ୍ୟ' ପତ୍ରିକାର ସମ୍ପାଦନା କରୁଥାଆନ୍ତି ଓ ଶହୀଦନଗରରେ ରହୁଥାଆନ୍ତି । ସେ ସାକ୍ଷାତ ଦିନର ଆନନ୍ଦ ଉଚ୍ଛ୍ୱାସ ସତରେ ଅବିସ୍ମରଣୀୟ । ପ୍ରଭାତରୁ ବଂଶୀଧର ଗାଧୋଇ, ସଫାଲୁଗା ପିନ୍ଧି, ରାମପ୍ରସାଦଙ୍କୁ ଅପେକ୍ଷା

କରିଥାଆନ୍ତି, ଆଉ ରାମପ୍ରସାଦ ଦୁଇମହଲା ଉପରକୁ ଭାବପ୍ରବଣ ହୋଇ ଶୀଘ୍ର ଶୀଘ୍ର ଚଢ଼ିଆସି ଧଇଁସଇଁ ହୋଇଯାଉଥାଆନ୍ତି । ଉଭୟଙ୍କ ଚର୍ଚ୍ଚା ମୁଖ୍ୟତଃ ଶ୍ରମିକମାନଙ୍କ ସ୍ୱାର୍ଥ ଉପରେ ପର୍ଯ୍ୟବସିତ ଥିଲା । ବେଶ୍ ଦିନଯାଏ ରାମପ୍ରସାଦ ବଂଶୀଧରଙ୍କ ଖବର ରଖୁଥିଲେ । ତାଙ୍କ ଖବରକାଗଜ 'ସ୍ୱରାଜ୍ୟ'ରେ ମଇ ପହିଲା ଦିନ "କମ୍ରେଡ୍ ବଂଶୀଧରଙ୍କର ବିଶ୍ୱର ମେହେନତ ଜନସାଧାରଣଙ୍କୁ ଶୁଭେଚ୍ଛା" ଶୀର୍ଷକ ବାର୍ତ୍ତାଟିଏ ମଧ୍ୟ ପ୍ରକାଶିତ କରିଥିଲେ ।

**ନାତି ବ୍ରତଘର :**

୧୯୮୪ ଏପ୍ରିଲ ୨୩ ତାରିଖରେ ମିତୁର ପୁଅ ଅବିନାଶର ବ୍ରତଘର ହେଲା । ବଂଶୀବାବୁଙ୍କ ଗୋଡ଼ ଖରାପ ଥିବା ସତ୍ତ୍ୱେ ତାଙ୍କୁ ଟେକି ଟେକି ଅବିନାଶର ବେଦୀ ପାଖକୁ ନିଆଯାଇଥିଲା ଓ ସେ ତା' କାନରେ ଇଷ୍ଟମନ୍ତ୍ର କହିଥିଲେ । ସେ ଦିନସାରା ଅସୁସ୍ଥତା ସତ୍ତ୍ୱେ ଖୁବ୍ ଚଳଚଞ୍ଚଳ ଥିଲେ । ବନ୍ଧୁବାନ୍ଧବଙ୍କ ସହିତ ଗପ କରିଥିଲେ, ଆଉ ପିଲାଙ୍କ ଭଳି ଖୁସି ହେଉଥିଲେ ।

୧୯୮୬ ମସିହାରେ ମିତୁ ରମାଦେବୀ କଲେଜରୁ ବାଣୀବିହାର ଗଲା । ସେଥିପାଇଁ ତାକୁ ବେଶ୍ କଷ୍ଟକର ମୌଖିକ ପରୀକ୍ଷା ଦେବାକୁ ହୋଇଥିଲା । ବଂଶୀବାବୁ ପ୍ରତି ମୁହୂର୍ତ୍ତରେ ତାକୁ ଆଶ୍ୱାସନା ଦେଉଥିଲେ, "ମୋ ଝିଅ ନିଶ୍ଚୟ ପାରିବ, ଭୟ କରିବାର କିଛି ନାହିଁ ।" ତା'ପରେ ଆରମ୍ଭ ହେଉଥିଲା, ଗୀତ "ନିର୍ଭୟ କର ପ୍ରଭୁ ରାଜା ରାମ, ପତିତପାବନ ସୀତା ରାମ ।" ୧୯୮୩ରୁ ୧୯୮୮ ମସିହା ଭିତରେ ଶହୀଦନଗରରେ ସେ ବେଶ୍ ଆନନ୍ଦରେ ଥିଲେ ମଧ୍ୟ ଈଶ୍ୱର ସତେ ଯେପରି ତାହା ସହିପାରି ନଥିଲେ । ୧୯୮୪ ମସିହା ଥିଲା ବଂଶୀବାବୁଙ୍କ ପାଇଁ ସବୁଠାରୁ ଭୟଙ୍କର ସମୟ ।

**ଜ୍ୟେଷ୍ଠା କନ୍ୟା ବଲ୍ଲୀର ଦେହାନ୍ତ :**

ବଲ୍ଲୀ ଦୀର୍ଘଦିନରୁ କ୍ୟାନ୍‌ସରରେ ଭୋଗୁଥିଲା । କେବେ କେମିତି ବଲ୍ଲୀବୋଉ ତାକୁ ଦେଖିବାକୁ ଭୁବନେଶ୍ୱରରୁ ଜଟଣୀ ଯାଉଥିଲେ ସତ ମାତ୍ର ତା'ର କଷ୍ଟ ବା ନେବ କିଏ? ପାଖରେ ବସି ଠାକୁରଙ୍କୁ ଡାକିବା ଛଡ଼ା ଆଉ କିଛି କରିବାର ଉପାୟ ନାହିଁ । ଅବିନାଶ ବ୍ରତଘରର ପ୍ରାୟ ମାସେ ଦେଢ଼ମାସ ପୂର୍ବରୁ ଯନ୍ତ୍ରଣାରେ ଅତିଷ୍ଠ ହୋଇ ବଲ୍ଲୀ ଭୁବନେଶ୍ୱର ଆସିଲା ଡାକ୍ତର ଭଉଣୀ ଜ୍ୟାଇଁଙ୍କ ହେପାଜତରେ ରହିଲା । ତାରି ପ୍ରରୋଚନାରେ, ତାଗିଦରେ ଆଗ୍ରହ ତଥା ଅନୁରୋଧରେ ଅବିନାଶର ବ୍ରତଘର ହୋଇଥିଲା; କିନ୍ତୁ ସେଦିନକୁ ଆଉ ବଲ୍ଲୀ ତାକୁ ଦେଖିବାକୁ ବେଦୀ ପାଖକୁ ଯିବା

ଅବସ୍ଥାରେ ନଥିଲା । ବହୁତ ମାନସିକ ଅବସାଦ ଭିତରେ ମିତୁ ତା' ପୁଅକୁ ବ୍ରତକଲା । ବଲ୍ଲୀ କିନ୍ତୁ ଦୃଢ଼ ସଂକଳ୍ପରେ ଅଟଳ ଯେ ମିତୁ ପୁଅ ବ୍ରତହୋଇ ସାରିଲେ ତାକୁ ମୁଖାଗ୍ନି ଦେବ । ତେଣୁ ଦେହର ଯନ୍ତ୍ରଣାଠାରୁ ତା'ର ମନର ବିଶ୍ୱାସର ଶକ୍ତି ଅଧିକ ହେଲା । ସେ ଅବିନାଶର ବ୍ରତଘର ଅଷ୍ଟମଙ୍ଗଳା ଦିନ ସକାଳୁ ପ୍ରାଣତ୍ୟାଗ କଲା । ଈଶ୍ୱରଙ୍କ ଦରବାରରେ ସତେ ଯେପରି ଆଉ ଗୋଟିଏ ନିଷ୍ଠୁର ଦୃଶ୍ୟ ଅଭିନୀତ ହୋଇଗଲା । ଅଶୀରୁ ଊର୍ଦ୍ଧ୍ୱ ବୟସ୍କ ରୁଗ୍‌ଣ ପିତା, ଜୀବନସାରା କାନ୍ଦିଥିବା ଜନନୀଙ୍କ ସମ୍ମୁଖରେ ତାଙ୍କର ସନ୍ତାନ ରୋଗ ଭୋଗି ଭୋଗି ସଂସାରରୁ ବିଦାୟ ନେଲା । ନିରବରେ ବଂଶୀଧର ତାଙ୍କର ଅଯତ୍ନବର୍ଦ୍ଧିତା କନ୍ୟାର ମଥା ସାଉଁଳି ଦେଇ, ସେଠାରେ ବସି ରହିଥିଲେ ପଥର ପରି । ସେହିବର୍ଷ ଡିସେମ୍ବରରେ ବଂଶୀଧରଙ୍କ ସମୁଦୁଣୀ (ମିତୁର ଶାଶୁ) ଓ ୧୯୮୭ ମସିହା ଫେବୃୟାରୀ ମାସରେ ତାଙ୍କ ସମୁଦୀ (ମିତୁର ଶ୍ୱଶୁର) ଡକାଡକି ହୋଇ ଚାଲିଗଲେ । ସେହିବର୍ଷ ମିତୁର ଝିଆରୀ (ଦେଢ଼ଶୁରଙ୍କ ଝିଅ) ଟୁସିର ବିବାହ ମଧ୍ୟ ହେଲା । ଏହିଭଳି ବିଷାଦ ଓ ଆନନ୍ଦର ମିଶ୍ରଣରେ ଗଡ଼ିଚାଲିଲା ଜୀବନ । ମାତ୍ର ବଲ୍ଲୀକୁ ହରାଇ ସେ ବେଶ୍ ଭାଙ୍ଗିପଡ଼ିଥିଲେ । ଜୀବନସାରା କୌଣସି ସୁଖ ପାଇନଥିବା ଏହହି ନିରବ କର୍ମୀ ଝିଅଟି ଥିଲା ସେମାନଙ୍କ ପାଇଁ ସାତୋଟି ପୁଅଠାରୁ ଅଧିକ । ନନା ବୋଉଙ୍କ ଖୁସି ପାଇଁ ସେ ସଦା ଜାଗ୍ରତ ଥିଲା । ନିଜର ବ୍ୟକ୍ତିଗତ ଦୁଃଖକୁ ନିଜ ଭିତରେ ଚାପି ରଖି ନିଜକୁ ସମାଜର ଉପଯୋଗୀ କରିଥିଲା । ଖଦୀ ବୋର୍ଡ଼ରେ ସୁପରଭାଇଜର ଚାକିରୀ କରି ମାସକୁ କୋଡ଼ିଏ ଦିନ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଗସ୍ତ କରୁଥିଲା । ୧୯୬୪ ମସିହାରେ ଅନୁଷ୍ଠିତ ଅଖିଳ ଭାରତୀୟ କଂଗ୍ରେସ ଅଧିବେଶନରେ ସେ ଖଦୀ ବୋର୍ଡ଼ର କର୍ମୀ ଭାବରେ ତା'ର ଦାୟିତ୍ୱ ନିର୍ବହ କରିଥିଲା । ବଂଶୀବାବୁ ଭୁବନେଶ୍ୱର ଆସି ବଲ୍ଲୀ ଘରେ ରହି କଂଗ୍ରେସ ଅଧିବେଶନ ଦେଖିଥିଲେ । ତା'ର ମୃତ୍ୟୁରେ ବଂଶୀବାବୁ ବେଶ୍ ଭାଙ୍ଗି ପଡ଼ିଥିଲେ ।

**ପତ୍ନୀଙ୍କ ସ୍ୱର୍ଗାରୋହଣ :**

୧୯୮୪ ମସିହାରେ ମିତୁ ପୁଅର ବ୍ରତଘର ହେଲା ଓ ତା' ବଡ଼ଭଉଣୀର ମୃତ୍ୟୁ ହେଲା । ତା' ପରଠାରୁ ମାଆ ଶ୍ରୀମତୀ ଦେବୀ ଜୀବନ୍ମୃତ ଭଳି ବଞ୍ଚୁଥିଲେ । ଦିନେ ହେଲେ ସେ ବଂଶୀବାବୁଙ୍କ ପାଇଁ ଅଯଥା ଉଦ୍‌ବିଗ୍ନ ହୋଇନାହାନ୍ତି । "ତୁମ୍ଭେମାନେ କ'ଣ ଅଣହେଲା କରୁଛ ଯେ ମୁଁ ବ୍ୟସ୍ତ ହେବି ?" ବଲ୍ଲୀବୋଉ ଓରଫ ଶ୍ରୀମତୀ ଦେବୀ ବୃଦ୍ଧାବସ୍ଥାରେ ଶ୍ୱାସରୋଗ ଭୋଗିଛନ୍ତି । ଭୁବନେଶ୍ୱର ଆସିବା ପୂର୍ବରୁ ସେଥିପାଇଁ ଡାକ୍ତର କ୍ୱାଇଁ ତାଙ୍କୁ ଔଷଧ ଦେଉଥିଲେ । କ୍ରମେ ପରିସ୍ଥିତି ଜଟିଳ ହେଲା । ଶ୍ୱାସର ପ୍ରକୋପରେ

ସେ ଥରିଲେ । ବୁଧବାର ପର୍ଯ୍ୟନ୍ତ କୌଣସିମତେ ତାସ୍ ଖେଳିବାକୁ ଅପେକ୍ଷା କରୁଥିବା ବଲ୍ଲୀବୋଉ ଗୁରୁବାର ଦିନ ମଣିଷ ଚିହ୍ନିପାରିଲେ ନାହିଁ । ଘରେ କ୍ୱାଇଁ ସାଲାଇନ୍ ଲଗାଇ ଦେଲେ । ମାତ୍ର ଗୋଟିଏ ଦିନ ପରେ ଶୁକ୍ରବାର ପାହାନ୍ତା ଶନିବାର ଭୋରରୁ ସେ ଦେହତ୍ୟାଗ କଲେ । ମିତୁ ରାତିସାରା ମୁଣ୍ଡ ଉପରେ ବସିଥିଲା । ସକାଳୁ ଦେଖାଗଲା ଯେ ପ୍ରାଣପକ୍ଷୀ ଉଡ଼ିଯାଇଛି । ମିତୁ ଡାକିଲା, "ନନା ! ବୋଉ ଚାଲିଗଲା । ଆସନ୍ତୁ ଦେଖିବେ ।" "କ'ଣ ଜଗନ୍ନାଥ କହୁଛନ୍ତି ?" "ହଁ ନନା" । ତାଙ୍କୁ ଧରାଧରି କରି ପତ୍ନୀଙ୍କ ବିଛଣା ପାଖରେ ବସାଇ ଦିଆଗଲା । ପତ୍ନୀଙ୍କ ମର ଶରୀରରେ ହାତମାରି ସେ କହିଲେ, "କାହିଁ ଥଣ୍ଡା ହୋଇନି ତ ?" "ନନା, ସାଙ୍ଗେ ସାଙ୍ଗେ କ'ଣ ଦେହ ଥଣ୍ଡା ହେବ ? ସେଥିପାଇଁ ସମୟ ଲାଗିବ ତ ? " ତା'ପରେ ସେ ପତ୍ନୀଙ୍କ ମସ୍ତକରେ ହାତ ରଖିଲେ ଆଉ କହିଲେ, "ମୁଁ ତୁମକୁ ଛାଡ଼ି ପଳାଇଥିଲି । ସେଥିପାଇଁ ତୁମେ ମୋତେ ଛାଡ଼ି ଆଗ ଚାଲିଗଲ । ଯାଅ, ମୋ ପାଇଁ ଜାଗା ରଖଥିବ ।" ତା'ପରେ ସେ ଦାନ୍ତ ଘସିଲେ ଆଉ ସବୁଦିନ ପରି ଖାଇବାକୁ ମାଗିଲେ । ମିତୁ ଘରେ ଥିବା ସାନ ପିଲାଟି କହିଲା, "ଅଜା, ପାଟି କରନି ! ଖାଇଦିଅ ।" ବଂଶୀବାବୁ ବିରକ୍ତ ହେଲେ, "ମୁଁ କ'ଣ ଚୋରି କରିଛି ଯେ ପାଟି କରିବିନି । ମୁଁ ତ ଖାଇବି ଭୋକ କଲାଣି ।" ସେଠାରେ ଶବ ଶୋଭାଯାତ୍ରା ପାଇଁ କ୍ରମେ ଗହଳି ବଢୁଥିଲା ଓ ସମସ୍ତେ ଏ କଥା ଶୁଣି ଲୁହ ପୋଛୁଥିଲେ ଲୁଚେଇ ଲୁଚେଇ । ବଲ୍ଲୀବୋଉ କାଚ ସିନ୍ଦୂର ନେଇ ଅହ୍ୟସୁଲକ୍ଷଣୀ ସାଜି ବିଦାୟ ନେଲେ । ବଂଶୀବାବୁଙ୍କ ହାତ ଛୁଆଇଁ ତାଙ୍କ ସାନଭାଇ ଶ୍ରୀନିବାସ ମିଶ୍ର (ଦୁଆରୀ) ଖଇକଉଡ଼ି ବୁଣି ବୁଣି ଶବଯାତ୍ରାରେ ଚାଲିଲେ । ଖଣ୍ଡସାହୀରୁ ପୁତୁରା (ବଡ଼ଭାଇ ୰ ସୋମନାଥ ମିଶ୍ରଙ୍କ ପୁଅ) ଅଚ୍ୟୁତାନନ୍ଦ (ଗନ୍ଧି) ଆସିଲେ ଖୁଡ଼ିଙ୍କୁ ମୁଖାଗ୍ନି ଦେବାପାଇଁ । ସତ୍ୟନଗର ଶ୍ମଶାନରେ ଶ୍ରୀମତୀ ଦେବୀଙ୍କ ମର ଶରୀର ପୋଡ଼ି ପାଉଁଶ ହୋଇଗଲା । ଘଟଟିରେ ଅସ୍ଥି ଧରି ଅଚ୍ୟୁତାନନ୍ଦ ଗ୍ରାମକୁ ଗଲେ । ଗ୍ରାମରେ ଯଥାବିଧି ଶୁଦ୍ଧିକ୍ରିୟା ସମ୍ପନ୍ନ ହେଲା । କିନ୍ତୁ ତା'ପରେ ବଂଶୀଧରଙ୍କୁ ସମ୍ଭାଳିବା କଷ୍ଟକର ହେଲା । ପ୍ରତି ମୁହୂର୍ତ୍ତରେ ସେ ପାଟିତୁଣ୍ଡ କଲେ । "ରାଜୀବ ଗାନ୍ଧିଙ୍କୁ ଫୋନ୍ କର" କହି ସମସ୍ତଙ୍କୁ ବିରକ୍ତ କଲେ । "ରାଜୀବ, ରାଜୀବ ଏଠି କେହି ଚାହାନ୍ତିନି ମୁଁ ତୁମ ସାଙ୍ଗରେ କଥା କହେ । ତୁମେ ଶୁଣ । କେବେ ଥରେ ଆସ ।" ଏମିତି ଅସଙ୍ଗତ କଥା । ଅଧରାତିରେ ଉଠି ପାଟି କରନ୍ତି, "ଏଠି ଭାରି ଗହଳି, ଏତେ ଲୋକଙ୍କ ଜିନିଷପତ୍ର, ଟ୍ରଙ୍କ-ବାକ୍ସ, ମୁଁ ବସିବି କେଉଁଠି ?" ପୁଣି କହନ୍ତି, ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ସେ ଟ୍ରେଞ୍ଚ ତଳେ ଥିଲେ । କେତେକ ପିଲାଛୁଆ, ସ୍ତ୍ରୀଲୋକ ସେ ଟ୍ରେଞ୍ଚରେ ଥିଲେ ଆଉ ସେଠି ଝାଡ଼ା ଯିବାର ସୁବିଧା ନଥିଲା । ଏକଥା କହିବା ବେଳେ ଅଜାଣତରେ ସେ ବିଛଣାରେ ଝାଡ଼ା ପରିସ୍ରା କରି ଦେଉଥାଆନ୍ତି । ପୁଣି ମିତୁକୁ ଡାକି ସେ ତାଙ୍କ ସହିତ ଉଡ଼ାଜାହାଜରେ

ବସି ଲଣ୍ଡନ ଯାଇଛୁ କି ନାହିଁ ପଚାରନ୍ତି । ମିତୁ ବାଧ୍ୟରେ ହଁ କରେ । ତା'ପରେ ସେ ଖୁସି ହୁଅନ୍ତି । କେବେ କହନ୍ତି, ମିତୁର ଝିଅଜୋଇଁ ମଧ୍ୟ ତାଙ୍କ ସାଙ୍ଗରେ ପ୍ଲାଇଟ୍‌ରେ ଯାଇଥିଲେ । (ସେତେବେଳେ ମିତୁର ଝିଅ ସ୍କୁଲରେ ଥିଲା) । ଯଦି ବେଶି ବିରକ୍ତ ହେଉଥିଲେ, ସେ କିଛି ଖାଉନଥିଲେ । ସେତେବେଳେ ଏକମାତ୍ର ଜ୍ୱାଇଁ ହିଁ ତାଙ୍କୁ ବୁଝାଇ ଖାଇବାକୁ ଦେଉଥିଲେ । ନ ହେଲେ ମିତୁ ସ୍କୁଲ ପଢ଼ୁଆ ପୁଅ ଅବିନାଶ ଚଷମା ଲଗାଇ "ନନା ଖାଇଦିଅନ୍ତୁ" କହିଲେ ସେ ଭାବୁଥିଲେ ଜ୍ୱାଇଁ ଠିଆ ହୋଇଛନ୍ତି ଓ ସୁନାପିଲା ପରି ଖାଇଦେଉଥିଲେ ।

ଅରବିନ୍ଦ ନାମକ କେଉଁ ଅଜଣା ମଣିଷକୁ ବାରମ୍ବାର ଡାକି ନିଜ କାମ କରିବାକୁ ସେ ଅନୁରୋଧ କଲେ । ମିତୁର ଝିଅ ସେ କେତେଦିନ ଅରବିନ୍ଦ ଭୂମିକାରେ ନିଖୁଣ ଅଭିନୟ କରିଛି । ଅରବିନ୍ଦ ସାଜି କେବେ ଚେକ୍ ନେଇ ଟଙ୍କା ଆଣିଛି ତ କେବେ ଭିକ୍ସ ଆଣି ପାଦରେ ଘଷିଦେଇଛି । ପୁଣି ବିଶିଷ୍ଟ ଜନନେତା ଓ ରାଜ୍ୟପାଳଙ୍କୁ ନିଶ୍ଚୟ ଫୋନ୍ କରିବ ବୋଲି କହି ତାଙ୍କ ବିଶ୍ୱାସକୁ ଜିତିଛି । ଏମିତି ମଧ୍ୟ ହୋଇଛି ଯେ ନାତୁଣୀ ସହିତ କଥା କହୁଥିବା ବଂଶୀବାବୁ ଧରିନେଇଛନ୍ତି ଯେ ରାଜ୍ୟପାଳ ତାଙ୍କ ଝିଅ ଘରକୁ ଆସି ତାଙ୍କ ସହିତ ଦୁଃଖସୁଖ ହୋଇଛନ୍ତି । ତେଣୁ "ରାଜ୍ୟପାଳଙ୍କୁ ଯାହା ଜଳଖିଆ ଦେଉଛୁ ମୋ ପାଇଁ ଆଣ" ବୋଲି ସେ ମିତୁକୁ ତାଗିଦ କରିଛନ୍ତି । ତାଙ୍କ କଥା ନ ଶୁଣିଲେ ସେ କେବେ ବ୍ୟବହାର ନ କରିଥିବା ଅସଭ୍ୟ ଭାଷାରେ ଗାଳିମନ୍ଦ ମଧ୍ୟ ଦେଇଛନ୍ତି । ବଲ୍ଲୀବୋଉ ଯିବାର ଦଶମାସ ଦୁଇଦିନ ପର୍ଯ୍ୟନ୍ତ ସେ ଖୁବ୍ ବ୍ୟସ୍ତ ହୋଇଛନ୍ତି ଓ ଅନ୍ୟମାନଙ୍କୁ ଆତଙ୍କିତ ମଧ୍ୟ କରିନ୍ତି । ଦିନେ ଦିନେ ଏପରି ମଧ୍ୟ ହୋଇଛି ଯେ ସକାଳୁ କେବଳ ରକ୍ତଝାଡ଼ା ହୋଇଛି ଦଶ ପନ୍ଦର ଥର । ଡାକ୍ତର ଜ୍ୱାଇଁ ଧରିନେଇଛନ୍ତି ଆଉ ନୁହେଁ । କେଉଁଠୁ ପେଟ ଭିତରୁ ରକ୍ତ ଆସୁଛି । ଏ ବୟସରେ କିଛି କହିହେବନି । ଦୁଆରୀ ବାବୁ (ଶ୍ରୀନିବାସ ମିଶ୍ର) ଓ ତାଙ୍କ ପତ୍ନୀ ଫୋନ୍ ପାଇ ସନ୍ଧ୍ୟା ବେଳକୁ ଆସି ଦେଖିଛନ୍ତି ଯେ ତାଙ୍କ ଭାଇନା (ବଂଶୀବାବୁ) ବିଛଣାରେ ବସି ଆମ୍ବ ଖାଉଛନ୍ତି । ବେଶ୍ ଆମୋଦିତ ମଧ୍ୟ ହୋଇଛନ୍ତି । କେହି ବିଶ୍ୱାସ କରିପାରି ନାହାନ୍ତି ଯେ ଜୀବନୀ ଶକ୍ତିରେ ଭରା ସେହି ବୟସ୍କ ମଣିଷଟି ସମୟର ଧକ୍କାକୁ କେମିତି ସହିଯାଇଛି । 'ମୃତ୍ୟୁରୁ ଅମୃତକୁ ନିଅ' ବୋଲି ପ୍ରାର୍ଥନା କରୁଥିବା ମଣିଷଟି ମୃତ୍ୟୁକୁ ଅତିକ୍ରମ କରିପାରି ନାହିଁ; ମାତ୍ର ମୃତ୍ୟୁର ଭୟକୁ ଅତିକ୍ରମ କରିଛି ଅବଲୀଳା କ୍ରମେ ।

**ଶହୀଦନଗରରେ ଥିବା ସମୟର କେତୋଟି ଘଟଣା :**

ଶେଷ ସମୟକୁ ଶହୀଦନଗରରେ ବଂଶୀବାବୁ ପ୍ରାୟ ସାତବର୍ଷ ରହିଥିଲେ । ପ୍ରଥମ ବର୍ଷେ ଦି'ବର୍ଷ ସେ ବେଶ୍ ଭଲଥିଲେ । ମିତୁକୁ ଖବରକାଗଜର ମୁଖ୍ୟ ସମ୍ବାଦ

ପଢ଼ିବାକୁ କହୁଥିଲେ । ନିଜେ ରେଡ଼ିଓ ଶୁଣୁଥିଲେ ଓ ସବୁ ଜାତୀୟ ଆନ୍ତର୍ଜାତୀୟ ଖବର ମଧ୍ୟ ରଖୁଥିଲେ । ପାଞ୍ଜିରୁ ବାର୍ଷିକ ରାଶିଫଳ ପଢ଼ିବାକୁ ନାତୁଣୀ ଜିତୁନିକୁ ବାଧ୍ୟ କରୁଥିଲେ ।

ମିତୁ ୧୯୮୬ ମସିହାରେ ପିଏଚ୍.ଡି. ପାଇଲା । ସେହିବର୍ଷ ଡିସେମ୍ବର ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହେଉଥାଏ । ମିତୁ ଅତିଥିଙ୍କଠାରୁ ସାର୍ଟିଫିକେଟ୍ ଆଣିବ । ବଂଶୀବାବୁ କହିଲେ ସେ ନିଶ୍ଚୟ ଯିବେ କନ୍‌ଭୋକେସନ୍‌କୁ । ସବୁଠାରୁ ପ୍ରଥମେ ସେ ରେଡ଼ିଓ ଖବର ଶୁଣି ମିତୁକୁ କହିଥିଲେ ଯେ ଆଣବିକ କମିଶନର ଅଧ୍ୟକ୍ଷ ଡଃ ରାଜାରମନ୍ନା ଆସିଛନ୍ତି ସମାବର୍ତ୍ତନ ଉତ୍ସବର ଅତିଥି ହୋଇ । ମିତୁ ତା' ନନାଙ୍କୁ ନେବାକୁ ଭୟ କରୁଥିଲା, କାରଣ ଦୁଇଜଣ ତାଙ୍କୁ ଟେକି ଟେକି ନେବାକୁ ହେଉଥିଲା । ତାଙ୍କ ସହିତ ତାଙ୍କର ପରିଶ୍ରା କରିବା ପାତ୍ର, ପାନକୁଟା ଇତ୍ୟାଦି ଅବଶ୍ୟ ଯାଉଥିଲା । ତେଣୁ ମିତୁ ବୁଦ୍ଧି ଖର୍ଚ୍ଚ କରି କହିଲା, "ପିଲାମାନେ ଗଣ୍ଡଗୋଳ କରୁଛନ୍ତି, ସମାବର୍ତ୍ତନ ଉତ୍ସବରେ ଗୋଳମାଳ ହୋଇପାରେ । ଆପଣ କେମିତି ଯିବେ ? ଯେଉଁମାନେ ଆପଣଙ୍କ ସାଙ୍ଗରେ ଯିବେ, ସେମାନେ ଯଦି ଆପଣଙ୍କୁ ଛାଡ଼ି ପଳେଇ ଆସିବେ, ଆପଣଙ୍କ ଉପରେ ଦଳାଚକଟାରେ କିଏ ଚଢ଼ିଯିବେ ।" ଏକଥା ତା' ତୁଣ୍ଡରୁ ସରିବା ବେଳକୁ ବଂଶୀବାବୁ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, "ଆଜିକାଲି ପିଲା କିଛି ଭଲକାମ କରିବା ବେଳେ ଏମିତି କାହିଁକି ଆଚରଣ କରୁଛନ୍ତି", ଏତିକି କହି ସେ ବେହୋସ ହୋଇପଡ଼ିଲେ । ନକଲି ଦାନ୍ତ ସବୁ ଖସିପଡ଼ିଲା । ମିତୁ ଓ ତା' ପିଲାମାନେ ଛିଞ୍ଚା ବିଞ୍ଚା କରି ତାଙ୍କୁ ଚେତା କରାଇଲେ । ଦୁଇଦିନ ସେ ଠିକ୍ ଭାବରେ ଖାଇପାରିଲେ ନାହିଁ । ଆମ ଶିକ୍ଷା ବ୍ୟବସ୍ଥାର ଦୁର୍ଗତି ବିଷୟରେ କହି ଖୁବ୍ ବ୍ୟସ୍ତ ହେଲେ । ତା'ପରେ ମିତୁ ଆଉ କରେ କ'ଣ ? "ଆପଣଙ୍କୁ ଭିତରକୁ ଯିବାକୁ ପାଶ୍ ମିଳିବନି" କହି ସେ କୌଣସି ମତେ ଗୋଟିଏ ବିପଦରୁ ବର୍ତ୍ତିଗଲା ସିନା, ତା'ପରେ ଆସିଲା "ମୋ କଥା ଟିକେ ସେଠି ସମାବର୍ତ୍ତନ ଉତ୍ସବରେ ସମସ୍ତେ ଶୁଣନ୍ତେ ।" ଅଡ଼ିଓ କ୍ୟାସେଟ୍ ଆସିଲା । ମାତ୍ର ବଂଶୀବାବୁ ଦୀର୍ଘ ସମୟ କିଛି ଭାଷଣ ଭଳି କହିବା ଅବସ୍ଥାରେ ନଥିଲେ । ତେଣୁ ସେ ଡାକିଲେ ଓ ମିତୁ ଝିଅ ଜିତୁନି ତାକୁ ଲେଖିଲା । ତା' କଣ୍ଠରେ ସେସବୁ ଟେପ୍ କରାଗଲା । ବଂଶୀବାବୁ ଟେପ୍ ଶୁଣି ଆଶ୍ୱସ୍ତ ହେଲେ । ସେ ଭାଷଣରେ ଭାରତ ଗୁରୁଶିଷ୍ୟ ପରମ୍ପରା, ଏକଲବ୍ୟ, ଉପମନ୍ୟୁ, ଆରୁଣି, ନଚିକେତାଠାରୁ ତାଙ୍କ ଝିଅ ସଂଘମିତ୍ରାର କଥା ଥିଲା । ତା'ର ପିଲାଦିନ, ପଢ଼ାଶୁଣା ପ୍ରତି ଆଗ୍ରହ ବା ତା'ର ପରିବାର ଇତ୍ୟାଦି କଥା ମଧ୍ୟ ଥିଲା । ଟେପ୍‌ଟିକୁ ଯେମିତି ହେଲେ ନେଇ ସମାବର୍ତ୍ତନ ଉତ୍ସବକୁ ଯିବାକୁ ସେ ମିତୁକୁ ତାଗିଦ କଲେ । ମିତୁ ଫେରି ତାଙ୍କୁ ସାର୍ଟିଫିକେଟ୍ ଦେଖାଇବାରୁ ସେ କହିଲେ, "ମୋ

ଝିଅ, ସେ ଡକ୍ୟୁରେଟ୍ କରିବନି ? ସେ ନିଶ୍ଚୟ କରିବ ।" ତା'ପରେ ଟେପ୍‌ଟା ବାଜିଲା କି ନାହିଁ ପଚାରିବାରୁ ମିତୁ ହଁ କଲା । ପରଦିନ ସନ୍ଧ୍ୟାରେ ରେଡ଼ିଓ ସମ୍ବାଦରୁ ସମାବର୍ତ୍ତନ ଉତ୍ସବ କଥା ଶୁଣିବା ପରେ ବଂଶୀବାବୁ ପଚାରିଲେ, "କାହିଁ, ମୋ ଟେପ୍ ବାଜିଥିବା କଥା ତ ରେଡ଼ିଓରେ କହିଲା ନାହିଁ ।" ସେତେବେଳକୁ ମିତୁ ମିଛ କହି ନନାଙ୍କୁ ଠକିଥିବାର ଅପରାଧବୋଧରେ ଭାଙ୍ଗିପଡ଼ିଥିଲା ।

ଆଉ ଥରକର କଥା । ବଂଶୀବାବୁ ବଡ଼ ଏକାଦଶୀ କରନ୍ତି । ସେଦିନ ପୁରୀ, ଡାଲମା ଆଉ କ୍ଷିରୀ ହେବ ବୋଲି ବରାଦ ହେଲା । ବଂଶୀବାବୁ ମିତୁକୁ ଡାକି ହିସାବ କଲେ ତୁମ ଘରେ କେତେଜଣ ମଣିଷ । ମିତୁର ବଡ଼ ପରିବାର—ପୁତୁରା, ଝିଆରୀ ଓ ଭଣଜା । ପୁଣି ଶାଶୁ ଆସିଥାଆନ୍ତି । ମିତୁ କହିଲା ସେ ପୁରୀ ତରକାରୀ କରିଦେବ । ନନା ବ୍ୟସ୍ତ ହେବା ଦରକାର ନାହିଁ । କିନ୍ତୁ ବଂଶୀବାବୁ ଗଣିଲେ ପ୍ରଥମେ ମଣିଷ । ତା'ପରେ ଜଣକା କେତେଖଣ୍ଡ ପୁରୀ ଖାଇବେ । ତା'ପରେ କେତେ ଡାଲିରେ ଡାଲମା ହେଲେ କେତେଜଣ ଖାଇବେ । ଏମିତି କେତେ ସୁଜି, କେତେ ଚିନି ବା ଅମୂଲ କ୍ଷିରୀ ପାଇଁ ଦରକାର । ମିତୁର ଝିଆରୀ ଟୁସିକୁ ଡାକି ସେ ପଇସା ହିସାବ କରାଇଲେ । ଟୁସି ପଇସା ଆଣିବାକୁ ମନାକଲା । ସେତେବେଳକୁ ସମସ୍ତେ ହସୁଥାଆନ୍ତି । ମିତୁ କାନ୍ଦ କାନ୍ଦ ହୋଇ କହିଲା, "ନନା, ଆପଣ ଲୋକ ଡକାଇ ପୁରୀ ତରକାରୀ କରାନ୍ତୁ । ଗ୍ୟାସ୍ ପଇସା ହିସାବ କରନ୍ତୁ । ସେ ଲୋକକୁ ମଧ୍ୟ ପାରିଶ୍ରମିକ ଦିଅନ୍ତୁ । ମୁଁ ପାରିବିନି । ମୋର ତ ବହୁକୁଟୁମ୍ବୀ ପରିବାର, ଆପଣ ଗଣିଲେ କ'ଣ ଉଣା ହୋଇଯିବ ।" ମିତୁ କାନ୍ଦିଲା । ତା' ଶାଶୁ ତାକୁ ଖୁବ୍ ବୁଝାଇଲେ । "ନନାତ ପିଲାଭଳି ହେଲେଣି । ତାଙ୍କ କଥା ଧରନ୍ତିନି" ବୋଲି ଆଶ୍ୱାସନା ଦେଲେ । ମିତୁ ତା' ନନାଙ୍କୁ ଗାଧୋଇ ଦେଇ ସଫା ଲୁଙ୍ଗି ପିନ୍ଧାଇ ଦେଲା । ତା'ପରେ ସେ ଦୁଇଟା ହାଇ ମାରି ସେଇଠି ପଡ଼ିଗଲେ । ପାଟିର ଦାନ୍ତ ଖସିପଡ଼ିଲା । ସେତେବେଳକୁ ବଲ୍ଲୀବୋଉ ଜଟଣୀରେ ରୋଗିଣୀ ଝିଅ ବଲ୍ଲୀ ପାଖରେ ଥାଆନ୍ତି । ମିତୁର ଶାଶୁ ରୀତିମତ ବାହୁନିଲେ । କିନ୍ତୁ ମିତୁ ତାଙ୍କୁ ଲେମ୍ବୁ ଶୁଙ୍ଘାଇ, ଟିକିଏ ଲେମ୍ବୁପାଣି ପିଆଇ ସାଷ୍ଟମ କରାଇଲା । ସେଇଦିନଠାରୁ ଶାଶୁ ବି ମିତୁକୁ ବିରକ୍ତ ହେଲେ । ଏମିତି ଆଉଦିନେ ନନାଙ୍କ ମନରେ କଷ୍ଟ ଦେବନି ବୋଲି ମଧ୍ୟ ମିତୁ ଶପଥ କଲା । ସମୟ ଗଡ଼ି ଚାଲିଲା । ଦୁନିଆଁର କେଉଁ ଖବର ରେଡ଼ିଓ ମାଧ୍ୟମରେ ତାଙ୍କ ପାଖରେ ନ ପହଞ୍ଚୁଥିଲା ଏମିତି ନୁହେଁ । ଇନ୍ଦିରା ଗାନ୍ଧିଙ୍କ ପିଲାଦିନ ଓ ଫିରୋଜ ଗାନ୍ଧିଙ୍କ ସହିତ ତାଙ୍କର ସମ୍ପର୍କ ଇତ୍ୟାଦି କଥା ସେ କେତେଦିନ ବହୁତ ବେଶି କହୁଥିଲେ ।

ମିତୁ ଘରକୁ ସେଲୁନ୍‌ର ଗୋଟିଏ ବାରିକ ଆସି ବଂଶୀବାବୁଙ୍କୁ ଖିଅର କରେ । ତାକୁ ବଂଶୀବାବୁ ଅତି ଶ୍ରଦ୍ଧାରେ ଦୋଳ ବା ଦଶହରାରେ ନିଶ୍ଚୟ ପଚିଶି ପଇସା ବକ୍ସିସ୍

ଦେଉଥିଲେ । ନାପିତଟି ଏହି ଅର୍ଥ ପାଇ ଆମୋଦିତ ହେଉଥିଲା । ମିତୁ ତାଙ୍କୁ ପରେ ଅଧିକ କିଛି ଟଙ୍କା ଦେଉଥିଲା ସତ; ମାତ୍ର ବଂଶୀବାବୁ ଅଧିକ ଅର୍ଥ ଦେବା ସପକ୍ଷରେ ନଥିଲେ । ସେ ଭାବୁଥିଲେ ପଚିଶ ପଇସାରେ ସମୟ ହୁଏତ ଅଟକି ଯାଇଛି । ବଂଶୀବାବୁ ଶହୀଦନଗରରେ ଥିବାବେଳେ ବାରମ୍ବାର ବିଭିନ୍ନ ରାଜନେତାଙ୍କୁ ଦେଖା କରିବାକୁ ଚାହିଁ ବିଫଳ ହୋଇଛନ୍ତି । ମାତ୍ର ସେକ୍ ମତଲୁବ ଅଲ୍ଲି ବାରମ୍ବାର ତାଙ୍କୁ ସାକ୍ଷାତ କରିଛନ୍ତି । ମିତୁର ଛାତ୍ରଛାତ୍ରୀମାନେ ଆସି ଘର ଗହଳି କରିଛନ୍ତି । କିଶୋର ମହାପାତ୍ର ନାମକ ଜଣେ ଛାତ୍ର ତାଙ୍କର ସାକ୍ଷାତକାର ନେଇ ବାଲେଶ୍ୱରରୁ ବାହାରୁଥିବା ପତ୍ରିକା 'ବାର୍ତ୍ତାଉର୍ମି'ରେ ଛପାଇଛନ୍ତି । ବିଶିଷ୍ଟ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ ତାଙ୍କ ବିଛଣା ପାଖରେ ବସି ତାଙ୍କଠାରୁ ଆଗ୍ରହରେ କଥା ଶୁଣିଛନ୍ତି । ଏଭଳି ମଣିଷ ନିଜ ସମୟକୁ ଧରି ରଖିଥାଆନ୍ତି ବୋଲି ସେ ମିତୁକୁ କହିଛନ୍ତି । କଥା କଥାକେ ବାପା ମାଆଙ୍କ ଯତ୍ନ କରୁଥିବା ପିଲାଙ୍କ ଉଦାହରଣ ଦେବାବେଳେ ସେ ସଂଘମିତ୍ରାର ନାମ ମଧ୍ୟ ଉଲ୍ଲେଖ କରିଛନ୍ତି । ବାରମ୍ବାର ଆସି ବିଛଣା କଡ଼ରେ ବସିଛନ୍ତି ପର୍ଶୁରାମ ଦ୍ୱିବେଦ୍ୱୀ । ତାଙ୍କୁ ଦେଖି ବଂଶୀବାବୁ ଆନନ୍ଦରେ ଗଦ୍‌ଗଦ ହୋଇ କେତେ ପୁରୁଣା କଥା ଗପିଛନ୍ତି । ଗାଁରୁ ଆସିଛନ୍ତି ଧଡ଼ି ଭାଇନା ଓ ତାଙ୍କ ପୁଅ । ସେମାନେ ବଂଶୀବାବୁଙ୍କୁ ବେଶ୍ କେତେଦିନ ସାହାଯ୍ୟ କରି ଖଣ୍ଡସାହୀରେ ଚଳାଇଥିଲେ । ଆସିଛନ୍ତି ଉଦୟନାଥ ରଥଙ୍କ ବିଧବା ପତ୍ନୀ । ପୁଣି ଆସିଛନ୍ତି ପୁତୁରା ଅଚ୍ୟୁତାନନ୍ଦ ଓରଫ ଗନ୍ଧିବାବୁ ଓ କୁଶ ମିଶ୍ରଙ୍କ ପୁଅ ରଂଜନ ପ୍ରଭୃତି । ଏକାଧିକ ଥର ଶ୍ରୀନିବାସ ବାବୁଙ୍କ ପିଲାମାନେ ଆସି ବୁଲି ଯାଇଛନ୍ତି । ମିତୁର ଅନ୍ୟତମ ଶୁଭେଚ୍ଛୁ ମଉସା ଦେବେନ୍ଦ୍ର ମହାନ୍ତିଙ୍କ ପୁଅ ପ୍ରଦୀପ୍ତ ଓରଫ ଲୁଟୁକୁ ସେ ଖୁବ୍ ଶ୍ରଦ୍ଧା କରୁଥିଲେ ଓ ତା'ଦ୍ୱାରା ନିଜର ଦରକାରୀ ଜିନିଷ (ବ୍ୟାଟେରୀ, ସୁତୁଲୀ ପ୍ରଭୃତି) ମଗାଉଥିଲେ ।

ମିତୁର ଦେଢ଼ଶୁରଙ୍କ ଝିଅ ଟୁସି ଓ କବିତା ଥିଲେ ବଂଶୀବାବୁଙ୍କର ପ୍ରିୟପାତ୍ରୀ । ଟୁସିକୁ ସେ ଭଲ ପାଇଥିଲେ, କାରଣ ସେ ଇଂରାଜୀରେ ଅନର୍ସ ପରେ ଏମ୍.ଏ. ପଢୁଥିଲା ଓ କବିତା ଗଣିତରେ ବେଶ୍ ଦକ୍ଷ ଥିଲା । ଟୁସି, କବିତା ବେଳେ ବେଳେ ପରିହାସରେ ବଂଶୀବାବୁଙ୍କୁ କହୁଥିଲେ ଯେ ସେମାନଙ୍କୁ ସେ କିଛି ଉପହାର ଦେବା ଦରକାର । ବଂଶୀବାବୁ ପ୍ରତ୍ୟେକଙ୍କୁ ପାଞ୍ଚଟଙ୍କା, ନ ହେଲେ ତଉଲିଆ ବା ସାବୁନ କିଣିବାକୁ ପଇସା ଦେଉଥିଲେ । ଥରେ ମିତୁଘର କୁକୁର କ'ଣ ଖାଇବ ବୋଲି ବଂଶୀବାବୁ ଜାଣିବାକୁ ଚାହିଁଲେ । ପିଲାଏ କହିଲେ, ସେମାନେ ପଇସା ନେଇ ପାଖ ସାଉଥିଇଣ୍ଡିଆନ୍ ରେଷ୍ଟୁରାଣ୍ଟ ଯାଇ ଖାଇ ଆସନ୍ତି । ଏକଥା ବିଶ୍ୱାସ କରି ସେ କେତେଥର କୁକୁରମାନଙ୍କୁ ପଚିଶ ପଇସା ଲେଖାଏଁ ଦିଅନ୍ତି ଓ କାହା ସହିତ କଥାବାର୍ତ୍ତା କଲେ କହନ୍ତି, "ଏ କୁକୁରଗୁଡ଼ାକ

ଭାରି ବୁଦ୍ଧିଆ । ହୋଟେଲରେ ଯାଇ ନିଜେ ନିଜେ ପଇସା ଦେଇ ଇଟଲି ଖାଇ ଆସୁଛନ୍ତି ।" ଏକଥା ଶୁଣି ସମସ୍ତେ ହସନ୍ତି ମାତ୍ର ବଂଶୀବାବୁ ସେକଥା ବୁଝିପାରନ୍ତି ନାହିଁ । ପିଲାମାନେ ସେ ପଚିଶ ପଇସା ଦି'ତିନୋଟି ନେଇ ବାଦାମ ଖାଇଦିଅନ୍ତି । ମିତ୍ରର ବିବାହ ବାର୍ଷିକୀ ସେ ନିଶ୍ଚୟ ମନେ ପକାନ୍ତି ଓ ସେଦିନ ମିଠା କିଣିବାକୁ କିଛି ଟଙ୍କା ଦିଅନ୍ତି । ଥରେ ଥରେ ଦୂବ, ବରକୋଳି ପତ୍ର, ଅରୁଆ ଚାଉଳ ମଗାଇ ଝିଅ ଜୋଇଁଙ୍କୁ ତାଙ୍କ ବିଛଣା ପାଖରେ ବସାଇ ଆଶୀର୍ବାଦ ବି କରନ୍ତି । ସେ ଆଶୀର୍ବାଦ ଶ୍ଳୋକ ଏତେସମୟ ପଢ଼ନ୍ତି ଯେ ଶୁଣିବା ଲୋକମାନେ ଅଧୈର୍ଯ୍ୟ ହୋଇପଡ଼ନ୍ତି । ସେଇମିତି ନାତି ନାତୁଣୀଙ୍କ ଜନ୍ମଦିନରେ ମଧ୍ୟ ସେ ଶ୍ଳୋକ ପଢ଼ି ସେମାନଙ୍କୁ ଆଶୀର୍ବାଦ କରିଥାଆନ୍ତି ।

**ଶେଷ ଦୃଶ୍ୟ :**

ପ୍ରାୟ ଦଶମାସ ବଂଶୀବାବୁ ଖୁବ୍ କଷ୍ଟରେ କାଟିଛନ୍ତି । କେବେ ଖାଇବେ ନାହିଁ ବୋଲି ଜିଦ୍ କରିଛନ୍ତି ତ କେବେ ଗାଁକୁ ଯିବେ ବୋଲି ରୁଷି ବସିଛନ୍ତି । ଆସିଛି ଅକ୍ଟୋବର ମାସ । ମା' ଦୁର୍ଗାଙ୍କର ମର୍ତ୍ତ୍ୟକୁ ଆସିବାର ମାସ । ଦୁର୍ଗାପୂଜା ଆରମ୍ଭ ହେବାର ପ୍ରାୟ ମାସକ ପୂର୍ବରୁ ବଂଶୀବାବୁ ଅଭ୍ୟାସ ବଶତଃ ଚଣ୍ଡୀପାଠ ଆରମ୍ଭ କରନ୍ତି । ସେ ବର୍ଷ ଆଉ "ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ" ସ୍ୱର ଶୁଭିଲା ନାହିଁ । ସେ ପୂରା ନିରବ ହୋଇଗଲେ । ଅକ୍ଟୋବର ମାସ ପ୍ରାୟ ୬/୭ ତାରିଖ ବେଳକୁ ସେ ଆଉ ଉଠିବାକୁ ଚାହିଁଲେ ନାହିଁ । ଆଖିରେ ଲେଞ୍ଚରା ଦେଖାଦେଲା । ଡାହାଣ ଗୋଡ଼ର ବୁଢ଼ା ଆଙ୍ଗୁଠି, ଆଗରୁ ଯାହାର ନଖଟି ମରିଯାଇଥିଲା ତାହା ପୁଣି ପାଚିଲା । ସେଥିରେ ଟିକେ ପିମ୍ପୁଡ଼ି ମଧ୍ୟ ଲାଗିଲେ । "ପିମ୍ପୁଡ଼ି କାମୁଡୁଛନ୍ତି କାଟୁନି" କହିଲେ ମଧ୍ୟ ସେ ଆଉ ଜାଣିପାରିଲେନି ।

ଆଠ ତାରିଖ ସନ୍ଧ୍ୟା ପ୍ରାୟ ପାଞ୍ଚଟା ବେଳେ ବଂଶୀବାବୁଙ୍କ ପ୍ରାଣପକ୍ଷୀ ପିଞ୍ଜରା ଛାଡ଼ି ଉଡ଼ିଗଲା । ଝିଅ ଜୋଇଁ, ନାତି ନାତୁଣୀ ସମସ୍ତେ ଚାହିଁଥିଲେ ଓ ମୁହଁରେ ଗଙ୍ଗାଜଳ ଦେଇଥିଲେ । ବଂଶୀବାବୁଙ୍କର ଗୋଟିଏ ଜନ୍ମର ଦାୟିତ୍ୱ ସତେ ଯେପରି ସରିଯାଇଥିଲା । ବଞ୍ଚିଥିବା ବେଳେ ମଧ୍ୟ ସେ ସବୁ ସାଂସାରିକ ଜଞ୍ଜାଳରୁ ନିସ୍ପୃହ ଥିଲେ । ମୃତ୍ୟୁ ତାଙ୍କ ରୋଗଗ୍ରସ୍ତ ଶରୀରକୁ ପରମ ଶାନ୍ତି ଦେଇଥିଲା ।

ବଂଶୀବାବୁ ପରିବାରର ମଣିଷ ନଥିଲେ । ସଂସାରୀ ହୋଇପାରିଲେ ନାହିଁ । ଦେଶପାଇଁ ଦେଶଠାରୁ ଦୂରେଇ ଗଲେ ଦୀର୍ଘ ଚବିଶ ବର୍ଷ । ଦେଶପାଇଁ ସେ କ'ଣ କଲେ ବା ଦେଶ ତାଙ୍କ ପାଇଁ କ'ଣ କଲା, ସେ ହିସାବ ଆଉ କେହି କରିବେ ନାହିଁ ।

ଗିରିଜା ଭୂଷଣ ପଟ୍ଟନାୟକ ଅଶ୍ରୁ ସମ୍ବରଣ କରି ନପପାରି କହନ୍ତି, ତାଙ୍କୁ କେହି ବୁଝିପାରିଲେ ନାହିଁ । ସେ ନଥିଲେ ହୁଏତ ଦେଶ ସ୍ୱାଧୀନ ହେବାକୁ ଆହୁରି କିଛିବର୍ଷ ଅଧିକ ଲାଗିଥାଆନ୍ତା । ବିଦେଶରେ ଥିବା ଭାରତୀୟମାନଙ୍କୁ ସଂଗଠିତ କରି ସେ ସ୍ୱାଧୀନତା ଆନ୍ଦୋଳନକୁ ଆହୁରି ତୀବ୍ରତର କରିଥିଲେ ।

ବଂଶୀବାବୁଙ୍କର ଦେହାନ୍ତ ହେବା ପରେ ମିତୁ ଗାଁକୁ ଗାଡ଼ି ପଠାଇଲା । ଦଦେଇ ପୁଅ ଭାଇ (ଯିଏ ତା' ବୋଉକୁ ମୁଖାଗ୍ନି ଦେଇଥିଲେ) ଆସିବେ ଓ ଶବ ସତ୍କାର ଯେବ । ତାକୁ ଚକିତ କରି ଖାଲି ଗାଡ଼ି ଫେରିଆସିଲା । ତା' ଭାଇ ମନାକଲେ । ସେ ଏ ଦାୟିତ୍ୱ ନେଇପାରିବେ ନାହିଁ । ଶ୍ରୀନିବାସ ବାବୁ ତାଙ୍କ ପୁଅମାନେ ସେଠାରେ ଉପସ୍ଥିତ ଥିବାସତ୍ତ୍ୱେ କ୍ୱାଇଁ ଜଗନ୍ନାଥଙ୍କୁ ଅନୁରୋଧ କଲେ ମୁଖାଗ୍ନି ଦେବାକୁ । ଜଗନ୍ନାଥ ବାବୁ ଶ୍ୱଶୁରଙ୍କୁ ମୁଖାଗ୍ନି ଦେଲେ । ସତ୍ୟନଗର ମଶାଣିରେ ଯେଉଁଠି ବଂଶୀବାବୁଙ୍କ କନ୍ୟା କୃଷ୍ଣବଲ୍ଲଭୀ ଓ ପତ୍ନୀ ଶ୍ରୀମତୀ ଦେବୀଙ୍କ ଚିତା ଜଳିଥିଲା, ତାରି ପାଖରେ ବଂଶୀବାବୁଙ୍କ ଚିତାଗ୍ନି ଜଳିଲା ।

ଦଶାହ ବେଳକୁ ଗାଁରୁ ଖବର ଆସିଲା, ଝିଅଘରେ ଶୁଦ୍ଧକ୍ରିୟା ହେଲେ ବଂଶୀବାବୁ ପିତୃଲୋକରେ ମିଶିପାରିବେ ନାହିଁ । ତଥାପି ମିତୁର କ୍ରିୟା ନକରି ଉପାୟ ନଥିଲା । କେଉଁ ପିତୃଲୋକରେ ସେ ଅବସ୍ଥାନ କରିଛନ୍ତି, ତାହା ମିତୁ ଜାଣେନି; କିନ୍ତୁ ୨୦୦୨ ମସିହାରେ ମିତୁର ଝିଅ ଅପରାଜିତା ତା' ଅଜା ଆଇଙ୍କ ଅସ୍ଥି ନେଇ ଆହ୍ଲାବାଦ ତ୍ରିବେଣୀ ସଙ୍ଗମରେ ବିସର୍ଜନ କରିଦେଇଛି ।

ବଂଶୀବାବୁଙ୍କ ମୃତ୍ୟୁପରେ ତାଙ୍କୁ ଦେଖିବାକୁ ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ହରିହର କରଣ ଓ ମତଲୁବ ଅଲ୍ଲି ପ୍ରଭୃତି ଆସିଥିବାର ସମ୍ବାଦ ପଢ଼ି ପୂଜ୍ୟ ମନମୋହନ ମିଶ୍ର ସମାଜରେ ଲେଖିଥିଲେ, ହରିହର କରଣ କ'ଣ ଚିହ୍ନିପାରିବେ ବଂଶୀଧର ମିଶ୍ରଙ୍କୁ । କିନ୍ତୁ ସେମାନେ ବଂଶୀଧର ମିଶ୍ରଙ୍କୁ ସମ୍ମାନ ଜଣାଇବାକୁ ନୁହେଁ ବରଂ ଜଗନ୍ନାଥ ମହାପାତ୍ରଙ୍କ ଶ୍ୱଶୁରଙ୍କୁ ଶେଷ ସମ୍ମାନ ଜଣାଇବାକୁ ଆସିଥିଲେ ଏକଥା ତାଙ୍କୁ ବୁଝାଇ ଥାଆନ୍ତା କିଏ ? ନିରବରେ ଆସିଥିବା ମଣିଷଟି ପରିଣତ ବୟସରେ ବିଦାୟ ନେଲା ନିରବରେ । ସରିଗଲା ଗୋଟେ ଜୀବନ ।

ବଂଶୀଧର ମିଶ୍ରଙ୍କର ମରଶରୀର ମାଟିରେ ମିଶିଗଲା । କିନ୍ତୁ ତାଙ୍କର ଅଗଣିତ ଶୁଭେଚ୍ଛୁ ଓ ଛାତ୍ରଛାତ୍ରୀଙ୍କ ହୃଦୟରେ ସିଏ ମୂଲ୍ୟବୋଧର ପ୍ରତୀକ ଭାବରେ ଚିର ଜୀବନ୍ତ ରହିଛନ୍ତି । କଥା କଥାକେ ତାଙ୍କର ଉଦାହରଣ ଦିଆଯାଉଛି ।

ତାଙ୍କ ଜୀବନକୁ ଯଦି ଆମେ ଉତ୍ତର ଗୋଲାର୍ଦ୍ଧ ଓ ଦକ୍ଷିଣ ଗୋଲାର୍ଦ୍ଧ ଭାବରେ

ଦୁଇ ଭାଗ କରିବା, ତେବେ ଦେଖିବା ଯେ ଗୋଟିଏ ପାଖ ଯେତେବେଳେ ଆଲୋକ ଉଜ୍ଜ୍ୱଳ, ଆରପାଖ ସେତେବେଳେ ଅନ୍ଧକାରାଚ୍ଛନ୍ନ । ଗୋଟିଏ ଭାଗରେ ଜୀବନର ପ୍ରାଣପ୍ରାଚୁର୍ଯ୍ୟ ଭରି ହୋଇଥିବା ବେଳେ ଆର ଭାଗରେ ଅନାସକ୍ତର ତୁହିନ ଶୀତଳତା ଛାଇଯାଇଛି । ପ୍ରତିକ୍ରିୟାଶୀଳ ବିପ୍ଳବୀ ଓ ସ୍ଥିରଚିତ୍ତ ସନ୍ୟାସୀର ଏକତ୍ର ସମନ୍ୱୟରେ ଗଠିତ ଏହି ମଣିଷ । ସୂର୍ଯ୍ୟକାନ୍ତ ମଣିର ସେହି ବ୍ୟକ୍ତିତ୍ୱ ଭିତରେ ତେଜସ୍ୱିୟତା ଓ ଶୀତଳତାର ଅପୂର୍ବ ସମନ୍ୱୟ । ଜୀବନକୁ ଦେଖିବା, ବୁଝିବା ଓ ଉଦାହରଣ ଦେଇ ଜୀବନର ଅଳିକତାର ପ୍ରମାଣ କରିପାରିବାରେ ସେ ଥିଲେ ଦକ୍ଷ । ତେଣୁ ପରିଣତ ବୟସରେ ଶରୀର ରୋଗଗ୍ରସ୍ତ ହୋଇଥିଲେ ହେଁ ମନ ଥିଲା ଚିର ସୁନ୍ଦର । ସେଥିପାଇଁ ସେଯେତେ ସତର୍କତାରେ ଔଷଧ ସେବନ କରୁଥିଲେ ହେଁ ମୃତ୍ୟୁ ପାଇଁ ଭୟ ବା ଆଗ୍ରହ ଏ ଉଭୟରୁ ସେ ଥିଲେ ମୁକ୍ତ । ମହାରାଜା ଇନ୍ଦ୍ରଦ୍ୟୁମ୍ନ ନିଜେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ପରେ ନିର୍ବଂଶ ହେବାକୁ ପ୍ରଭୁଙ୍କୁ ବର ମାଗିଥିଲେ । ସେହିଭଳି ବର ନ ମାଗିଲେ ହେଁ ପୁତ୍ରସନ୍ତାନହୀନ ଏହି ବ୍ୟକ୍ତି କେବେ ସେଥିପାଇଁ ଦୁଃଖରେ ଭାଙ୍ଗିପଡ଼ି ନାହାନ୍ତି । ବରଂ ପ୍ରାର୍ଥନା କରିଛନ୍ତି—"ଆମାର ନା ଯେନ କରି ପ୍ରଚାର ଆମାର ଆପନ କାଜେ, ତୋମାର ଇଚ୍ଛା ହେଉ ହେ ପୂର୍ଣ୍ଣ ଆମାର ଜୀବନ ମାଝେ ।" ସେହି ପରମାତ୍ମାଙ୍କ ଇଚ୍ଛା ହିଁ ତାଙ୍କ ଜୀବନରେ ପୂର୍ଣ୍ଣ ହୋଇଛି । ନିଜେ ପୋଷ୍ୟପୁତ୍ର ହୋଇ ଆସିଥିଲେ ହେଁ ନିଜେ ପୋଷ୍ୟ ସନ୍ତାନ ଗ୍ରହଣ କରି ନାହାନ୍ତି କି ନିଜକୁ ଅନ୍ୟଠାରୁ ହୀନ ମଣି ନାହାନ୍ତି । ବରଂ ସମଗ୍ର ଜୀବନ ନିଜର ବିଚାରକୁ ଠିକ୍ ବୋଲି ବିଚାରି ବଞ୍ଚିଛନ୍ତି । ହୁଏତ ପୁତ୍ରସନ୍ତାନ ଥିଲେ ତାଙ୍କର ଜୀବନର ଗତି ଭିନ୍ନ ପ୍ରକାର ହୋଇଥାଆନ୍ତା । କିନ୍ତୁ ତା' ତ ବିଧିର ନିର୍ଦ୍ଦେଶ ନଥିଲା । ଗୋଟିଏ ଏକବାଗିଆ ଜଦବନ ଏକବାଗିଆ ହୋଇ ଚିର ଅବୁଝା ରହିଗଲା । ତା'ର ବିପୁଳ ଅନୁଭୂତି କାହା କାମରେ ଲାଗିଲା ନାହିଁ । ଯୁକ୍ତି ଓ ଭାବପ୍ରବଣତା ଏକାଠି ରହିପାରନ୍ତି ନାହିଁ । ଲେଖିକାର ପରଂପରା ସୂତ୍ରରେ ତାଙ୍କ ସହିତ ନାଡ଼ୀ ନକ୍ଷତ୍ରର ସମ୍ପର୍କ—ଯାହା କିଛି ଭାବପ୍ରବଣତା ଏଥିରେ ରହିଛି, ତାହା ଇଚ୍ଛାକୃତ ନୁହେଁ ସ୍ୱାଭାବିକ । ଏହିଭଳି ବିଚାରରେ ପୁସ୍ତକଟିକୁ ଆପଣେଇବାକୁ ଅନୁରୋଧ ।



# ତାଙ୍କ ସହ କେତୋଟି ମଧୁର ମୁହୂର୍ତ୍ତ

ଉପସ୍ଥାପନା : କିଶୋର ଚନ୍ଦ୍ର ମହାପାତ୍ର

(ବୟସ ଅଣ୍ଟା ଭାଙ୍ଗି ଦେଇଛି, ମାତ୍ର ଟଳାଇ ପାରି ନାହିଁ ମାନସିକ ସ୍ଥୈର୍ଯ୍ୟର ଶିଖର । ଚକ୍ଷୁର ଜ୍ୟୋତି ହୀନପ୍ରଭ—ମାତ୍ର ଅର୍ନ୍ତଦୃଷ୍ଟିର ଗଭୀରତା ଓ ଆତ୍ମପ୍ରତ୍ୟୟରେ ଆଜି ମଧ ଝଲମଲ କରୁଛି ସେହି ସ୍ଥବିର ବୃଦ୍ଧଙ୍କର ବାର୍ଦ୍ଧକ୍ୟପିଷ୍ଟ ମୁଖମଣ୍ଡଳ । ସେହି ବିସ୍ମୃତ ପ୍ରାୟ ଦେଶସେବକ ଶ୍ରୀଯୁକ୍ତ ବଂଶୀଧର ମିଶ୍ର, ଶହୀଦନଗର, ଭୁବନେଶ୍ୱରଙ୍କୁ ସରକ୍ଷାତ କରିଥିଲେ କିଶୋର ଚନ୍ଦ୍ର ମହାପାତ୍ର । ପ୍ରାରମ୍ଭିକ ସମ୍ଭାଷଣ ପରେ ସାକ୍ଷାତ୍‌କାରଟିଏ ନେବାକୁ ଇଚ୍ଛା କରି ଏହି କେତୋଟି ପ୍ରଶ୍ନ କରିଥିଲେ ସେ ।)

ପ୍ରଶ୍ନ ୧ – ଆପଣ ଦୀର୍ଘଦିନ (୧୯୨୮ରୁ ୧୯୫୧) ଦେଶ ପାଇଁ ବିଦେଶରେ କଟାଇଛନ୍ତି । ସେଥିପାଇଁ ଆପଣଙ୍କର କେବେବି କ୍ଷୋଭ ହୁଏନା ?

ଉତ୍ତର – ନାଁ, କ୍ଷୋଭ ହୋଇ ନାହିଁ । ବରଂ ଭାବୁଛି ଭଲ ହୋଇଛି । କିନ୍ତୁ ସ୍ତ୍ରୀ ଓ ଝିଅକୁ (୪ ମାସର) ଛାଡ଼ି ଯାଇଥିବାରୁ ଯାହା କିଛି ଯନ୍ତ୍ରଣା ତା'ତ ହୋଇଛି ।

ପ୍ରଶ୍ନ ୨ – ଆପଣ କେଉଁଠି ରହୁଥିଲେ ଓ ସେଠି ଆପଣଙ୍କର କାର୍ଯ୍ୟକ୍ରମ କ'ଣ ଥିଲା ?

ଉତ୍ତର – ସେ ତ' ଏତେ ରୋମାଞ୍ଚକର ଇତିହାସ—ମୁଁ ଘର ଛାଡ଼ିଲି ୧୯୨୮ରେ । ତୃତୀୟ ଥର Clan line Boatରେ ଯାଇ Londonରେ ଓହ୍ଲାଇଲି (୩୩-୩୪) । ଭାବୁଛନ୍ତି କି ଏତେ ପଇସା କେଉଁଠୁ ପାଇଲି ବୋଲି । ମୁଁ ଜାହାଜରେ ଖଲାସୀ କାମ କରୁଥିଲି ।

ପ୍ରଥମରେ—ନିଉୟର୍କ ଲସ୍‌ଏଞ୍ଜେଲସ୍, ସାନଫ୍ରାନ୍‌ସିସକୋ । ଦ୍ୱିତୀୟରେ–ଫିଲାଡେଲଫିଆ, ନିଉୟର୍କ, ବାଲଟିମେର, ୟୁକୋହାମା (ଟୋକିଓ ବନ୍ଦର) । ସେଠାରେ ମୋର ପ୍ରାଥମିକ ପର୍ଯ୍ୟାୟରେ କାମ ଥିଲା Indian Seamenମାନଙ୍କର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା । ସେମାନଙ୍କ ଘର ପାଇଁ ଚିଠି ଲେଖିବା, ତାଙ୍କ ପିଲାମାନଙ୍କୁ ପାଠ ପଢ଼େଇବା, ସେମାନଙ୍କ ପାଇଁ Service Security ଦେବାକୁ କର୍ତ୍ତୃପକ୍ଷଙ୍କୁ ଜଣାଇବା ଇତ୍ୟାଦି । କ୍ୟାପ୍‌ଟେନ୍ ଖୁସିହୋଇ କହିଲେ—"This man deserves a better post" ।

ପ୍ରଶ୍ନ ୩ – ଆପଣ ତ ଦୀର୍ଘଦିନ ଧରି ଶିକ୍ଷା ବ୍ୟବସ୍ଥା ସହିତ ସଂପୃକ୍ତ ଥିଲେ । ତେବେ ଶିକ୍ଷା ପଦ୍ଧତିର କି ଅସୁବିଧା ଆପଣ ଲକ୍ଷ୍ୟ କରିଛନ୍ତି ?

ଉତ୍ତର – ହଁ, ମୁଁ ପ୍ରାୟ ୧୯୫୨ରୁ ୧୯୭୦ ପର୍ଯ୍ୟନ୍ତ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଶିକ୍ଷକତା କରିଛି । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ Basic Education ବା କର୍ମାଭିମୁଖୀ ଶିକ୍ଷା ପଦ୍ଧତି ଉପରେ ମୋର ଖୁବ୍ ବିଶ୍ୱାସ । କେବଳ କଥାରେ ନୁହେଁ—ଏ ବିଷୟରେ ମୁଁ ବହୁତ ଲେଖାଲେଖି କରିଛି । ଆଜିର ଶିକ୍ଷା କେବଳ ଡିଗ୍ରୀ ପାଇଁ ବା ଚାକିରୀ ପାଇଁ ଉଦ୍ଦିଷ୍ଟ । ଏବେ ଜାତୀୟ ଶିକ୍ଷା ନୀତି ସମ୍ପର୍କରେ ଘମାଘୋଟ ଆଲୋଚନା ଚାଲିଛି । ସେଥିରେ ମଧ୍ୟ କାର୍ଯ୍ୟାଭିମୁଖୀ ଶିକ୍ଷା ପ୍ରତି ଗୁରୁତ୍ୱ ଦିଆଯାଇଥିବା ଆନନ୍ଦର ବିଷୟ ।

ପ୍ରଶ୍ନ ୪ – ରାଜନୀତି କହିଲେ ଆପଣ କ'ଣ ବୁଝନ୍ତି ? ଆଜି ମଧ୍ୟ ସୁସ୍ଥ ରାଜନୀତି ସମ୍ଭବ ବୋଲି ଆପଣ ଚିନ୍ତା କରନ୍ତି କି ?

ଉତ୍ତର – ରାଜନୀତି କହିଲେ ମୁଁ ବୁଝେ ଦେଶର ଆଭ୍ୟନ୍ତରୀଣ ଓ ବାହ୍ୟ ଅବସ୍ଥା ସମ୍ପର୍କରେ ସବିଶେଷ ଜ୍ଞାନ । କେବଳ ସେତିକି ନୁହେଁ, ତା' ସହିତ ଆନ୍ତର୍ଜାତୀୟ ସମସ୍ୟା ବି ରହିଛି । ଆମ ଯୁବକମାନେ ବେଶ୍ informative । କିନ୍ତୁ ସେମାନଙ୍କର ବିଶେଷ reaction ନାହିଁ । ବକ୍ତୃତା ଦେବା, ପ୍ଳାନ୍ ତିଆରି କରିବାଠାରୁ ଆରମ୍ଭ କରି ରିଲିଫ୍ ବାଣ୍ଟିବା ବା କଲେରା ରୋଗୀର ସେବା କରିବା ପାଇଁ ଦୃଢ଼ ମନୋବଳ ଲୋଡ଼ା— ଏଥିରେ ମୁଁ ବିଶ୍ୱାସ କରେ ।

ତୁମର ୨ୟ ପ୍ରଶ୍ନର ଉତ୍ତର ରାଜନୀତି ସମ୍ପର୍କରେ । କିନ୍ତୁ ମତାମତ ମୋର ନ ଦେବା ଭଲ । କାରଣ—ଦୁର୍ନୀତିର ଚେର ଏତେ ଗଭୀରକୁ ଯାଇଛି ଯେ ତାକୁ ଉପାଡ଼ି ପକାଇବାକୁ ବ୍ୟକ୍ତିଗତ ପ୍ରଚେଷ୍ଟା ଯଥେଷ୍ଟ ନୁହେଁ ।

ପ୍ରଶ୍ନ ୫ – ଆପଣଙ୍କର ଜୀବନ ତଥା ଆଦର୍ଶକୁ କିଏ ବିଶେଷ ଅନୁପ୍ରାଣିତ କରିଛନ୍ତି ?

ଉତ୍ତର – ରାମକୃଷ୍ଣ ଓ ବିବେକାନନ୍ଦ । ପିଲାଦିନେ କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କର 'ମୋ ବାଇଧନ' କବିତା ପଢ଼ି ବେଶ୍ ଅଭିଭୂତ ହୋଇଥିଲି । ତା'ପରେ ବିଭିନ୍ନ ପତ୍ରପତ୍ରିକାରୁ ପଢ଼ି ରାମକୃଷ୍ଣଙ୍କ ବାଣୀ ଦ୍ୱାରା ଅନୁପ୍ରାଣିତ ହୋଇଛି । ବିବେକାନନ୍ଦଙ୍କ ଦର୍ଶନ ମୋ ଜୀବନର ମାର୍ଗଦର୍ଶନ ଦେଇଛି—ଏହା ମୁଁ ଗର୍ବର ସହିତ କହିପାରେ ।

ପ୍ରଶ୍ନ ୬ – ଆପଣଙ୍କ ଜୀବନର କିଛି ସ୍ମରଣୀୟ ଘଟଣା କହିବେ କି ?

ଉତ୍ତର – ଦେଖନ୍ତୁ ଅନେକ କଥା ତ ବିସ୍ମରଣ ହୋଇଗଲାଣି । ତେବେ ୧୯୪୯ରେ ଗୋଆ, ଡାମନ, ଡିଉ ସ୍ୱାଧୀନ ହେବାକୁ ଚାହିଁଲା ବେଳେ କୃଷ୍ଣ ମେନନ୍ British High Commissioner ଥିଲେ । ସେ ସମୟରେ ନାସର,

ଟିଟୋ ଓ ନେହେରୁ ପ୍ରଥମେ Non alienment ଆରମ୍ଭ କରିଥିଲେ । ସେ ସମୟରେ ମୋ ଜାଣତରେ କୃଷ୍ଣମେନନ୍ ଦିଲ୍ଲୀକୁ ଖବର ଦେଇ ଲଣ୍ଡନରେ ପୋପ୍‌ଙ୍କ ସହିତ ଓ କାଇରୋରେ ନାସର ସାଂଗରେ ସାକ୍ଷାତ କରି ପର୍ତ୍ତୁଗୀଜ ଜାହାଜ ଯେଭଳି ଭାରତକୁ ଯିବାରେ ଡେରି ହୁଏ, ତା'ର ବନ୍ଦୋବସ୍ତ କରି ଆସିଥିଲେ ।

୧୯୨୭-୨୮ ମିରଟ୍ କନ୍‌ସ୍ପିରେସି ଯୋଗୁଁ League of Nation ଆରମ୍ଭ ହେଲା । ମୁଁ ଲଣ୍ଡନରେ ଥିଲାବେଳେ (ସମୟ ଠିକ୍ ମନେ ପଡୁନି) କମଳା ନେହେରୁ ଓ ଲଜପତ୍ ରାୟଙ୍କ ସ୍ତ୍ରୀଙ୍କ ଉପରେ ପୋଲିସ୍ ଲାଠିଚାଳନା କଲେ ବୋଲି ଖବର ପହଞ୍ଚିଲା । ଆମେ Protest meeting କରିଥିଲୁ । ଭାରତୀୟ ନାରୀର ଆଖିର ଲୁହ ବଡ଼ ଭୟଙ୍କର । ଶୈବ୍ୟା ଆଖିର ଲୁହ ବିଶ୍ୱମିତ୍ରର ଦର୍ପ ଚୂର୍ଣ୍ଣ କଲା । ସୀତା ଆଖିର ଲୁହରେ ସ୍ୱର୍ଣ୍ଣଲଙ୍କା ଛାରଖାର ହୋଇଗଲା । ଦ୍ରୌପଦୀ ଆଖିର ଲୁହ କୌରବ ବଂଶ ନିପାତ କରିଥିଲା । ଜଣେ ମୁସଲମାନ (କହିଛି ତ ମୁଁ ମୁସଲମାନ ସୁରତ ଅଲ୍ଲୀ ନାଁ କହି ସେଠାରେ ଥିଲି), ମୁହଁରୁ ଏକଥା ଶୁଣି ସେମାନେ ମୋତେ ହିନ୍ଦୁ ବୋଲି ଜାଣିଗଲେ ।

ପ୍ରଶ୍ନ ୭ – ହିନ୍ଦୁ ଜାଣିବା ପରେ ସେମାନଙ୍କର କିଛି ପ୍ରତିକ୍ରିୟା ହୋଇଥିଲା କି ?

ଉତ୍ତର – ବିଶେଷ କିଛି ନୁହେଁ । ଜାହାଜୀମାନଙ୍କର ସ୍ୱାର୍ଥ ତଥା ମୋର ବିଭିନ୍ନ ସମ୍ବାଦପତ୍ର ସହିତ ସମ୍ପର୍କ, ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଭିତରେ ହିନ୍ଦୁ/ମୁସଲମାନ ଏ ବିଷୟରେ କେହି ବିଶେଷ ଆଗ୍ରହ ପ୍ରକାଶ କରିବା ମୁଁ ଜାଣିନି ।

ପ୍ରଶ୍ନ ୮ – ଆପଣ ବିଦେଶରୁ ଫେରି ରାଜନୀତିରେ ପ୍ରବେଶ କରିବାକୁ ଚାହିଁଥିଲେ କି ?

ଉତ୍ତର – ହଁ, କିଛିଦିନ ସେ ଦିଗରେ ବେଶ୍ ଆଗ୍ରହ ଥିଲା । ମୁଁ ଫେରିଲା ବେଳକୁ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଓ ରାଧାନାଥ ରଥ ଶିକ୍ଷାମନ୍ତ୍ରୀ ଥିଲେ । ମୁଁ ଭାବୁଛି ସେତେବେଳକୁ ରାଜନୀତିର ବେଶ୍ କିଛି ଆତ୍ମମ୍ଭରିତା ପ୍ରବେଶ କରିଯାଇଥିଲା । ତେଣୁ ପ୍ରତ୍ୟକ୍ଷ ରାଜନୀତି ପାଇଁ ମୁଁ ନିଜକୁ ଉପଯୁକ୍ତ ମନେକଲି ନାହିଁ । ସାଧାରଣ ହାଇସ୍କୁଲ ଶିକ୍ଷକଟିଏ ହେବାକୁ ଇଚ୍ଛା କଲି । ଅଧିକନ୍ତୁ ଆଜି ବି ମୁଁ ରାଜନୀତି ଓଡ଼ିଶା ବା ଭାରତ ନୁହେଁ, ବିଶ୍ୱ ରାଜନୀତି ସମ୍ପର୍କରେ ବେଶି ଆଗ୍ରହଶୀଳ ।

ପ୍ରଶ୍ନ ୯ – ଭାରତରେ ଗଣତନ୍ତ୍ରର ଭବିଷ୍ୟତ କ'ଣ ବୋଲି ଆପଣ ଚିନ୍ତା କରନ୍ତି ?

ଉତ୍ତର – ସମାଜବାଦ ଓ ପୁଞ୍ଜିବାଦୀ ଗଣତନ୍ତ୍ର ଏକାଠି ରହିପାରିବେ ନାହିଁ । ତୁଳସୀଦାସଙ୍କ ଭାଷାରେ, 'ଯହାଁ ରାମ ୱାହାଁ କାମ ନହିଁ, ଯହାଁ କାମ ୱହାଁ ରାମ ନହିଁ ।' ତୁଳସୀ, ଯେ କଭି ନହିଁ ହୋ ସକତା, ରବି ରଜନୀ ଏକ ଥାମ ନହିଁ । ସବୁଠାରେ ତ Class ଅଛି । ଏପରିକି ବସ୍‌ରେ ବା ସିନେମା ହଲ୍‌ରେ ମଧ୍ୟ । ତେଣୁ Classless societyର ଚିନ୍ତା ମଧ୍ୟ ଅପ୍ରାସଙ୍ଗିକ । ତେବେ ଯେଉଁ ଦେଶରେ ରାଜା ରାମଚନ୍ଦ୍ର minority (ଧୋବା ଧୋବଣୀ) କଥାକୁ ସମ୍ମାନ ଦେଇ ନିରପରାଧା ପତ୍ନୀଙ୍କୁ ନିର୍ବାସନ ଦେଇପାରନ୍ତି, ସେଠି ଗଣତନ୍ତ୍ର ଅଧିକା କ'ଣ କରିପାରିବ ?

ପ୍ରଶ୍ନ ୧୦ – ଆପଣ 'ଯୁବକ' ନାମକ ପତ୍ରିକା ସମ୍ପାଦନା କରୁଥିଲେ । ଆପଣଙ୍କ ମତରେ ଦେଶ ଗଠନରେ ସମ୍ବାଦପତ୍ରମାନଙ୍କର ଭୂମିକା କ'ଣ ?

ଉରେ – 'ଯୁବକ' ବାହାରିଲା ପରେ ବିଦେଶୀ ଶାସକ ତାକୁ ବାଜ୍ୟାପ୍ତ କରିଦେଇଥିଲେ । ସେଥିରେ ମୋର ବହୁତ ଆର୍ଥିକ କ୍ଷତି ହେଉଥିଲା । ତଥାପି 'ଯୁବକ' ସେତେବେଳର ଓଡ଼ିଶା ପାଇଁ ଏକ ଚାଞ୍ଚଲ୍ୟ ଥିଲା । ତା'ପରେ ମୁଁ ବ୍ୟକ୍ତିଗତ ଭାବରେ ବିଶ୍ୱାସ କରେ Pen is mighter than sword । ପୃଥିବୀରେ ଯାହାକିଛି ବିପ୍ଳବ ହୋଇଛି, ସବୁରି ମୂଳରେ ଅଛି ସମ୍ବାଦପତ୍ରର ବଳିଷ୍ଠ ଭୂମିକା । ତେବେ ସମ୍ବାଦପତ୍ରଗୁଡ଼ିକ ପରସ୍ପରର ଦୋଷଦର୍ଶୀ ନ ହୋଇ 'ଏକମାତ୍ର ବିଶ୍ୱବିଧାତା ଏକ ମାନବ ଜାତି' ଲକ୍ଷ୍ୟ ପଥରେ ଅଗ୍ରସର ହେବା ଉଚିତ । ଗଠନମୂଳକ ସମାଲୋଚନା ସର୍ବାଦୌ ଆବଶ୍ୟକ ।

ପ୍ରଶ୍ନ ୧୧ – ଯୁବସମାଜ ଦେଶ ଗଠନରେ କିଭଳି ନିଜର ଶକ୍ତି ବିନିଯୋଗ କରିପାରିବେ ?

ଉତ୍ତର – ଯୁବସମାଜ କହିଲେ ମୁଁ ବିଶେଷ ଭାବରେ ଛାତ୍ରସମାଜକୁ ହିଁ ବୁଝିଥାଏ । ଶିକ୍ଷକମାନେ ଯଦି ସତ୍‌ଚିନ୍ତା କରି ଛାତ୍ରମାନଙ୍କୁ ଶିକ୍ଷାଦାନ କରିବେ, ତେବେ ଉଭୟଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ସହଜ ହେବ । ମୁଁ ଶିକ୍ଷକତା କରୁଥିବା ସମୟରେ ତ ବହୁତ ଛାତ୍ର ଅଶାନ୍ତି (ଉଦାହରଣ ୧୯୬୪ର ଛାତ୍ର ଆନ୍ଦୋଳନ) ହୋଇଥିଲା । କିନ୍ତୁ ଆଜି ପର୍ଯ୍ୟନ୍ତ ମୋର ଛାତ୍ରମାନେ ମୋତେ ପିତୃତୁଲ୍ୟ ଭକ୍ତି କରନ୍ତି । ଦୀର୍ଘଦିନ ପରେ ମଧ୍ୟ ଏଠାକୁ ମୋତେ ସାକ୍ଷାତ କରିବାକୁ ଆସନ୍ତି । ମୁଁ ମଧ୍ୟ ଭାବେ ପାଠ ପଢ଼ାଇବା ସମୟରେ

ଗୁଡ଼ିଏ ବିକାଶମୁଖୀ ଆମ୍ଭାଙ୍କର ସେବା କରୁଥିଲି ମାତ୍ର । ତେବେ ଯୁବସମାଜ ସର୍ବଦା ନିଜର ମତାମତ ଦେବାରେ ନିର୍ଭୀକ ହେବା ଉଚିତ ବୋଲି ମୁଁ ମନେକରେ । କିଛି ଉଚିତ ଆଦର୍ଶର ଅଭାବ ହିଁ ଯୁବ ଅଶାନ୍ତିର ମୂଳ କାରଣ । ନିଜର ଗୌରବମୟ ଅତୀତ ସହିତ ସମ୍ପୃକ୍ତି ଓ ସେଥିପାଇଁ ଗୌରବ କରିପାରିଲେ ହିଁ ଯୁବକର କଥା ଓ କାମରେ ସ୍ଥିରତା ଆସିଥାଏ ।

ପ୍ରଶ୍ନ ୧୨ – ଗାନ୍ଧିଜୀଙ୍କୁ ଆପଣ ଦେଖିଛନ୍ତି କି ? ଗାନ୍ଧିବାଦ କିଗଳି ଆପଣଙ୍କୁ ପ୍ରଭାବିତ କରିଛି ?

ଉତ୍ତର – Young India ପଢ଼ି ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱର ସମ୍ପର୍କରେ ଆସିଥିଲି । ୧୯୨୧ରେ ସାବରମତୀରେ ପ୍ରଥମେ ତାଙ୍କୁ ଦେଖିବାର ସୁଯୋଗ ପାଇଲି । ସେତେବେଳେ ସମଗ୍ର ଭାରତ ସେହି ଲଙ୍ଗଳା ଫକୀରର କଥା ପଦରେ ନାଚି ଉଠୁଥିଲା । ଆମ୍ଭେମାନେ ତ ଯୁବକ । କିନ୍ତୁ ଗାନ୍ଧିଜୀଙ୍କ ସହିତ ଅଳ୍ପ ବାର୍ତ୍ତାଳାପ ମଧ୍ୟରେ ସେ ବିବେକାନନ୍ଦ ଭାବନା ଦ୍ୱାରା ବିଶେଷ ଅନୁପ୍ରାଣିତ ବୋଲି କହୁଥିଲେ ।

ପ୍ରଶ୍ନ ୧୩ – ଆପଣଙ୍କ ସମଧର୍ମୀ ବନ୍ଧୁ (ଯେଉଁମାନଙ୍କ ସହଯୋଗରେ ଆପଣ ସ୍ୱରାଜ୍ୟର ସ୍ୱପ୍ନ ଦେଖୁଥିଲେ) ସେମାନଙ୍କ ସମ୍ପର୍କରେ କିଛି କହିବେ କି ?

ଉତ୍ତର – ବିଦେଶ ଯିବା ପୂର୍ବରୁ କଟକ ଜିଲ୍ଲା ରାଇସୁଙ୍ଗୁଡ଼ାରେ 'ନିର୍ଭୟ ନିଳୟ' ନାମକ ଏକ ଅନୁଷ୍ଠାନ ଗଢ଼ିଥିଲୁ । (ପ୍ରାୟ ୧୯୨୫-୨୭ ହେବ) ଓଡ଼ିଶାର ବନ୍ଧୁମାନଙ୍କ ମଧ୍ୟରେ ରାମପ୍ରସାଦ ସିଂହ ଓ ଶରତ ପଟ୍ଟନାୟକ ମୋ ସହିତ ବହୁତ ସହଯୋଗ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ବ୍ରହ୍ମାନନ୍ଦ ଶତପଥୀ, ଉମାନାଥ ମହାନ୍ତି, ମିଛୁ ପଣ୍ଡିତ ପ୍ରଭୃତି ଥିଲେ । ହରିଜନ ପିଲାମାନଙ୍କୁ ଶିକ୍ଷା ଦେବା ଥିଲା ଆମର କାମ । ଆମେ ଗଢ଼ିଥିବା ସ୍କୁଲର ନାମ ଥିଲା 'ଗଣପତି ବିଦ୍ୟାଳୟ' । ସକାଳୁ ମୁଢ଼ି ଧରି ବସି ହରିଜନ ପିଲାଙ୍କୁ ବାଣ୍ଟିବା, ହିସାବ କରିବା ଶିଖାଇବା, ସନ୍ଧ୍ୟାରେ ହୋମିଓପ୍ୟାଥିକ୍ ବାକ୍ସ ସହିତ ବୁଲି ବୁଲି କାହାର ସୁବିଧା ଅସୁବିଧା ବୁଝିବା ।

ସେ ସମୟରେ ଥରେ ବଢ଼ି ହୋଇଥିଲା । ମୁଁ କ'ଣ କାମରେ ନିର୍ଭୟ ନିଳୟରୁ ଘରକୁ (ଖଣ୍ଡସାହୀ) ଆସିଥିଲି । ଦାସେ ଆପଣେ (ଗୋପବନ୍ଧୁ ଦାସ) Andrews ଦେଶବନ୍ଧୁ ଆଣ୍ଡୁଜ ସାହେବ ମୋତେ ନିର୍ଭୟ ନିଳୟରେ

ଖୋଜି ଖୋଜି ନ ପାଇ ଆମ ଗାଁରେ ଆସି ପହଞ୍ଚିଲେ । ସେଦିନ ରାତିରେ ଆମ ଗାଁ ସ୍କୁଲଘରେ ରହିଥିଲେ । ତାଙ୍କୁ ଆମ ଘରକୁ ନେଇ ନଡ଼ିଆ, ଚୂଡ଼ା ଖାଇବାକୁ ଦେଇ ନିଜକୁ କୃତାର୍ଥ ମଣିଥିଲି ।

ପ୍ରଶ୍ନ ୧୪ – ଗାରତୀୟ ସମାଜ ବ୍ୟବସ୍ଥା ଓ ପାଶ୍ଚାତ୍ୟ ବ୍ୟବସ୍ଥା ମଧ୍ୟରେ ଆପଣଙ୍କର ଧାରଣା କ'ଣ ?

ଉତ୍ତର – ପାଶ୍ଚାତ୍ୟ ସମାଜ ବ୍ୟବସ୍ଥାର Cmpulsory Primary Education ଓ ଶିକ୍ଷଭିତ୍ତିକ ସଭ୍ୟତା ଦୃଷ୍ଟି ଆକର୍ଷଣକାରୀ । ମାତ୍ର ଆମର ପାରିବାରିକ ଜୀବନ ବେଶ୍ ଭଲ । ତାଙ୍କର ଶୃଙ୍ଖଳା ଉପରେ ଅଧିକ ଗୁରୁତ୍ୱ ଦିଆଯାଏ । ଯାହା ପ୍ରାଚ୍ୟ ସମାଜରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ—ତାହା ହେଲା ନାରୀର ମାତୃତ୍ୱ ପରେ ଭାରତୀୟମାନଙ୍କର ଗଭୀର ବିଶ୍ୱାସ ଓ ସେଥିପ୍ରତି ସମ୍ମାନବୋଧ । ପତ୍ନୀତ୍ୱ ସେହି ମାତୃତ୍ୱ ପାଇଁ ଏକ ପ୍ରସ୍ତୁତି ପର୍ବ ମାତ୍ର । ପାଶ୍ଚାତ୍ୟ ସମାଜ ବ୍ୟବସ୍ଥାରେ ଯାହା ମୋତେ ସବୁଠାରୁ ବ୍ୟତିବ୍ୟସ୍ତ କରିଥିଲା, ତାହା ହେଉଛି Old Homeର ଅନୁଭୂତି ।

ପ୍ରଶ୍ନ ୧୫ – ମୁଁ ଏଥର ବାଲେଶ୍ୱରର ପିଲା ହିସାବରେ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି । ବାଲିଆପାଳରେ ହେବାକୁ ଯାଉଥିବା କ୍ଷେପଣାସ୍ତ୍ର ଘାଟି ସମ୍ପର୍କରେ ଆପଣଙ୍କର ମତ କ'ଣ ?

ଉତ୍ତର – କ୍ଷେପଣାସ୍ତ୍ର ଘାଟି ତ ନିହାତି ଜରୁରୀ । ତେବେ ସେଥିପାଇଁ ବାଲିଆପାଳ ଭିନ୍ନ ଅନ୍ୟ ସ୍ଥାନ ଦେଖାଯାଇପାରେ । ସ୍ଥାନ ନିର୍ବାଚିତ ହିଁ ବର୍ତ୍ତମାନର ଗୁରୁତ୍ୱପୂର୍ଣ୍ଣ ସମସ୍ୟା । କ୍ଷେପଣାସ୍ତ୍ର ଘାଟି ନିର୍ମାଣ ନୁହେଁ, ସ୍ଥାନଚ୍ୟୁତମାନଙ୍କୁ କ୍ଷତିପୂରଣ ଦେବା ମଧ୍ୟ କଷ୍ଟକର ବ୍ୟାପାର । ଏ ପର୍ଯ୍ୟନ୍ତ ତ ହୀରାକୁଦ ବା ରେଙ୍ଗାଲିର ବାସଚ୍ୟୁତମାନଙ୍କୁ ଯଥେଷ୍ଟ କ୍ଷତିପୂରଣ ଦିଆଯାଇ ପାରିନି ।

ପ୍ରଶ୍ନ ୧୬ – ଆପଣଙ୍କର ଶେଷ ଜୀବନ କିଭଳି କଟିବ ବୋଲି ଆପଣ ଇଚ୍ଛା କରନ୍ତି ?

ଉତ୍ତର – "ତେମାର ଇଚ୍ଛା ହେଉ ଗୋ ପୂର୍ଣ୍ଣ ଆମାର ଜୀବନ ମାଝେ" ସେ ଈଶ୍ୱର ହୁଅନ୍ତୁ ବା ଆଲ୍ଲା ହୁଅନ୍ତୁ ।

---

ତ୍ରୈମାସିକ ସାହିତ୍ୟ ପତ୍ର—ବାର୍ତ୍ତାଉର୍ମି, ବ୍ୟାସ ବିଶେଷାଙ୍କ
ସମ୍ପାଦନା—ଭବେନ୍ଦ୍ର ନାଥ ମହାପାତ୍ର, ଜାନୁୟାରୀ-୧୯୮୭

# ତରଙ୍ଗିତ ମହାସିନ୍ଧୁ

## ବଂଶୀଧର ମିଶ୍ର—ସୁରତ ଅଲ୍ଲି

ମନମୋହନ ମିଶ୍ର

ଗତ ଅକ୍ଟୋବର ଆଠ ତାରିଖ ଦିନ ଲୋକବନ୍ଧୁ ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁଙ୍କର ଜନ୍ମତିଥିର ପୂର୍ବଦିନ ଜଣେ ପରିଣତ ବୟସ୍କ ବ୍ୟକ୍ତିଙ୍କର ଦେହାନ୍ତ ହୋଇଗଲା ।

ଦୈନିକ 'ସମାଜ'ର ୧୯୮୮ ମସିହା ଅକେଟାବର ୧୨ ତାରିଖ ଡାକ ସଂସ୍କରଣରେ ଏହି ଘଟଣାଟିର ବିବରଣୀ ବହୁ ପାଠକଙ୍କର ଦୃଷ୍ଟିରେ ପଡ଼ିଥିବ । କ୍ଷୁଦ୍ର ବିବରଣୀର ସାରାଂଶ ହେଲା—ବଂଶୀଧର ମିଶ୍ର ନାମକ ଜନୈକ ସ୍ୱାଧୀନତା ସଂଗ୍ରାମୀ ମରିଗଲେ । ତାଙ୍କର ମୃତ୍ୟୁ ଖବର ପାଇ ଓଡ଼ିଶା ସରକାରଙ୍କର ମନ୍ତ୍ରୀ ହରିହର କରଣ ସଂଖାଳିବାକୁ ଆସିଥିଲେ । ମୃତ୍ୟୁ ବେଳକୁ ତାଙ୍କର ବୟସ ଛୟାନବେ ବର୍ଷ ହୋଇଥିଲା ।

କିଏ ଏହି ବଂଶୀଧର ମିଶ୍ର ?

ବୟସ ହିସାବରେ ପଣ୍ଡିତ ଗୋପବନ୍ଧୁଙ୍କଠାରୁ ମାତ୍ର ଅଠର ବର୍ଷ ସାନ । ପଣ୍ଡିତ ନେହେରୁ, ନେତାଜୀ ସୁଭାଷ ପ୍ରଭୃତିଙ୍କର ସମସାମୟିକ । ଏପରି ଜଣେ ବ୍ୟକ୍ତି କିଏ ଏହି ବଂଶୀଧର ମିଶ୍ର, ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ତାଙ୍କର ତ୍ୟାଗ, ନିଷ୍ଠା ବା ଦେଶପ୍ରେମର ଅବଦାନ କ'ଣ ? ଏତେଦିନ ଯାଏ ସେ କିପରି ଲୋକଲୋଚନ ଅଗୋଚରରେ ରହିଥିଲେ ?

୧୯୬୦ ଦଶକର କୌଣସି ବର୍ଷ, ବୋଧହୁଏ ୧୯୬୫ । ସେ କାଳର ଅଧୁନାଲୁପ୍ତ ସ୍ୱତନ୍ତ୍ର ପାର୍ଟିର ବଡ଼ପଣ୍ଡା ପ୍ରଫେସର ରାଙ୍ଗା କଟକରେ ତାଙ୍କର ପାର୍ଟିର ଗୋଟିଏ ପ୍ରଚାର ସଭାରେ ଆପଣା ପାର୍ଟିର ଉଦାରନୈତିକ, ରକ୍ଷଣଶୀଳ ତତ୍ତ୍ୱ ଓ କାର୍ଯ୍ୟକ୍ରମ ବୁଝାଉଥାଆନ୍ତି, ହଠାତ୍ ଶ୍ରୋତାମଣ୍ଡଳୀ ଭିତରୁ ଜଣେ ବୟୋବୃଦ୍ଧ ବ୍ୟକ୍ତି ଛିଡ଼ାହୋଇ ତାଙ୍କର ଭାଷଣର ପ୍ରତିବାଦ କଲେ ଓ ଅତୀତରେ ରାଙ୍ଗା ଅନ୍ୟାନ୍ୟ ସମାଜବାଦୀମାନଙ୍କ ସହିତ କିଭଳି ନୀତି ଓ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ଅଙ୍ଗୀକାରବଦ୍ଧ ହୋଇଥିଲ, କିଭଳି ଭାରତ ସ୍ୱାଧୀନତା ପୂର୍ବ ବର୍ଷମାନଙ୍କରେ ଆଟଲି, ବେଭିନ୍, ମରିସନ୍, ପେଥିକ୍ ଲରେନ୍ସ ପ୍ରଭୃତିଙ୍କ ସହିତ ଆଲୋଚନା ବେଳେ ରଙ୍ଗା କି ମତ ପ୍ରକାଶ କରିଥିଲେ, ତାହା ବୟାନ କରି ଏବେ ତାଙ୍କର ଚିନ୍ତାର ଓଲଟ ବାଜିକୁ ସମାଲୋଚନା କରିଥିଲେ ।

ବୟୋବୃଦ୍ଧଙ୍କର ପ୍ରତିବାଦରେ ସ୍ୱତନ୍ତ୍ର ପାର୍ଟିର ଅଧ୍ୟକ୍ଷ (ରାଜାଜୀଙ୍କ ମୃତ୍ୟୁପରେ) ପ୍ରଫେସର ରାଙ୍ଗା ଥମକି ଗଲେ ।

"ଏ ଧୋତୀ କୁର୍ତ୍ତା ପିନ୍ଧା ମଫସଲିଆ ଲୋକ କିଏ ? ସାହେବୀ ଉଚ୍ଚାରଣରେ ଚମତ୍କାର ଇଂରାଜୀ କହିବାବାଲା ଏ କିଏ ?" ମଞ୍ଚାସୀନ କେହି ତାଙ୍କୁ କହିଦେଲା, "ସେ ବଂଶୀଧର ମିଶ୍ର ।"

ରାଙ୍ଗା ଆପଣାର ଭାଷଣର ସ୍ରୋତ ବନ୍ଦ କରି ପଚାରିଲେ, "ଆପଣ କିଏ ? ଆପଣଙ୍କୁ ତ ମୁଁ ଚିହ୍ନେ ନାହିଁ । ଆପଣଙ୍କ ସହିତ ମୋର ତ କେବେ କୌଣସି ଆଲୋଚନା ହୋଇ ନାହିଁ । ବଂଶୀଧର ମିଶ୍ର କହିଲେ, "ଲଣ୍ଡନରେ ପପ୍‌ଲାର କାଉଣ୍ଟିର ପପ୍‌ଲାର ଟାଉନ୍‌ରେ ଲେବର ପାର୍ଟି ଅଫିସ୍ ଆପଣଙ୍କର ମନେ ପଡୁଛି ? ମୁଁ ସୁରତ ଅଲ୍ଲି, ସେତେବେଳେ ସେଠାରେ ସେକ୍ରେଟାରୀ ଥିଲି ।"

ରାଙ୍ଗା ମଞ୍ଚାରୁ ଓହ୍ଲାଇ ଆସି ବଂଶୀଧରଙ୍କୁ କୁଣ୍ଢାଇ ପକାଇଲେ ଓ ତାଙ୍କୁ ମଞ୍ଚକୁ ଆଣିବାକୁ ଜିଗର କଲେ । ବଂଶୀଧର ମିଶ୍ର ସ୍ପଷ୍ଟ ଗଳାରେ କହିଥିଲେ, ମୋର ସ୍ଥାନ ଆପଣଙ୍କର ମଞ୍ଚ ଉପରେ ନୁହେଁ । ମୋର ସ୍ଥାନ ଏଇଠି, ଯେଉଁଠି ମୁଁ ବସିଛି ।

ଏବେ ପ୍ରଫେସର ରାଙ୍ଗା ଲୋକସଭାରେ ଇନ୍ଦିରା କଂଗ୍ରେସର ସଭ୍ୟ । କେବଳ ସଭ୍ୟ ନୁହନ୍ତି, ବରିଷ୍ଠ ପ୍ରଦର୍ଶନୀ ସ୍ତମ୍ଭ । ରାଜୀବ ଗାନ୍ଧିଙ୍କର ନିର୍ଭରଯୋଗ୍ୟ ଘନିଷ୍ଠ ସମର୍ଥକ । ଆଉ ସେହି ବିଲାତର ସୁରତ ଅଲ୍ଲି । କଟକ ଜିଲ୍ଲାର ସେକାଳର କୁଳୀନ ସମ୍ଭ୍ରାନ୍ତ ପରିବାରର ଲକ୍ଷ୍ମୀଧର ମିଶ୍ରଙ୍କର ଜ୍ୟେଷ୍ଠ ପୁତ୍ର ବଂଶୀଧର, ଯାହାଙ୍କର ମରଦେହ ଗତ ଆଠ ଅକ୍‌ଟୋବର ଦିନ ଦଶଜଣିଆ 'ରାମନାମ ସତ୍ୟ ହେ' ପଟୁଆରରେ ଭୁବନେଶ୍ୱର ସତ୍ୟନଗର ଶ୍ମଶାନରେ ପାଉଁଶ ହୋଇ ମାଟିରେ ମିଶିଯାଇଛି ।

**ଜନ୍ମ ଓ ଯୌବନ :**

ପୁରୀର ନରେନ୍ଦ୍ର ପୋଖରୀ କୋଣରୁ ଯେଉଁ ସଡ଼କଟି ଯାଇ ବଡ଼ଦାଣ୍ଡରେ ମିଶିଛି, ସେହି ସଡ଼କର ବାଁପଟ ଦାଢ଼ରେ ଏବେ ବି ଗୋଟିଏ ପୁରୁଣା କାଳର ଦମ୍ଭିଲା କୋଠାଘର ଛିଡ଼ା ହୋଇଛି । ଲେଖକର ପିଲାଦିନେ ସେହି କୋଠାଟି ସାହି ଭିତରେ ଏକମାତ୍ର ଶଙ୍ଖୁ କୋଠାଘର ଥିଲା । ସେହି କୋଠାର ଶୀର୍ଷରେ ଲେଖାଅଛି ଗୋପବନ୍ଧୁ ମିଶ୍ର, ଖଣ୍ଡସାହୀ, ସ୍ଥାପନ ବର୍ଷ-୧୯୧୮, ଖଣ୍ଡସାହୀ ହେଉଛି କଟକ ଜିଲ୍ଲାର କେନ୍ଦ୍ରାପଡ଼ା ରାସ୍ତାରେ ନିଶ୍ଚିନ୍ତକୋଇଲି ପାଖରେ ଗୋଟିଏ ପ୍ରସିଦ୍ଧ ଗ୍ରାମ । ସେଥିରେ ଖଣ୍ଡସାହୀର ମିଶ୍ର ବଂଶ ଏକ ଡାକହାକ ନାଁ ଥିଲା । ଫକୀର ମୋହନ ସେନାପତିଙ୍କର ମାମୁଁ ଉପନ୍ୟାସର କୁଆଁର ଗୋବିନ୍ଦ ଚନ୍ଦ୍ରଙ୍କର ବଂଶ ଭଳି । ଅଚଳାଚଳ ଭୂସମ୍ପତ୍ତିଶାଳୀ, ସମ୍ଭ୍ରାନ୍ତ ପରିବାର । ଅବଶ୍ୟ ସାମନ୍ତବାଦୀ ସଭ୍ୟତାର ଅବସାନ ପରେ ଆଜି ସେ ପୂର୍ବ ବିଭବ ନ ଥିବାର

କଥା, ନାହିଁ । ସେହି ବଂଶରେ ୧୮୯୨ରେ ଜନ୍ମ ହୋଇଥିଲେ ବଂଶୀଧର ମିଶ୍ର । ଅବଶ୍ୟ ତାଙ୍କର ପିତା ଲକ୍ଷ୍ମୀଧର ମିଶ୍ରଙ୍କ ଅମଳରୁ ସମ୍ପତ୍ତି ଭାଗ ଭାଗ ହୋଇଯାଇଥିଲା । ଯେତେଦୂର ଜଣାପଡ଼େ ପଣ୍ଡିତ ଗୋପବନ୍ଧୁ ହଜାରିବାଗ ଜେଲରୁ ଖଲାସ ହେବା ପରେ ୧୯୨୩ ଶେଷ କିମ୍ବା ୧୯୨୪ର ଆରମ୍ଭରେ ବଂଶୀଧର ପୁରୀ ସହରରେ ଦାସେ ଆପଣଙ୍କୁ ଭେଟିଥିଲେ । ସେତେବେଳକୁ ଅସହଯୋଗ ଆନ୍ଦୋଳନର ଜୁଆର ଭଟ୍ଟା ପଡ଼ିଯାଇଥାଏ । ଗାନ୍ଧିଜୀଙ୍କର ଅସହଯୋଗ ଆହ୍ୱାନରେ ଯେଉଁ ଦେଶପ୍ରେମୀ ଯୁବକମାନେ ସ୍କୁଲ କଲେଜ ବର୍ଜନ କରି ବାହାରି ଆସିଥିଲେ, ସେମାନଙ୍କ ଭିତରେ ବଂଶୀଧର ଥିଲେ ଅନ୍ୟତମ । ଆନ୍ଦୋଳନ ପ୍ରତ୍ୟାହୃତ ହେଲାପରେ ସେମାନଙ୍କ ମଧ୍ୟରୁ ବହୁଳାଂଶ ପୁଣି ପାଠପଢ଼ାରେ ଯୋଗ ଦେଇ ଆପଣାକୁ ଉପାର୍ଜନକ୍ଷମ କରିବାରେ ଲାଗିଲେ । କିନ୍ତୁ ବଂଶୀଧରଙ୍କ ଭଳି ଆଉ ଥୋକେ ଯୁବକ ବର୍ଜିତ ସ୍କୁଲ କଲେଜ ଭିତରେ ପ୍ରବେଶ କରିବାକୁ ଅନିଚ୍ଛୁକ ହେଲେ । ଆନ୍ଦୋଳନର ଭଟ୍ଟାବେଳେ ସକ୍ରିୟ କର୍ମୀମାନଙ୍କୁ ନିଯୁକ୍ତ ରଖିବା, ସେମାନଙ୍କର (ପରିବାର ଥିଲେ ପରିବାରର) ଭରଣ ପୋଷଣ ଇତ୍ୟାଦି ସମସ୍ୟା ବହୁ ରାଜନୈତିକ ମୁକ୍ତି ଆନ୍ଦୋଳନର ଗୁରୁତର ସମସ୍ୟା ହୋଇ ରହିଆସିଛି । ପଣ୍ଡିତ ଗୋପବନ୍ଧୁ ୧୯୨୪ଠାରୁ ତାଙ୍କର ମୃତ୍ୟୁ ୧୯୨୮ ପର୍ଯ୍ୟନ୍ତ ଏହି ସମସ୍ୟାର ସମ୍ମୁଖୀନ ହୋଇଥିଲେ । ଏହି ସମୟରେ ସେ ସାପ୍ତାହିକ ସମାଜରେ ଏହି ସମସ୍ୟା ବିଷୟରେ ଏକାଧିକ ବାର ଆଲୋଚନା କରିଛନ୍ତି ।

ବୋଧହୁଏ (କାହିଁକି ପ୍ରାୟ ନିଶ୍ଚିତ ଭାବରେ) ଗୋପବନ୍ଧୁଙ୍କର ସମ୍ମତି କ୍ରମେ ବଂଶୀଧର ଜାତୀୟ କଂଗ୍ରେସର ପ୍ରାଦେଶିକ କମିଟିରେ ସକ୍ରିୟ ଭାବରେ ଯୋଗ ଦେଇ ଇଂରାଜୀ ସ୍କୁଲ କଲେଜ ପାଠପଢ଼ାକୁ ଚିରକାଳ ପାଇଁ ଜଳାଞ୍ଜଳି ଦେଇଥିଲେ । ଏହାର ପ୍ରମାଣ, ତାଙ୍କର ପରିବାରର ଅନ୍ୟ କନୀୟାନ ପିଲାମାନେ ଇଂରାଜୀ ସ୍କୁଲ କଲେଜ ପାଠରେ ସ୍ନାତକୋତ୍ତର ସ୍ତରକୁ ଯାଇଛନ୍ତି । ଏହାଛଡ଼ା ୧୯୨୩-୨୪ ବେଳକୁ ଖଣ୍ଡସାହୀର ଖଣ୍ଡମଣ୍ଡଳରେ ବହୁ ଯୁବକ ଇଂରାଜୀ ସ୍କୁଲ କଲେଜ ପାଠ ଗ୍ରହଣ କରି ଜୀବିକା ଅର୍ଜନ କରି ଆସିଛନ୍ତି । ତେଣୁ ସକ୍ରିୟ ରାଜନୀତିକ କର୍ମୀ ଭାବରେ ନିଜକୁ ଗଢ଼ିବାରେ ବଂଶୀଧରଙ୍କର ସଂକଳ୍ପ ଓ ସାହସ ସେତେବେଳେ ଏକ ସାମାନ୍ୟ ଘଟଣା ନଥିଲା ।

ଜୁଆର....ଭଟ୍ଟା :

୧୯୨୫ରୁ ୧୯୨୯ ଯାଏ ବଂଶୀଧର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସାଧାରଣ ସଂପାଦକ ଥିଲେ । (ଅବଶ୍ୟ ସେତେବେଳର ଜାତୀୟ କଂଗ୍ରେସର ସାଧାରଣ

ସଂପାଦକଙ୍କ ସହିତ ଆଜିର ଇନ୍ଦିରା କଂଗ୍ରେସର ସାଧାରଣ ସଂପାଦକଙ୍କର ତୁଳନା ନିତାନ୍ତ ଗ୍ଲାନିକର ବିଡ଼ମ୍ବନା ।) ସେହିକାଳ ଜଣେ ସଂଗଠକ ପାଇଁ କଠିନ ଓ ନିଷ୍କରୁଣ ଅଭାବର କାଳ ଥିଲା । ଚୌରିଚୌରାଠାରେ ଶିଖର ସ୍ପର୍ଶ କରିଥିବା ଆନ୍ଦୋଳନ, ଯାହା ବିଲାତରେ ବାସ୍ତବିକ ହୃତକମ୍ପ ଘଟାଇଥିଲା ଓ ଯାହା ଯୋଗୁଁ ବ୍ରିଟିଶ କେଶରୀ ପ୍ରମାଦ ଗଣିଥିଲା, ତାହାର ଅପ୍ରତ୍ୟାଶିତ ପ୍ରତ୍ୟାହାର ଏକ ପକ୍ଷରେ ବିଲାତ ସରକାରକୁ ଅହେତୁକ ଔଦ୍ଧତ୍ୟ ହେଇଥିଲା ଓ ଜାତୀୟ ଆନ୍ଦୋଳନ ଭିତରେ ହତାଶା, ନିଷ୍ଫଳତା ସନ୍ଦେହ ଓ ଦଳତ୍ୟାଗ ଇତ୍ୟାଦି ସ୍ୱାଭାବିକ ବ୍ୟାଧି ଦେଖା ଦେଇଥିଲା । ସକ୍ରିୟ କର୍ମୀମାନଙ୍କର ବୀରତ୍ୱ ପ୍ରତି ସେମାନଙ୍କ ପୁନର୍ବାର ଅବସ୍ଥା ଫେରାଇ ଆଣିବା ପାଇଁ ଓ ସେମାନଙ୍କର ନୈତିକ ଦମ୍ଭ ସୃଷ୍ଟି କରିବା ପାଇଁ ସେତେବେଳେ ବଂଶୀଧର ଗୋଟିଏ ସାମୟିକ ପତ୍ର 'ଯୁବକ' ପ୍ରକାଶ କରିଥିଲେ । ଏଥିରେ ମୁକ୍ତି ଆନ୍ଦୋଳନର କର୍ମୀମାନଙ୍କର ଦାୟିତ୍ୱ, କର୍ତ୍ତବ୍ୟ, ଅଧିକାର ଓ ବିଗିନ୍ନ ସମସ୍ୟା ବିଷୟରେ ଓ ସେମାନଙ୍କର ଦୈନନ୍ଦିନ ଉଲ୍ଲେଖନୀୟ ଅଗ୍ରଗତି ବା ଗଲତି ବିଷୟରେ ବିଚାର ଆଲୋଚନା ପ୍ରକାଶିତ ହେଉଥିଲା । ଏହି ସାମୟିକ ପତ୍ରଟି ସମସ୍ତ ଆର୍ଥିକ ଓ ସାଂଗଠନିକ ଅଭାବ ଅସୁବିଧା ସତ୍ତ୍ୱେ ସେତେବେଳେ ମୁକ୍ତି ସଂଗ୍ରାମୀ କଂଗ୍ରେସର କର୍ମୀ ମହଲରେ ଆଶା ଓ ଆତ୍ମପ୍ରତ୍ୟୟ ସୃଷ୍ଟି କରିପାରିଥିଲା ।

**ଦାରୁଣ ଧକ୍କା :**

୧୯୨୮ରେ ପଣ୍ଡିତ ଗୋପବନ୍ଧୁଙ୍କର ଅକାଳ ମୃତ୍ୟୁ ଏହି ସମସ୍ତ ଉଦ୍ୟମ ଉପରେ ଏକ ହତାଶା କାଳିମାର ଛାୟା ଢାଙ୍କିଦେଲା । ବଂଶୀଧର ଓ ତାଙ୍କର ମୁଷ୍ଟିମେୟ ସହକର୍ମୀ ନେତା, ବନ୍ଧୁ ଓ ମାର୍ଗଦର୍ଶକଙ୍କ ଅଭାବରେ ମ୍ରିୟମାଣ ହୋଇପଡ଼ିଥିଲେ ।

୧୯୨୯ରେ ସେହି କର୍ମୀଦଳଙ୍କୁ ଘେନି ବଂଶୀଧର କଲିକତା କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ଯାଇଥିଲେ । ଏକେ ତ ଗୋପବନ୍ଧୁଙ୍କର ବିୟୋଗର ଭରସାହୀନତା ଓ ଅନ୍ୟ ପକ୍ଷରେ ପ୍ରତ୍ୟାହୃତ ଆନ୍ଦୋଳନର ପ୍ରତିକ୍ରିୟାର ପ୍ରତିସ୍ରୋତ । ଏତିକି ବେଳେ ସେ କଲିକତା କଂଗ୍ରେସରେ ଚଟ୍ଟଗ୍ରାମର ଅଗ୍ନିଯୁଗର ବିପ୍ଳବୀ ସୂର୍ଯ୍ୟ ସେନ ଓ ତାଙ୍କର କେତେକ ସହକର୍ମୀଙ୍କୁ ଭେଟିଲେ । ସେମାନଙ୍କ ଭିତରେ ଉଦ୍ଦୀପନା ଓ ଆତ୍ମବିଶ୍ୱାସ ଦେଖି ସେ ଚମତ୍କୃତ ହେଲେ । ସେମାନଙ୍କ ଦଳରେ ସେ ଯୋଗଦେଲେ । ସେମାନେ ମଧ୍ୟ ତାଙ୍କୁ ଆଗ୍ରହ ଓ ଉତ୍ସାହ ସହକାରେ ଗ୍ରହଣ କରିନେଲେ ।

**ବର୍ମାର ମୁକ୍ତି ବିପ୍ଳବ :**

ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନର ଅବ୍ୟବହିତ ପୂର୍ବରୁ ସେମାନଙ୍କ ସଂଗଠନ ଓ ପ୍ରସ୍ତୁତି ବିଷୟରେ ବ୍ରିଟିଶ ସାମ୍ରାଜ୍ୟବାଦୀମାନଙ୍କର ତୀକ୍ଷ୍ଣ ନଜର ଦେଲା । ବଂଶୀଧର

ସେମାନଙ୍କ ସହିତ ଯୋଗଦେବାର ଅବ୍ୟବହିତ ପରେ ଗୋଟିଏ ପୋଷ୍ଟାଲ ପାର୍ସଲରେ କିଛି ବେଆଇନ ଅସ୍ତ୍ରଶସ୍ତ୍ର ସୁରାକ ପାଇ ବିଲାତ ଗୋଏନ୍ଦା ବିଭାଗ ତନାଘନା ଅନୁସନ୍ଧାନ ଓ ଧରପଗଡ଼ ଆରମ୍ଭ କରିଦେଲେ । ଚଟ୍ଟଗ୍ରାମ ବିପ୍ଳବୀମାନେ ଏହି ପରିସ୍ଥିତି ପାଇଁ ପ୍ରସ୍ତୁତ ନଥିଲେ । ସେମାନଙ୍କୁ ଜରୁରୀକାଳୀନ ଆତ୍ମଗୋପନ କରି ଯେଝାମତେ ରହିବାକୁ ପଡ଼ିଲା । ବଂଶୀଧର ନାମଟି ଖାଣ୍ଟି ଓଡ଼ିଆ ଓ ସେ ବଙ୍ଗଳା ଭାଷା ବିଶେଷତଃ ପୂର୍ବ ବଙ୍ଗଳାର ବୋଲିରେ ଅନଭିଜ୍ଞ ଥିବାରୁ ତାଙ୍କୁ ଚଟ୍ଟଗ୍ରାମ ଆରପାରି ବର୍ମା ଦେଶକୁ ଯିବାକୁ ପଡ଼ିଲା । ସେଠାରେ ସେ ବର୍ମାର ବିପ୍ଳବୀମାନଙ୍କ ମେଳରେ ରହିଲେ । ଏଣେ ଓଡ଼ିଶାରେ ତାଙ୍କ ସନ୍ଧାନରେ ଗୋଏନ୍ଦାମହଲ ତତ୍ପର ହୋଇ ଓଡ଼ିଶାର ଗାଁଗଣ୍ଡା, ସହର ବଜାରରେ ତନାଘନା ଅନୁସନ୍ଧାନ ଚଳାଇ ଥାଆନ୍ତି ।

### ପୁନଶ୍ଚ ଜୁଆର :

ଯଦିଚ ବର୍ମା ଥିଲା ଭାରତ ଭଳି ବ୍ରିଟିଶ ଉପନିବେଶ ଶାସନରେ ଶୋଷିତ ଓ ସେହି କାରଣରୁ ଉଭୟ ଦେଶର ମୁକ୍ତ ସଂଗ୍ରାମର ଲକ୍ଷ୍ୟ ଥିଲା ଏକ, ବ୍ରିଟିଶ ସାମ୍ରାଜ୍ୟବାଦର ଉଚ୍ଛେଦ । ପୁଣି ସେତେବେଳେ (ଅର୍ଥାତ୍ ୧୯୩୫ ଭାରତ ଶାସନ ଆଇନ ପୂର୍ବରୁ) ବର୍ମା ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଭାବରେ 'ଇଣ୍ଡିଆ', 'ବର୍ମା', 'ସିଲୋନ' ନାମକ ଏକ ସୂତ୍ରରେ ଗୁନ୍ଥାଥିଲା । ତଥାପି ବର୍ମା। ସ୍ୱାଧୀନତା ଆନ୍ଦୋଳନର କାର୍ଯ୍ୟକ୍ରମ ଓ ପଦ୍ଧତି ଧାରା ସହିତ ଭାରତର ଆନ୍ଦୋଳନ ଭିତରେ ବହୁ ଅମେଳ ଥିଲା । ଭାରତର ଆନ୍ଦୋଳନ ଥିଲା ଅହିଂସା, ଶସ୍ତ୍ରବର୍ଜିତ ସତ୍ୟାଗ୍ରହ, ବର୍ମାର ଥିଲା ସଶସ୍ତ୍ର ସଂଗ୍ରାମ । ଏହି ଅମେଳର ଗୋଟିଏ ଉଲ୍ଲେଖଯୋଗ୍ୟ ସଙ୍କେତ ହେଉଛି ଦେଶର ସ୍ୱାଧୀନତା ଲାଭର ପ୍ରକ୍ରିୟା । ଭାରତର ୧୦୪୭ ଅଗଷ୍ଟର କ୍ଷମତା ହସ୍ତାନ୍ତର ବିଲାତ ପାର୍ଲାମେଣ୍ଟରେ 'ଭାରତୀୟ ସ୍ୱାଧିନତା ଆକ୍ଟ' ପାସ୍ ହେଲା । ତାହାରି ଜରିଆରେ ଭାରତର ସମ୍ବିଧାନ ପ୍ରଣେତା ସଭାକୁ ସ୍ୱୀକୃତି ମିଳିଥିଲା ଓ ଭାରତରେ ବ୍ରିଟିଶ ବଡ଼ଲାଟ ଭାରତ ସ୍ୱାଧୀନତାକୁ ଭାରତକୁ ଅର୍ପଣ କରିଥିଲେ । କିନ୍ତୁ ବର୍ମାର ସ୍ୱାଧୀନତା ବ୍ରିଟିଶଙ୍କର ସ୍ୱେଚ୍ଛାକୃତ ସମର୍ପଣରେ ମିଳୁନଥିଲା ।

### ଚଟ୍ଟଗ୍ରାମ, ଆକାୟାବ, ରେଙ୍ଗୁନ, ମୌଲମିନ :

ବଂଶୀଧର ଚଟ୍ଟଗ୍ରାମ ବନ୍ଦରରୁ ବର୍ମାର ଆକାୟାବରେ ପହଞ୍ଚିଥିଲେ । ଆଉଥରେ ଭାରତକୁ ଫେରିବା ସେତେବେଳେ ସମ୍ଭବ ନଥିଲା । ସେଠାରୁ ସେ ଗଲେ ରେଙ୍ଗୁନ । ସେତେବେଳେ ବର୍ମାର ମୌଲମିନ ସହରରେ ଓଡ଼ିଶା ବିଶେଷତଃ ଗଞ୍ଜାମର ବହୁ ଓଡ଼ିଆ ରହୁଥିଲେ । ସ୍ୱାଭାବିକ ଭାବରେ ବଂଶୀଧର ସେଠାରେ ରହି ଭାରତକୁ ଫେରିବାର ସୁଯୋଗ ଖୋଜିବାରେ ଲାଗିଲେ ।

ସେତେବେଳେ ବର୍ମା ପ୍ରବାସୀ ଭାରତୀୟଙ୍କ ଭିତରେ ଓଡ଼ିଆଙ୍କ ସଂଖ୍ୟା ଥିଲା ସର୍ବାଧିକ । କାରଣ ଓଡ଼ିଶାର ଗୋପାଳପୁର ବନ୍ଦରରୁ ବର୍ମାକୁ ବୋଇତ ସର୍ଭିସ୍ ପ୍ରତି ସପ୍ତାହରେ ଥିଲା । ଗଞ୍ଜାମର ଚାଷୀମାନେ ହିଁ ବର୍ମାର ଧାନ ଉତ୍ପାଦନର ପ୍ରଧାନ କର୍ମୀ ଥିଲେ ।

ଅବଶ୍ୟ ବର୍ମାର ପେଟ୍ରୋଲିୟମ ଶିଳ୍ପରେ କିଛି ଓଡ଼ିଆ ଶ୍ରମିକ ମଧ୍ୟ କାମ କରୁଥିଲେ । ୧୯୩୫ର 'ଭାରତ ଶାସନ ଆଇନ' ପ୍ରବର୍ତ୍ତନ ପରେ ବର୍ମାକୁ ବିନା ପାସ୍‌ପୋର୍ଟରେ ଯିବା ନିଷିଦ୍ଧ ହୋଇଗଲା । ତେଣୁ ବର୍ମାକୁ ଓଡ଼ିଆମାନଙ୍କର ଯାତାୟାତ ପ୍ରାୟ ବନ୍ଦ ହୋଇଯାଇଥିଲା ।

ବଂଶୀଧର ବର୍ମାରୁ ଭାରତ ଫେରିବା ପାଇଁ ସୁଯୋଗ ପାଲେ ନାହିଁ । ସେଠାରେ ମଧ୍ୟ ବିଲାତି ଶାସନ, ତଡ଼ିଦ୍‌ବେଗରେ ତାଙ୍କର ସେଠାରେ ଥିବାର ସୁରାକ ବ୍ରିଟିଶ ଗୋଇନ୍ଦା ବିଭାଗ ପାଇଗଲେ । ତେଣୁ ତାଙ୍କୁ ବର୍ମା ଛାଡ଼ିବାକୁ ପଡ଼ିଲା । ଭାରତ ଅଭିମୁଖେ ନୁହେଁ, ଲକ୍ଷ୍ୟସ୍ଥଳ ହେଲା ସିଙ୍ଗାପୁର ।

ଏଥି ମଧ୍ୟରେ ଯେଉଁ ନାବିକମାନଙ୍କର ସାହଚର୍ଯ୍ୟରେ ସେ ଚଟ୍ଟଗ୍ରାମ ଛାଡ଼ିଥିଲେ, ସେମାନେ ଥିଲେ ଅଧିକାଂଶ ଭାରତୀୟ । ସେମାନେ 'ଲସ୍କର' ବୋଲି କଥିତ ହୁଅନ୍ତି । ଇଂରାଜୀ ଅଭିଧାନରେ 'ଲସ୍କର' ଅର୍ଥ ଜଣେ ଭାରତୀୟ ନାବିକ । ଏହି ନାବିକମାନେ ଥିଲେ ଆଚାର ବ୍ୟବହାର, ଚାଲିଚଳଣ, ଭାଷା ଇତ୍ୟାଦିରେ ଭାରତୀୟ; କିନ୍ତୁ ବାସ୍ତବ ଆଭିମୁଖ୍ୟରେ ଥିଲେ ଆନ୍ତର୍ଜାତିକ । ସେମାନେ ମହାସିନ୍ଧୁର ବାସିନ୍ଦା । ବାଣିଜ୍ୟ ଜାହାଜ ଭଳି ବାସସ୍ଥଳୀରେ ବହୁ ଜାତି, ଭାଷା, ଧର୍ମ, ସମ୍ପ୍ରଦାୟର ନାବିକଙ୍କ ସହାବସ୍ଥାନ, ସମଦଶାପନ୍ନତା ଯୋଗ ସେମାନଙ୍କ ଭିତରେ ଜାତି ଧର୍ମ, ବର୍ଣ୍ଣବିଦ୍ୱେଷ ନଥାଏ କହିଲେ ଚଳେ । ସିଂଗାପୁର ରହଣୀ କାଳରେ ସେମାନଙ୍କ ସହିତ ବଂଶୀଧରଙ୍କର ସମ୍ପର୍କ ସ୍ଥାପିତ ହେଲା । କାରଣ ସେତେବେଳେ ମଧ୍ୟ ସିଙ୍ଗାପୁର ଥିଲା (ଏବେବି ଅଛି) ଭାରତ ମହାସାଗରୁ ପ୍ରଶାନ୍ତ ମହାସାଗର ପାଇଁ ସର୍ବପ୍ରଧାନ ପ୍ରବେଶ ଦ୍ୱାର । ସିଙ୍ଗାପୁରରେ ଥିବା ଓ ଆତଯାତ ହେଉଥିବା ବହୁସଂଖ୍ୟକ ନାବିକ ମୁସଲମାନଧର୍ମୀ ଥିଲେ । ସେମାନେ ବଂଶୀଧରଙ୍କର ନେତୃତ୍ୱ ଗ୍ରହଣ କଲେ ।

ସିଙ୍ଗାପୁର କେବଳ ବ୍ରିଟିଶ ବାଣିଜ୍ୟ ତରୀର ବନ୍ଦର ଥିଲା । ତାହା ଥିଲା ଏକ ବ୍ରିଟିଶ ସାମରିକ ନୌଘାଟି । ବଂଶୀଧର ସିଙ୍ଗାପୁରଠାରେ ଭାରତୀୟ ନୌବାଣିଜ୍ୟ ନାବିକ ଆସୋସିଏସନ୍‌ର (ଇଣ୍ଡିଆନ୍ ସି-ମ୍ୟାନ୍ ଆସୋସିଏସନ୍) ସାଧାରଣ ସମ୍ପାଦକ ନିର୍ବାଚିତ

ହେବାମାତ୍ରେ ତାଙ୍କ ବିଷୟରେ ବ୍ରିଟିଶ ଗୋଇନ୍ଦା ବିଭାଗ ତତ୍ପର ହୋଇଉଠିଲେ । ବର୍ମାରୁ ପାସ୍‌ପୋର୍ଟ ନେଇ ସିଙ୍ଗାପୁର ଆସିଲା ବେଳେ ତାଙ୍କର ପାସ୍‌ପୋର୍ଟରେ ନାମ ଥିଲା ଇବ୍ରାହିମ୍ ଖାଁ ।

**ସୁରଟ ଅଲ୍ଲି :**

ତା'ପରେ ତଡ଼ିଦ୍‌ବେଗରେ ତାଙ୍କ ସଂଗଠନର ପ୍ରସାର ବଢ଼ିବାରେ ଲାଗିଲା । ସିଙ୍ଗାପୁରରୁ ଆପଣାର ସାଂଗଠନିକ ନିରାପତ୍ତା ପାଇଁ ସେ ଜାପାନ ଗଲେ । ସେଠାରେ ଅଣଭାରତୀୟ ନାବିକ ଯଥା—ଗ୍ରୀସ୍, ଇଟାଲି, ଯୁକ୍ତରାଷ୍ଟ୍ର, ବିଲାତ ଇତ୍ୟାଦିଙ୍କ ସହିତ ତାଙ୍କର ପରିଚୟ ହେଲା । ଜାପାନରୁ ସେ ଯୁକ୍ତରାଷ୍ଟ୍ର ଆମେରିକାକୁ ସାଂଗଠନିକ କାର୍ଯ୍ୟରେ ରମାନା ହେଲେ । ସେଠାରେ ବ୍ରୁକଲିନ୍ ନାମକ ମାର୍କିନ ସହରରେ ଅବସ୍ଥାନ କାଳରେ ସେ ବିଶ୍ୱ ନୌବାଣିଜ୍ୟ ନାବିକ ଆସୋସିଏସନ୍ (ୱାର୍ଲଡ଼ ସିମେନସ୍ ଆସୋସିଏସନ୍)ର ସାଧାରଣ ସମ୍ପାଦକ ଭାବରେ ନିର୍ବାଚିତ ହେଲେ ।

ସେତେବେଳେ ବିଲାତର ବାଣିଜ୍ୟ ତରୀବାହିନୀ ପୃଥିବୀରେ ଅଦ୍ୱିତୀୟ ଥିଲା ଓ ସେଥିରେ ପୃଥିବୀର ପ୍ରତ୍ୟେକ ରାଷ୍ଟ୍ରର ନାଗରିକ ନାବିକ ଭାବରେ ନିଯୁକ୍ତ ଥିଲେ । ୧୯୩୪-୩୫ ବେଳକୁ ଆସୋସିଏସନ୍‌ର କେନ୍ଦ୍ର ଦପ୍ତର ଧେକୋଳର ଷ'ଖ୍ୱ ନୌବାଣିଜ୍ୟର କେନ୍ଦ୍ରସ୍ଥଳ ଲଣ୍ଡନକୁ ସ୍ଥାନାନ୍ତରିତ ହୋଇଥିଲା । ଓଡ଼ିଶା (ଭାରତ) ଛାଡ଼ିବାର ଛଅବର୍ଷ ଭିତରେ ଏପରି ବ୍ୟାପକ ଅତୁଳନୀୟ ବିଶ୍ୱ ସଂଗଠନର ପ୍ରତିଷ୍ଠାର କୃତିତ୍ୱ ତାଙ୍କର ଅସାଧାରଣ ସାଂଗଠନିକ ଦକ୍ଷତା ନେତୃତ୍ୱ ଓ ଆତ୍ମତ୍ୟାଗ ଫଳରେ ସମ୍ଭବ ହୋଇଥିଲା ।

ଯେପରି ଲେଲିନଙ୍କର ପୈତୃକ ନାମ ଥିଲା ଭ୍ଲାଡିମିର କିନ୍ତୁ ଇତିହାସ ତାଙ୍କୁ ଲେନିନ ଭାବରେ ବିଶ୍ୱବିଦିତ କଲା ଠିକ୍ ସେହିପରି ବଂଶୀଧରଙ୍କୁ ଇତିହାସ ହିଁ ସୁରତ ଅଲ୍ଲି ନାମରେ ଚିହ୍ନିତ କରିଛି । ଫଳରେ ବଂଶୀଧର ମିଶ୍ର ହିଁ ଛଦ୍ମନାମ ହୋଇଗଲା । ବିଲାତରେ ତାଙ୍କର ଏକମାତ୍ର ନାମ ଥିଲା ସୁରତ ଅଲ୍ଲି ।

**ପୁନଶ୍ଚ ମୁକ୍ତି ସଂଗ୍ରାମ :**

ଲଣ୍ଡନରେ ପପ୍‌ଲାର କାଉଣ୍ଟି ଟାଉନ୍‌ରେ ବିଶ୍ୱ ନାବିକ ଆସୋସିଏସନ୍‌ର ଦପ୍ତରରେ ଅବସ୍ଥାପିତ ହେବାପରେ (୧୯[illegible]୨) ଭାରତର ସ୍ୱାଧୀନତା ସଂଗ୍ରାମ ସହିତ ତାଙ୍କର ଘନିଷ୍ଠ ଯୋଗାଯୋଗ ସ୍ଥାପିତ ହେଲା । ସେତେବେଳେ ସେ ଗୋଟିଏ ପ୍ରଭାବଶାଳୀ ବିଶ୍ୱ ଶ୍ରମିକ ସଂସ୍ଥାର କର୍ଣ୍ଣଧାର । (୧୯୧୭ ମସିହାରେ ଏହି ସଂସ୍ଥା ନବସଂସ୍ଥାପିତ ସୋଭିଏତ୍ ଦେଶ ଉପରେ ଇଂଲଣ୍ଡ ଓ ଫ୍ରାନ୍‌ସର ଆଗାମୀ ଅଭିଯାନକୁ ସୈନ୍ୟବାହିନୀ

ଓ ଯୁଦ୍ଧାସ୍ତ୍ର ସରଞ୍ଜାମ ପ୍ରେରଣ ବନ୍ଦ କରିଦେଇ ଭଣ୍ଟୁର କରିଥିଲେ । ଏବେ ଦକ୍ଷିଣ ଆଫ୍ରିକା ବିରୁଦ୍ଧରେ ବାଣିଜ୍ୟ ବାସନ୍ଦ କ୍ଷେତ୍ରରେ ଏହି ସଂଗଠନ ହିଁ ଅଗ୍ରଣୀ ।) ସେହି ସୂତ୍ରରେ ସେ ସ୍ୱାଭାବିକ ଭାବରେ ବିଲାତର ଲେବର ପାର୍ଟିର ସଂସ୍ପର୍ଶରେ ଆସିଥିଲେ ଓ ସେହି ପାର୍ଟିର ଜାତୀୟ କାର୍ଯ୍ୟକାରୀ କମିଟିର ସଭ୍ୟ ହୋଇଥିଲେ ଓ ପପ୍‌ଲାର କାଉଣ୍ଟିର ଲେବର ପାର୍ଟିର ସେକ୍ରେଟାରୀ ନିର୍ବାଚିତ ହୋଇଥିଲେ ।

ସେତେବେଳେ ବିଲାତର କମ୍ୟୁନିଷ୍ଟ ପାର୍ଟି ଶ୍ରମିକ ଆନ୍ଦୋଳନ କ୍ଷେତ୍ରରେ ଲେବର ପାର୍ଟିର ସହଯୋଗୀ ଥିଲେ । ସେହି ସୂତ୍ରରେ ସୁରତ ଅଲ୍ଲି ବିଲାତର ପ୍ରଧାନ ପ୍ରଧାନ କମ୍ୟୁନିଷ୍ଟ ନେତା, ଯେଉଁମାନେ ଭାରତର ଶ୍ରମିକ ଆନ୍ଦୋଳନରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାଗ ନେଉଥିଲେ ଓ ନେଇଥିଲେ ଯଥା—ଯେନ ବ୍ରାଡଲେ, ଫିଲିପ୍‌ସ ସ୍ପ୍ରାଟ, ରଜନୀ ପାମିଦତ୍ତ, ହ୍ୟାରି ପୋଲିଟ ଇତ୍ୟାଦିଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖିଥିଲେ । ପପ୍‌ଲାରରେ ତାଙ୍କ ନିବାସକୁ ଆଟଲି, ହରବାର୍ଟ୍ ମରିସନ୍, ବେଭନ୍ ବିଭାନ, ପେଥେକ୍ ଲରେନ୍‌ସ, ଷ୍ଟାଫୋର୍ଡ଼ କ୍ରିପ୍‌ସ, ଆଲେକ୍‌ଜାଣ୍ଡାର ଇତ୍ୟାଦି ଶ୍ରମିକ ପାର୍ଟି ନେତାମାନଙ୍କ ଆତଯାତ ଥିଲା, ସେପରି ଥିଲା କମ୍ୟୁନିଷ୍ଟ ପାର୍ଟି ନେତାମାନଙ୍କର । ମୋଟ ଉପରେ ତାଙ୍କର ଦପ୍ତର ବିଲାତରେ ଭାରତୀୟ ମୁକ୍ତି ସଂଗ୍ରାମର ଏକ 'ମିନି' ଦୂତାବାସ ଥିଲା ।

୧୯୫୧ରେ ବିଲାତ ଛାଡ଼ି ଆପଣାର ମାତୃଭୂମି ଭାରତକୁ ଆସିବାଯାଏ ସେ ବିଲାତ କମ୍ୟୁନିଷ୍ଟ ପାର୍ଟିର କାର୍ଡ଼ ହୋଲ୍‌ଡର ଥିଲେ । ସର୍ବୋପରି ଭାରତର ସ୍ୱାଧୀନତା ଆନ୍ଦୋଳନର ମହାରଥୀ ପଣ୍ଡିତ ନେହେରୁ ଓ ନେତାଜୀ ସୁଭାଷଙ୍କଠାରୁ ଆରମ୍ଭ କରି ଏନ୍.ଜି. ରାଙ୍ଗାଙ୍କ ପର୍ଯ୍ୟନ୍ତ ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କ ପାଇଁ ତାଙ୍କର ଦ୍ୱାର ଅବାରିତ ଥିଲା ।

**୪୭ ଅଗଷ୍ଟ ପରେ :**

ଭାରତର ରାଜନୈତିକ ସ୍ୱାଧୀନତା ଲାଭ ପରେ ବିଲାତର ଇଣ୍ଡିଆ ହାଉସ୍ ଭାରତୀୟ ସ୍ୱାଧୀନ ରାଷ୍ଟ୍ରର ଦୂତାବାସ (ହାଇକମିସାରିଏଟ)ରେ ପରିଣତ ହେଲା । ସେଠାରେ ପ୍ରଥମ ରାଜଦୂତ ହେଲେ ଶ୍ରୀ ଭି.କେ. କୃଷ୍ଣମେନନ । ସେ ଆପଣାର ସହକର୍ମୀ ଭାବରେ ବିଲାତରେ ଥିବା କେବଳ ମୁକ୍ତି ସଂଗ୍ରାମର ଭାଗିଦାର ଦେଶପ୍ରେମୀଙ୍କୁ କେତେଗୁଡ଼ିଏ ନିଗୂଢ଼ ବିଶ୍ୱସ୍ତ ଡିପାର୍ଟମେଣ୍ଟାଲ କାର୍ଯ୍ୟରେ ନିଯୁକ୍ତ କରାଇଥିଲେ । ସେଥି ଭିତରେ ପ୍ରଧାନତମ ବ୍ୟକ୍ତି ଥିଲେ ସୁରତ ଅଲ୍ଲି । ୧୯୫୦-୫୧ରେ ଭାରତର ପ୍ରତିରକ୍ଷା ବାହିନୀ ପାଇଁ ଜିପ୍ କିଣା କାରବାରରେ ଯେଉଁ ତ୍ରୁଟିବିଚ୍ୟୁତିର ଆରୋପ ହେଲା, ସେଥିରେ ସେ କ୍ଷୁବ୍ଧ ହୋଇ ବିଲାତ ଛାଡ଼ିଲେ ବୋଲି ଜଣାପଡ଼େ । ଏହାର ସମସ୍ତ ରହସ୍ୟ ଏ ପର୍ଯ୍ୟନ୍ତ

ଉଦ୍ଘାଟିତ ହୋଇ ନାହିଁ । ତେବେ ଯେତେଦୂର ଶୁଣାଯାଏ ଏହି କାରବାରରେ ଦୋଷତ୍ରୁଟି ପାଇଁ ସେ ତାତ୍କାଳିକ ଲେବର ପାର୍ଟିର କର୍ମକର୍ତ୍ତାମାନଙ୍କ ଭିତରୁ ଅନେକଙ୍କୁ ଦାୟୀ କରିଥିଲେ ।

ପୃଥିବୀରେ ନାନା ପ୍ରତିରକ୍ଷା ଓ ଗୁପ୍ତ ସୂଚନା ବିଭାଗର ସର୍ବୋଚ୍ଚ କର୍ତ୍ତାମାନେ ଅତୀତରେ ଓ ବର୍ତ୍ତମାନ ମଧ୍ୟ ସେମାନଙ୍କର ସେହି ସମୟର ଗୋପନୀୟ ରହସ୍ୟ ପ୍ରକାଶ କରି ପ୍ରକାଶିତ ବହିରୁ କୋଟି କୋଟି ଡଲାର ଉପାର୍ଜନ କରୁଛନ୍ତି । କିନ୍ତୁ ସୁରତ ଅଲ୍ଲି ଯେଉଁ ବ୍ୟାପାର ଯୋଗୁଁ ବିଲାତ ଛାଡ଼ି ମାତ୍ର ୪୯-୫୦ ବର୍ଷ ବୟସରେ ବାହାରି ଆସିଲେ ବୋଲି ଅନୁମାନ କରାଯାଏ, ସେହି ବ୍ୟାପାରରେ ପଦେ କିଛି ପ୍ରକାଶ କରି ନାହାନ୍ତି ।

ବିଶ୍ୱ ଇତିହାସରେ ଏହା ଏକ ରେକର୍ଡ଼ ବୋଲି ଗଣାଯାଇପାରେ ।

**ନିରବ ବିଦାୟ ପରେ :**

ତାଙ୍କର ଭାରତ ଫେରିବା ପରେ ଭାରତର କେତେକ ଜାତୀୟ ଇଂରାଜୀ ଭାଷା ଦୈନିକରେ ତାଙ୍କ ବିଷୟରେ ବହୁ କଳ୍ପନା ପ୍ରକାଶ ପାଇଲା । କିନ୍ତୁ ପରେ ମନେହେଲା ସେ ଆଉ କୌଣସି କାର୍ଯ୍ୟ ପାଇଁ ବୀତସ୍ପୃହ । ପ୍ରାୟ ପଇଁତିରିଶ ବର୍ଷକାଳ ସେ ଦୀର୍ଘ ଅବସର ନେଲେ । ଏ ଭିତରେ ତାଙ୍କଠାରୁ କୌଣସି ତଥ୍ୟ ବା ସମ୍ବାଦ ଆଦାୟ କରାଯାଇଥିଲା କି ନାହିଁ ଜଣା ନାହିଁ । ସେ ଯେଉଁ ଅନୁଷ୍ଠାନର ପ୍ରତିଷ୍ଠାତା ଥିଲେ, ତାଙ୍କବେଳେ ତାହାର ସଭ୍ୟସଂଖ୍ୟା ଥିଲା ସତୁରୀ ଲକ୍ଷ । ଆଜି ତାହାର ସଂଖ୍ୟା ସାତ କୋଟିରୁ ଊର୍ଦ୍ଧ୍ୱ । ପୃଥିବୀର ନାବିକ, ଖଲାସୀ (ଲଙ୍ଗସୋର ମ୍ୟାନ୍) ଡକ୍ ଶ୍ରମିକ ଇତ୍ୟାଦି ବହୁ ବିଶ୍ୱ ସଂସ୍ଥାର, ତାହା ଏକ ବିଶ୍ୱ ମହାସଂଘ । ତାଙ୍କର ମୃତ୍ୟୁ ସମ୍ବାଦ ପହଞ୍ଚିବା ପୂର୍ବରୁ ମଧ୍ୟ ସେହି ଅନୁଷ୍ଠାନ ସହିତ ତାଙ୍କର ଘନିଷ୍ଠ ସହଯୋଗ ଥିଲା । ଜୀବନର ମଧ୍ୟାହ୍ନରେ ଯେଉଁ ଲୋକ ପତ୍ନୀ, ପରିବାର ତ୍ୟାଗକରି ଦଳିତ, ଶୋଷିତ ଶ୍ରମିକ ଆନ୍ଦୋଳନରେ ଝାସ ଦେଇଥିଲା, ତାହାକୁ ତାଙ୍କର ଗଢ଼ା ସଂଗଠନମାନେ କୃତଜ୍ଞତାର ସହିତ ସ୍ମରଣର ଆବରଣରେ ଯତ୍ନ ସହକାରେ ରଖିବେ ।

ଅଥଚ ଏହା ଆମରି ଓଡ଼ିଶା ଜାତି ପାଇଁ ଅପମାନ ଯେ ଯେଉଁ ଭାରତୀୟ ଜାତୀୟ କଂଗ୍ରେସର ଉତ୍କଳ ଶାଖାର ସେ ସମ୍ପାଦକ ଥିଲେ, ତାହାର ନାମଧାରୀ ଓ ଉତ୍ତରାଧିକାର ଦାବିଦାର ଇନ୍ଦିରା କଂଗ୍ରେସ ତାଙ୍କ ପାଇଁ ଗୋଟିଏ ଦିନ ଶୋକ ଦିବସ ପାଳନର ଆହ୍ୱାନ ତ ଦେଲା ନାହିଁ, ଏପରିକି ଆପଣାର ପାର୍ଟି ପତାକା ଅବନମିତ କଲା ନାହିଁ ।

୧୯୩୬ରେ ବିଶ୍ୱ ପରିକ୍ରମା ଶେଷକରି ରବୀନ୍ଦ୍ରନାଥ ଯେତେବେଳେ ବଙ୍ଗଦେଶକୁ ଫେରିଥିଲେ, ସେତେବେଳେ ତାଙ୍କ ପାଇଁ ଅଭ୍ୟର୍ଥନା ସଭାରେ ସେ ବାଷ୍ପାକୁଳ କଣ୍ଠରେ କାଳିଦାସଙ୍କର ଅଭିଜ୍ଞାନ ଶାକୁନ୍ତଳମ୍‌ର ଦୁର୍ବାସା ଅଭିଶାପ ଶ୍ଳୋକରୁ ବଙ୍ଗବାସୀଙ୍କୁ ସ୍ମରଣ କରାଇ ଦେଇଥିଲେ । ସେ କହିଥିଲେ, "ହେ ବଙ୍ଗବାସୀ, ତୁମେ ଆପଣାର ମୁକ୍ତି ପାଇଁ, ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ବିଭୋର ରହି ଯେଉଁ ବିଶ୍ୱ ବାହାରେ ଅପେକ୍ଷା କରିଛି, ତାହାକୁ ଉପେକ୍ଷା କର ନାହିଁ । ଯଦି ତାହା କର, ତେବେ ତୁମେ ଯାହା ଉପରେ ଲୟ ରଖିଛ (ତୁମର ମାତୃଭୂମିର ସ୍ୱାଧୀନତା) ସେ ତୁମକୁ ବାରମ୍ବାର ଆପଣାର ପରିଚୟ ଦେଲେ ବି ଚିହ୍ନିବ ନାହିଁ ।

ମେହେର କବିଙ୍କର 'ପ୍ରଣୟବଲ୍ଲରୀ' ଭାଷାରେ ସେହି କଠୋର ବାଣୀ—

"ଘେନ ପୂଜ୍ୟପୂଜା ବ୍ୟତିକ୍ରମ ଫଳ,
ଯା'ଠାରେ ରଖିଛୁ ଲୟ
ସେ ତୋତେ ଚିହ୍ନିବ ନାହିଁଟି ଦେଲେ ହେଁ
ଆପଣାର ପରିଚୟ ।"

ଓଡ଼ିଶାର ଶିକ୍ଷା ଓ ଦେଶପ୍ରେମର ଅଭିମାନୀମାନେ କେବଳ 'ଆମେ ଓଡ଼ିଆ, ଆମେ ବଡ଼ିଆ' ବୋଲି ଘୋଷିହେଲେ, ବିଶ୍ୱ ଓଡ଼ିଆକୁ ଚିହ୍ନିବ ନାହିଁ । ବିଶ୍ୱ ଓଡ଼ିଆକୁ ଚିହ୍ନିବ ଯଦି ସେ ଆପଣାର ଜାତୀୟ ବୀର ପୁରୁଷଙ୍କ ପ୍ରତି ଆପଣାର ଭକ୍ତି ଓ କୃତଜ୍ଞତାର ଅର୍ଘ୍ୟ ଢାଳିବା ପାଇଁ ସନ୍ତତ ପ୍ରସ୍ତୁତ ହେବ ।

ଆଜି ଆମେ ପ୍ରତ୍ନତତ୍ତ୍ୱ ଓ ଶିଳାଲେଖ ଇତ୍ୟାଦି ଖାରବେଳ, ଅନଙ୍ଗଭୀମ, କପିଳେନ୍ଦ୍ର, ଚନ୍ଦନ ହଜୁରୀ, ସୁରେନ୍ଦ୍ର ସାଏ ଇତ୍ୟାଦିଙ୍କର କୃତି ବିଭୂତି ଉଦ୍ଧାର କଲାଭଳି ଯଦି ଆମର ଉତ୍ତର ପୁରୁଷ ବଂଶୀଧର ମିଶ୍ର-ସୁରତ ଅଲ୍ଲିଙ୍କର ସ୍ମୃତିକୁ ମୌନ ଅତୀତର ଗର୍ଭରୁ ସାଉଁଟିବା, ଆଜିର କୌଣସି ବିବରଣୀ ନଥିବ, ସେମାନେ ଆମକୁ ଧିକ୍କାର କରିବେ । ଆଉ ବିଶ୍ୱ ଆମକୁ ସଭ୍ୟତା ଗର୍ବିତ ଐତିହ୍ୟ ବହନକାରୀ ବୋଲି ଗଣିତ ନାହିଁ । ଗୋପବନ୍ଧୁଙ୍କ ଭାଷାରେ—"ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?"



## ଜଣାଣ

(ରାଗ ରାମକେରୀ)

ଆଶ୍ରା କରି ପଦେ ରହିଛି
ବିଭୁ ଜଗତ ଗୁରୁ
ଘୁଞ୍ଚାଇବ ତା'ର ବିପଦ
ହୋଇ କଳପତରୁ । ୧ ।
ସନ୍ଦେହ ବିଦ୍ୱେଷ ତ୍ରିଯାମା
ତା'ର ହେବ ପ୍ରଭାତ
ଶାନ୍ତି ମଇତ୍ରୀର ଭାସ୍କର
ନଭେ ହେବ ଉଦିତ । ୨ ।
ନିଜ ସାଧନାର ବଳରେ
ତୁମେ ଦକ୍ଷିଣେଶ୍ୱରୀ
ବହୁତ୍ୱକୁ ଦେଇ ଆହୁତି
ଏକତ୍ୱର ପ୍ରସାରି । ୩ ।
"ଯେତେ ମତ ସେତେ ପଥ"କୁ
ଦେଲ ବିଶ୍ୱ ମାନବେ
ବିବେକାନନ୍ଦର ପ୍ରଭାବେ
ପ୍ରତିଧ୍ୱନିତ ଭବେ । ୪ ।
ସ୍ନେହେ ତୋର ବନ୍ଧା ଅଛନ୍ତି
ସର୍ବ ମାନବ ଜାତି
ବିଶ୍ୱ ଇତିହାସ ସେ ଦିଗେ
କରୁ ଅଛଇ ଗତି । ୫ ।
ସବୁ ବାଧା ବିଘ୍ନ ଏଡ଼ଇ
ନିଜ ଗତି ପଥରେ
ଶ୍ରଦ୍ଧାର ସ୍ୟନ୍ଦନ ଚାଲିବ
ନିଜ ବଡ଼ ଦାଣ୍ଡରେ । ୬ ।

ସାଧନାର ଯଜ୍ଞଶାଳର
ଖୋଲା ରହିଛି ଦ୍ୱାର
ସକଳ ମାନବେ ମିଳିବେ
ତହିଁ ଆନତ ଶିର । ୭ ।
ନତ ଶିର ଭିକ୍ଷା କରୁଛି
ତୁମ ପଦ କମଳେ
ମୋ ଚଗଲା ମନ ମଧୁପେ
ବନ୍ଦୀ ରହୁ ସେଠାରେ । ୮ ।

ବଂଶୀଧର
୧-୧୧୯୮୩

---

(ଭଗବାନ ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କର କଟକରେ ଅଷ୍ଟସପ୍ତତିତମ କଳ୍ପତରୁ ଉତ୍ସବ ଉପଲକ୍ଷେ)

## ସ୍ମୃତି ପଞ୍ଚକ

ଆଜି ଖଣ୍ଡସାହୀରେ ଆନନ୍ଦ
ମିଳିଲେ ହଜିବା ଧନ ଲଭିଲେ ଅନ୍ଧ ନୟନ
ମେଦୁରେ ମୁଦୀର ଦେଖି ନୀଳକଣ୍ଠ ବୃନ୍ଦ ।
ସୁତହୀନ ସୁତଲଭି ଯେହ୍ନେ ନନ୍ଦାନନ୍ଦ ॥ ୧ ॥

ଊନବିଂଶ ଶତୋତ୍ତରାର୍ଦ୍ଧକ
ଏକାବନ ମସିହାର ଊନବିଂଶ ଅକ୍ଟୋବର
ଶୁକ୍ରବାରେ ଶୁଭାଗମେ ସୁଖୀ ସର୍ବ ଲୋକ ।
ବିଦେଶ ଫେରନ୍ତା ଦେଖି ମଣି ନିଜ ଟେକ ॥ ୨ ॥

ଗଙ୍ଗାଧର ବାବୁଙ୍କ ନନ୍ଦନ
ବିଦ୍ୱାନ ଶ୍ରୀ ବଂଶୀଧର ବିବିଧ ସଦ୍‌ଗୁଣାଧାର
ନାନା ଦେଶ ମହାଦେଶ କରି ପର୍ଯ୍ୟଟନ ।
ସ୍ପରଶିଲେ ଶୁଭେ ମାତୃଭୂମି ଜନ୍ମସ୍ଥାନ ॥ ୩ ॥

ସ୍ୱାଧୀନତା ଭାବ ଜାଗି ହୃଦେ
ମାତୃଭୂମି ସମୁଦ୍ଧାରେ ଭ୍ରମି ଦେଶ ଦେଶାନ୍ତରେ
ନାନା କଷ୍ଟ ସହି ପ୍ରେମେ ପ୍ରବାସ ପ୍ରମାଦେ ।
ଉପସ୍ଥିତ ସ୍ୱାଧୀନତା ଚତୁର୍ଭାରତାହେ ॥ ୪ ॥

ଦୟାମୟ ଜଗତ ଈଶ୍ୱର
କରନ୍ତୁ ସୁଦୀର୍ଘଜୀବୀ ରହୁ ଯଶ କୀର୍ତ୍ତି ଭୁବି
ଶକ୍ତିବାନ ହୋଇ କର ଜନ ଉପକାର ।
ଭାଷେ ପଦ୍ମନାଭ ହୁଅ ସ୍ମରଣୀୟ ଚିର ॥ ୫ ॥

ଶୁଭକାଙ୍କ୍ଷୀ ରଚକ
ଅଧମ କୀଣା'ପା
ରଙ୍ଗମୁଣ୍ଡାଇ, ୧୯-୧୦-୧୯୫୧

## ଉପହାର

(ରାଗ ଶଙ୍କରାଭରଣ)

**ଆଦ୍ୟଲିପି**

ବିଶ୍ୱାଧାର ବିଶ୍ୱପତି ବିଚିତ୍ର କରମା ।
ଦେହୀ ପ୍ରାଣେ ପ୍ରାଣେ ଅଛ ଅସୀମ ମହିମା ।
ଶରଣାର୍ତ୍ତେ ପ୍ରଣମଇ ।
ଫେଡ଼ନ୍ତୁ ସକଳ ଦୁଃଖ କୃପା ନେତ୍ରେ ଚାହିଁ ।। ୧ ।।

ରଙ୍ଗାଧର ମହାବାହୁ ପତିତପାବନ ।
ତାର ହେ ସକଳ ତାପୁ କରୁଣା ନିଦାନ ।
ଶ୍ରୀଚରଣେ ନମସ୍କାର ।
ଶ୍ରୀ-ଧୀ-ଯଶ କୀର୍ତ୍ତି ଆୟୁ ସଦୟେ ପ୍ରସର ।। ୨ ।।

ବନ୍ଦେ ପ୍ରଭୁ ପରମେଶ କରୁଣା ଅଗାଧ ।
ଶୀତଳ କରାନ୍ତୁ ହୃଦ ନାଶି ସର୍ବ ଖେଦ ।
ଧରା-ଜନ ଉପକାରେ ।
ରହୁ ମତି ଦିନ ଯାଉ ପ୍ରେମ ଭକ୍ତି ଭରେ ।। ୩ ।।

ମିତ୍ରାରି ବର୍ଜିତ ସର୍ବବ୍ୟାପୀ ଆଦିମୂଳ ।
ଶ୍ରମହରା ମହାପ୍ରଭୁ ଦେଇ ଶକ୍ତି ବଳ ।
ଜରା-ବ୍ୟାଧି ବିମୋଚୟ ।
ଯଥୂଧର ପଦ୍ମନାଭେ ହୋଇଣ ସହାୟ ।। ୪ ।।

ଶୁଭାକାଙ୍କ୍ଷୀ
**ଶ୍ରୀ ପଦ୍ମନାଭ ମିଶ୍ର**
ରଙ୍ଗମୁଣ୍ଡାଇ, ୧୯-୧୦-୧୯୫୧

## କଲମ ତ ଚଲୁ ନାହିଁ

ବହୁତ କବିତା ଲେଖା ହୋଇଛି
କେତେ ବିଭାଘର ପାଇଁ,
ଆଜିତ କାହିଁକି ଅଜଣା କାରଣୁ
ଏ କଲମ ଚଲୁ ନାହିଁ । ୧ ।
ବୋଉ ନନାଙ୍କର ନୟନ ପିତୁଳୀ
ବୋଉ କୋଳ ଛାଡ଼ି ଯିବ,
'ବାୟାଣୀ' ଡାକିଲେ 'ଆଜ୍ଞା' କହିଦିଏ
ସହସା ଧାଇଁ ଆସିବ । ୨ ।
ଦୁଇକୁଳ ହିତା ପାଇଁକି ଦୁହିତା
ଭିଆଇଛି ଜଗଦ୍ଧାତ୍ରୀ,
ମାଆ, ବାପ ସିନା ଜନମ ଦିଅନ୍ତି
ପ୍ରାଣକାନ୍ତ ତା'ର ପତି । ୩ ।
ପ୍ରକୃତି ରୂପିଣୀ ନାରୀ କର୍ମକ୍ଷେତ୍ର
ଜନ୍ମସ୍ଥାନଠାରୁ ଭିନ୍ନ,
ଆଦ୍ୟାଶକ୍ତି ନାରୀ ସାଧେ ଅନାୟାସେ
ନରପକ୍ଷେ ତା' କଠିନ । ୪ ।
କନ୍ୟାର ମମତା ରମଣୀର ଲଜ୍ଜା
ମାତୃସ୍ନେହ ଧ୍ୱଜା ଧରି,
ନରପ୍ରାଣେ ଶକ୍ତି ସଞ୍ଚାର କରିଛି
ଯୁଗ ଯୁଗ ଧରି ନାରୀ । ୫ ।
କୈଳାସେ ଗିରିଜା ସାକେତେ ମହୀଜା
ନିଷଧରେ ଦମୟନ୍ତୀ,
ଅରଣ୍ୟେ ସାବିତ୍ରୀ ସତ୍ୟବାନ ସଙ୍ଗେ
ଅର୍ଜିଲେ ଅମର କୀର୍ତ୍ତି । ୬ ।

ଏ ମାଟିର ଝିଅ ସତ୍ୟ ପ୍ରେମ ବଳେ
ଚିରଦିନ ବଳବତୀ,
ଲଳନା ନିର୍ମଳା ସାତଦିନ ପାଇଁ
ରୁନ୍ଧିଲା ସୂର୍ଯ୍ୟର ଗତି । ୭ ।
ଆଜି ଶୁଭ ଦିନେ ଶୁଭ ଲଗନରେ
ଶୁଭେ ଶଙ୍ଖ ହୁଳହୁଳି,
ପରମ ଆନନ୍ଦେ ମହା କୋଳାହଳେ
ପଡୁଛି ପୁର ଉଛୁଳି । ୮ ।
'ସଙ୍ଘମିତ୍ରା' ସହ 'ଜଗନ୍ନାଥଙ୍କର
ହୋଇବ ଶୁଭ ମିଳନ,
ହରଷେ ବିଷାଦେ ହୃଦୟ ପୂରିବ
ମନ ହୁଏ ଛନ ଛନ । ୯ ।
ନବ ଦମ୍ପତିଙ୍କ ଶିରରେ ତ୍ରିଦଶେ
ସୁମନସ ବରଷନ୍ତୁ,
ଦୁଇପିତୃ-ମାତୃ-କୁଳ ପିତୃଲୋକୁ
ଆଶୀଷ ଧାରା ଢାଳନ୍ତୁ । ୧୦ ।
ଏହି କୁଶ ଗ୍ରନ୍ଥି ହେଉ ବଜ୍ର ଟାଣ
ତୁମ ଦୁଇ ଜୀବନରେ,
ଆଶାବାଡ଼ି ହୁଅ ଦୁହେଁ ଦୁହିଁଙ୍କର
ସମ୍ପଦରେ ବିପଦରେ । ୧୧ ।
ମିତୁ - ଆଜି ତୋ ହାତ ଧରି 'ଜଗନ୍ନାଥ'
କଲେ ତୋତେ ଅର୍ଦ୍ଧାଙ୍ଗିନୀ,
ସେହିଟି ତୋହରି ପ୍ରାଣର ଦେବତା
ତୁ ତାଙ୍କ ସହଧର୍ମିଣୀ । ୧୨ ।
ସେ ହୋଇଲେ ରାଜା ତୁ ହୋଇବୁ ରାଣୀ
ସେ ଯେବେ ହେବେ ଭିକାରୀ,
ତୁହି ଭିକାରୁଣୀ ହେବୁ ଆମରଣ
ହାତେ ଧରି ଭିକ୍ଷା ଝୁଲି । ୧୩ ।

ବିଭୁ ପାଦଧ୍ୟାୟୀ ଆଶୀଷ କରୁଛି
ସୁଖରେ କଟୁ ଜୀବନ,
'ସଙ୍ଘମିତ୍ରା' ନାମ ସାର୍ଥକ କରିବୁ
ସତ୍ୟ କର୍ମେ ରଖି ମନ । ୧୪ ।
ଜଗନ୍ନାଥ - ସଂସାରର କାମ ଶିଖିନାହିଁ ମିତୁ
ବୋଉର ଅଲ୍ୟଳୀ ଝିଅ,
ଟିକିଏ କଥାରେ ମନ ମାରିଦେଇ
ଆଖିରୁ ଗଡ଼ାଏ ଲୁହ । ୧୫ ।
ତାକୁ କରିନେଲ ତୁମର ଗୃହିଣୀ
କେବେ ନ ହେବ କଠୋର,
ବୁଝାଇ ସୁଝାଇ କାମ ଶିଖାଇଲେ
ନିଶ୍ଚେ ସେ ହେବ ତତ୍ପର । ୧୬ ।
ମନେ ରଖିଥାଅ ସେନେହ ଶରଧା
ଅଟଇ ଅଛିଣ୍ଡା ଡୋର,
ନିଜ ସୁ-ଗୁଣରେ ପର ଝିଅଟିକୁ
କରିନେବ ଆପଣାର । ୧୭ ।
ଏ ସଂସାରର ବାଟ ଭାରି ତ ଖସଡ଼ା
ହାତ ଧରାଧରି ହୋଇ,
ସତ୍ୟ-ନ୍ୟାୟ ପଥେ ଚାଲୁଥିଲେ ବାଟ
କେବେହେଁ ପଡ଼ିବ ନାହିଁ । ୧୮ ।
ଆଜି ଶୁଭ ଦିନେ ଏତିକି ମାଗୁଣି
କରେ ବିଭୁ ପାଦତଳେ,
ଜୀବନ ସମରେ ବିଜୟର ଟୀକା
ସଦା ଶୋଭୁ ତୁମ୍ଭ ଭାଲେ ।୧୯ ।

ନନା (ବଂଶୀଧର ମିଶ୍ର)
୮-୫-୧୯୭୦

## ଆମରି ଗାଁର ମଣି

### ୰ ବଂଶୀଧର ମିଶ୍ର

ମାତୃଭୂମିର ମୁକ୍ତି ଲାଗି
ଜୀବନ ରଖି ବାଜି,
ବିପ୍ଳବୀ ସେହି ଛାଡ଼ିଲା ଦେଶ
ସୁରତ ଅଲ୍ଲି ସାଜି ।

'ଚନ୍ଦ୍ରିକା' ଆଉ 'ଯୁବକ' ଯିଏ
କରିଣ ସମ୍ପାଦନା,
ଯୁବ ପ୍ରାଣରେ ଭରିଣ ଦେଲା
ସ୍ୱଦେଶୀ ଉନ୍ମାଦନା ।

ଏଇ ଗାଆଁର ନେତାଜୀ ସେହି
ସର୍ବ ପ୍ରେରଣା ଉତ୍ସ,
ଆମେର ତାର ବୀର ସେନାନୀ
ଆଜାଦ୍ ହିନ୍ଦ୍ ଫୌଜ ।

ନାରାୟଣ ପ୍ରସାଦ ମିଶ୍ର
(ପ୍ରାକ୍ତନ ଛାତ୍ର)
(ଖଣ୍ଡସାହୀ ଜଗନ୍ନାଥ ଉ.ପ୍ରା, ବିଦ୍ୟାଳୟ
ଶତବାର୍ଷିକୀ ଉତ୍ସବ - ୧୨-୨-୧୯୯୩)
ସ୍ମରଣିକା

୧୯୫୯ ମସିହା ଅଗଷ୍ଟ ୧୫ ତାରିଖରେ 'ଉତ୍କଳିକା'ର ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟା ବାହାରିଥିଲା । ସମ୍ପାଦକ ରାମଛବି ମିଶ୍ର ଏହି ସଂଖ୍ୟାରେ ଏକ ବିଜ୍ଞାପନ ଦେଇଥିଲେ ଯେ ପରବର୍ତ୍ତୀ ସଂଖ୍ୟାଠାରୁ ବଂଶୀଧର ମିଶ୍ରଙ୍କର ଦୁଃସାହସିକ ଯାତ୍ରାର କ୍ରମ ବିବରଣୀ 'ଉତ୍କଳିକା'ରେ ସ୍ଥାନିତ ହେବ । କିନ୍ତୁ ସେଥିପାଇଁ ବଂଶୀବାବୁ ଆଉ କୌଣସି ଆଗ୍ରହ ଦେଖାଇ ନଥିଲେ ।

## ପରବର୍ତ୍ତୀ ସଂଖ୍ୟାର ଆକର୍ଷଣ

ଆମର ପରବର୍ତ୍ତୀ ସଂଖ୍ୟାରେ ଭାରତ ତଥା ଓଡ଼ିଶାର ରାଜନୈତିକ ସମାଲୋଚନା ଓ ଚିନ୍ତା ଉଦ୍ରେକକାରୀ ଆଲୋଚନାମାନ ପ୍ରକାଶ ପାଇବ । ତା' ସଙ୍ଗେ ସଙ୍ଗେ ରମ୍ୟରଚନା, ଗଳ୍ପ ଇତ୍ୟାଦି ସ୍ଥାନ ପାଇବ । ସିନେମା ଜଗତ ଓ ସମ୍ପାଦକଙ୍କୁ ପତ୍ର ଇତ୍ୟାଦି ନୂତନ ବିଭାଗମାନ ଖୋଲାଯିବ । ଏଥିପାଇଁ ବିଶିଷ୍ଟ ସମାଜସେବୀମାନେ ସେମାନଙ୍କ ସ୍ୱୀକୃତି ଜଣାଇ ସାରିଲେଣି ।

କ୍ରମାନ୍ୱୟ ଭାବରେ ଆରଥରକୁ ଲେଖିବାକୁ ଆରମ୍ଭ କରିବେ ବଂଶୀଧର ମିଶ୍ର, ଦୁଃସାହସିକ ଏ ଯୁବକ ନେତା କ୍ୟାବିନ୍ ବୟ ହିସାବରେ ଇଂଲଣ୍ଡ ଯାଇ ସେଠାରେ ସୁରତ ଅଲ୍ଲି ଛଦ୍ମନାମରେ ଏକ ବିରାଟ ଶ୍ରମିକ ସଂଗଠନ କରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେ ସେଠାରେ ପ୍ରାୟ ୨୨ ବର୍ଷ ରହିବା ପରେ ଏହି ୫/୬ ବର୍ଷ ତଳେ ଜନ୍ମମାଟିର ଡାକ ଏଡ଼ି ନ ପାରି ଓଡ଼ିଶାକୁ ଫେରି ଆସିଛନ୍ତି । ସେ ତାଙ୍କର ଦୀର୍ଘ ଅଭିଜ୍ଞତା ସମ୍ବଳିତ ଲେଖାମାନ ପାଠକମାନଙ୍କୁ ପରିବେଷଣ କରିବେ ।

ସଂ. - ଉତ୍କଳିକା

# ସାଲି ରିଡ଼ରଙ୍କ ସୁରତ ଅଲ୍ଲିଙ୍କୁ ପତ୍ର

86, Ridseway Clue
East Baruct, Herts
June 14th, 1952

My Boobalah,

My probationary period has ended successfully and I am now a qualified teacher of little children This happy news lifted a weight from my mind and dixpelled my fears of failure, and as now I am at peace.

Boobals, why do you not write to me? Do you hate my memory ? I can not believe that ! Does a thought of me make you unhappy ? That should not be a day does not go by without a sweet thought about you. Now that all strain has been removed from my mind sweet memories come pouring out and I thank God (?) or fate or chance - call it what you will - that I had the opportunity of living with you. Whatever you do and whereever you are, you are my own Boobalah - my Guru - nothings can alter that. We can not bring back our life together but can not you space a few words for me ?

Write to me, Boobals - if not about yourself and affairs then write a little story for me, I read it I will (hear you) feel you are with me. Tell me again he stories of Rama, of Krishna and other stories in your own words. This will strengthen me as it used to. Please write.

Yours
**Sally**

## ବିଶିଷ୍ଟ ଜନନାୟକ ଏମ୍.ଏଫ୍. ହୁସେନଙ୍କ ପତ୍ର

160, Horton Grange Road
Bradford (YORK)
16-11-1951

My dear Misra Jai Hind,

I was realy glad to receive your kind letter, after a long time you have met your own people it is realy a thrilling thing to be in own birth place, I can find no words to express the joy to be at home.

On this side there is no political work - H.C. had public meeting at Brimingham, I had heard that the attendance was not so good, people are not satisfied with his way.

I had been approached by LABOUR PARTY to join with and I am going, tomorrow night to attend a meeting as a observer. I have not made up my mind weather to join or not, what you think is best for me to do.

Is SALLY has taken your place and have you heard from her. Any news about SASTAY ? and Vidia, I would be glade to have their address.

Please keep in touch with me, and try to make out pathway for me politics.

Lily send your regard and her good wishes to you take care of yourself and look after you health.

Always Yours affectionate
**M. F. Hussain**

# ବିଶିଷ୍ଟ କମ୍ୟୁନିଷ୍ଟ ନେତା ସୁରେଶ ବୈଦ୍ୟଙ୍କର ପତ୍ର

7, Sargent House
Barrow Road
Bombay-1
24th Sept., 1949

My dear Alley,

Last week I went to Delhi, and there an integrating development took place. I met Raj Krishna Bose from Cuttack. He is the Minister for Kabour and Backward Classess in the provencial Government. Over the dinner table (we were staying at the same hotel) I happened to mention your name, and he immediately said that he was an old friend of yours and wanted to know more about you, and what you were doing. I told him, giving a full record of your activities, and your present position in India House. He asled me if you intended to return to India. I told him he would most will..... he (Raj Kriushna Bose) found him somthing to do...... he would represent to the Central Government. I told him the Central Government knew all about you, and evidently did not care, but if the Orkssa Ministry found it fit they certainly could invite you backs. Raj Krishna Bose there upon assured me that he woukd most wikkingly fix you asa Kabour Wekfare Officer in his Department. You know Orissa has big plans for industrialisation, and therefore some of these jobs are being created. I told him he must find you quarters to live and also arrange for your feeding amenties. He has agreed to do all that, but asked me to ask you how much you will want. With all these things found, I thing about 400-/ to 500-/ rupees will not be bad, especially in Orissa where living in much cheaper. In my view this is an exellent opportunity for you to return. If you agree I will try my best to see at the Orissa Government also pays your fares to India, if not Bose can make a collection among friends for that purpose. Will you please let

me know your reply, preferably by return post ? The job will certainly suit you, the remuneration and amenities i these days are certainly god send, and I might even add that there will be a certain sense of gratification and thankfulness among your old colleagues who in spite of a separation of near on to twenty years still remember you and wish you well. What, otherwise, is there for you in London with Krishna Menon seeing to it that you never rise ? I am simulaneously writing a letter to Raj Krishna Bose giving a detailed account of your activities in England for their files. Best wishes, and let me hear from you immediately.

Yours,
**Suresh Vaidya**

# ସହାୟକ ଗ୍ରନ୍ଥସୂଚୀ


ଖଣ୍ଡସାହୀ ଗ୍ରାମର ବ୍ରହ୍ମା ଓ ଦାଶବଂଶର ବଂଶାବଳୀ–ସଂ. ସିଦ୍ଧେଶ୍ୱର ଦାଶ ଓ ପ୍ରିୟନାଥ ମିଶ୍ର, ୧୯୮୫ ।

ଅନିର୍ବାଣ–(ନବକୃଷ୍ଣ ଚୌଧୁରୀଙ୍କ ଜୀବନୀ ଓ ସମୟ)–ପଦ୍ମଚରଣ ନାୟକ, ପ୍ରକାଶକ–ଗୀତାଞ୍ଜଳି ମହାପାତ୍ର, ୮, ଶାନ୍ତିବିହାର, ବରମୁଣ୍ଡା ହାଉସିଂବୋର୍ଡ଼ କଲୋନି, ଭୁବନେଶ୍ୱର, ପ୍ରଥମ ପ୍ରକାଶ, ୧୯୯୬ ।

କସ୍ତୁରୀ ମୃଗସମ–ମନମୋହନ ଚୌଧୁରୀ, ପ୍ରକାଶକ–କାହାଣୀ ପ୍ରକାଶନୀ, କଲ୍ୟାଣୀ ନଗର, କଟକ-୧୩, ପ୍ରଥମ ପ୍ରକାଶ, ୧୯୯୫ ।

ଶ୍ରଦ୍ଧାଞ୍ଜଳି–ଗିରିଜା ଭୂଷଣ ପଟ୍ଟନାୟକ, ପ୍ରକାଶକ–ଦି ପ୍ରିଣ୍ଟୋଭର୍ସ, କଟକ, ପ୍ରଥମ ପ୍ରକାଶ, ୧୯୯୬ ।

ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା–(Progressive Trend in Oriya Literature)–ଡଃ ବିଜୟ କୁମାର ଶତପଥୀ, ଓଡ଼ିଶା ବୁକ୍ ଷ୍ଟୋର୍, ୧୯୯୫ ।

ଆଜିର ଆମେରିକା–(ଅନୁବାଦ) ଉମେଶଚନ୍ଦ୍ର ପାଣିଗ୍ରାହୀ, 'ଉତ୍କଳ ଭାରତୀ'ର ୨୭ଶ ଅବଦାନ, ପ୍ରକାଶକ–ଶ୍ରୀ ବ୍ରଜବନ୍ଧୁ ଦାଶ, ଉତ୍କଳ ବୁକ୍ ଏଜେନ୍‌ସି, ରାଣୀହାଟ, କଟକ, ୧୯୫୦ । ଭୂପର୍ଯ୍ୟଟକ ରାମନାଥ ବିଶ୍ୱାସଙ୍କର ବଙ୍ଗଳା ଭ୍ରମଣ କାହାଣୀ, 'ଆଜକେର ଆମେରିକା'ର ଅନୁବାଦ ।

ଓଡ଼ିଶା ରାଜନୀତିର ଗୋପନ କଥା–ଶ୍ରୀ ବସନ୍ତ ଦାସ, ପ୍ରକାଶକ–ଶ୍ରୀ ଅମୀୟ ଦାସ, ଅନୁସନ୍ଧାନ ପବ୍ଲିକେଶନ୍‌ସ, ଏ/୧୭, ଭୌମ ନଗର, ୟୁନିଟ୍-୪, ଭୁବନେଶ୍ୱର, ୨୦୦୧ ।

ସ୍ୱାଧୀନତା ସଂଗ୍ରାମର ଇତିହାସ–ଗୋବିନ୍ଦ ଚନ୍ଦ୍ର ମହାନ୍ତି, କାହାଣୀ ପ୍ରକାଶନ, କଟକ, ପ୍ରଥମ ପ୍ରକାଶ, ୧୯୯୮ ।

ଗାନ୍ଧି ମଣିଷ–ଶରତ କୁମାର ମହାନ୍ତି, ମିତା ବୁକ୍ସ, ବାଦାମବାଡ଼ି, କଟକ-୧୨, ପ୍ରଥମ ପ୍ରକାଶ, ୨୦୦୦ ।

ଜନନାୟକ ଜବାହାରଲାଲ–ଗଙ୍ଗାଧର ରଥ, ଅଳକା ପ୍ରକାଶନୀ, ଜେଲ୍‌ରୋଡ଼୍, କଟକ, ପ୍ରଥମ ପ୍ରକାଶ, ୧୯୯୮ ।

The Saurus of Events & Dates of Orissa–Gobardhan Dora, Publisher–Smt. Labanyabati Dora, L-184, Fakir Mohan Nagar, ବରମୁଣ୍ଡା ହାଉସିଂବୋର୍ଡ଼ କଲୋନି, ଭୁବନେଶ୍ୱର, ପ୍ରଥମ ପ୍ରକାଶ, ୨୦୦୩ ।

ମେରେ ଜୀବନ କୀ କୁଛ୍ ୟାଦେଁ–Z. A. Ahamed–ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ୨୨, କିଶୋର ମାର୍ଗ, ଲକ୍ଷ୍ନୌ, ପ୍ରଥମ ପ୍ରକାଶ, ୧୯୯୭ ।




| NUMBER | | SURNAME |
|---|---|---|
| AQPH | 28 1 | ALLEY |

CHRISTIAN NAMES (First only in full)

[illegible]

CLASS CODE

A

FULL POSTAL ADDRESS

[illegible] Portree St
Poplar E.14

HOLDER'S SIGNATURE

B. Alley




**CHANGES OF ADDRESS.** No entry except by National Registration Officer, to whom removal must be notified.

REMOVED TO (Full Postal Address)

REMOVED TO (Full Postal Address)

REMOVED TO (Full Postal Address)

REMOVED TO (Full Postal Address)

REMOVED TO (Full Postal Address)

FOR OFFICIAL ENTRY ONLY (apart from Holder's Signature). ANY OTHER ENTRY OR ANY ALTERATION, MARKING OR ERASURE, IS PUNISHABLE BY A FINE OR IMPRISONMENT, OR BOTH.

HOLDER'S DESCRIPTION

Sex Male Height 5' 3"

Eyes Brown Hair Black

Date of Birth 15-5-05

Visible Distinguishing Marks Scar on left cheek

DECLARATION—I DECLARE that I have personal knowledge, extending over 4 years (months) of the person to whom this Identity Card relates, that the signature within is his (her) true signature, that he (she) possesses the above physical characteristics and has stated to me the above date of his (her) birth:

(★) ~~and that the photograph above signed by me is a true likeness of that person.~~

Signed W. F. Hargett Date Aug 29' 1943

Service or Employment of Declarant Deputy District Warden

HOLDER'S PHOTOGRAPH

**NOTICE.**

The specified particulars of the HOLDER'S DESCRIPTION must be entered. If it is necessary, for the purpose of the service to which the holder belongs, that his or her photograph should be affixed to this Card, it must be affixed within this frame. In either case the Declaration at the foot of this page must be made by a responsible person having personal knowledge of the Holder, not, of course, by the Holder. The declarant must sign the photograph (if affixed) when signing the Declaration. If no photograph is affixed, line (★) must be deleted from the Declaration.

NO PARTICULARS MAY BE ENTERED OR PHOTOGRAPH AFFIXED AFTER THE DECLARATION HAS BEEN SIGNED. IT IS AN OFFENCE TO DO SO.

IDENTIFICATION PARTICULARS

Cancellation of a Certificate upon the back will in no way affect the entries on this page, which must remain intact.

CERTIFICATE OF OFFICIAL CAPACITY.

N.B.—No entry may be made here without express authority and after completion of the requirements as to "Identification Particulars" on the back.

I CERTIFY that the person to whom this Identity Card relates is employed in or under (is a member of):—

Service or Department WARDEN

Date

Signed E. J. Smith

Rank

on behalf of:—

Service, Department or Authority.